# ଆ ମ ଐ ତି ହ୍ୟ
# ଆ ମ ଅ ସ୍ମି ତା

ଡ କ୍ଟ ର ବା ସ ନ୍ତୀ ମ ହା ନ୍ତି


■ ପ୍ରକାଶକ : ତୀରତରଙ୍ଗ

■ ପ୍ରଚ୍ଛଦ, ଲେଆଉଟ, ମୁଦ୍ରଣ: ତୀରତରଙ୍ଗ ପ୍ରିଣ୍ଟର୍ସ
ବି-୩୦, ଚନ୍ଦକା ଶିଳ୍ପାଞ୍ଚଳ, ଭୁବନେଶ୍ୱର-୨୪
ମୋ: ୯୧୭୮୩୩୫୫୦୫, ୭୨୦୫୦୪୫୪୪୯

■ ପ୍ରଥମ ସଂସ୍କରଣ : ୨୦୨୦, ©: Publisher

■ ₹: ୧୫୦.୦

AMA AITIHYA AMA ASMITA

■ **By** : Basanti Mohanty

■ **Published by** : **Teerataranga Publication**
B-30, Chandaka I.E, Bhubaneswar-24, Odisha

■ **Cover, Layout & Printed at**: Teerataranga Printers & Publication
B-30, Chandaka I.E, Bhubaneswar-24, Odisha
Mob: 9178335505, 7205045449

■ **First Edition** : 2020, © : Publisher

■ **₹: 150.00**

ISBN- 978-81-950009-3-7

# ଅଭିମତ

"ଆମ ଐତିହ୍ୟ ଆମ ଅସ୍ମିତା"ରେ ସନ୍ନିବେଶିତ ପ୍ରବନ୍ଧଗୁଡ଼ିକ ବିଭିନ୍ନ ସମୟରେ ବିଭିନ୍ନ ପତ୍ରପତ୍ରିକାମାନଙ୍କରେ ତଥା କେନ୍ଦ୍ର ସାହିତ୍ୟ ଏକାଡେମୀ ସେମିନାର ଓ ଆକାଶବାଣୀ ଜୟପୁର କେନ୍ଦ୍ରରେ ପ୍ରକାଶିତ, ପଠିତ ଓ ପ୍ରସାରିତ ହୋଇଥିଲା। ଏଥି ପୂର୍ବରୁ ମୋର 'ପ୍ରଗତି ଓ ପରମ୍ପରା', 'ପ୍ରଳୟ ପରର ଜୀବନ', 'ଦୃଷ୍ଟି ଓ ଦିଗନ୍ତ', 'ନାରୀ ନୀତି ନିୟତି' ଓ 'ଭୋକ ବିଳାସ' ଶୀର୍ଷକରେ ପାଞ୍ଚଖଣ୍ଡ ପ୍ରବନ୍ଧ ସଂକଳନ ପ୍ରକାଶିତ ହୋଇଛି କିନ୍ତୁ ସେଗୁଡ଼ିକ ସବୁ ଥିଲା ଦୈନିକ ସମ୍ବାଦପତ୍ରମାନଙ୍କର ସଂପାଦକୀୟ ପୃଷ୍ଠାରେ ପ୍ରକାଶିତ ସ୍ତମ୍ଭସମୂହର ସମାହାର, ଆମ ଐତିହ୍ୟ ଆମ ଅସ୍ମିତାର ସଂକଳନର ପ୍ରବନ୍ଧ ଗୁଡ଼ିକ ସ୍ତମ୍ଭ ନୁହେଁ ଗବେଷଣାଧର୍ମୀ ନିବନ୍ଧ। କୁହାଯାଇପାରେ ମୁକ୍ତ ପ୍ରବନ୍ଧ।

ଆମ ସାରସ୍ୱତ ବିଭବ ରାମାୟଣ, ମହାଭାରତ, ପୁରାଣ ସାହିତ୍ୟ ଓ ବୌଦ୍ଧଯୁଗୀୟ ଧର୍ମ ଦର୍ଶନ ସମ୍ବଳିତ କିଛି ଅନୁସନ୍ଧାନମୂଳକ ପ୍ରବନ୍ଧ ରହିଛି। ଯାହା ଆମର ଐତିହ୍ୟ ଓ ଐଶ୍ୱର୍ଯ୍ୟ। ଏହାଛଡ଼ା ଆମ ଅସ୍ତିତ୍ୱ ଓ ଅସ୍ମିତା ପ୍ରଖ୍ୟାପନ କରୁଥିବା ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ ପାଇକ ବିଦ୍ରୋହ

କାଳର ସଂଗ୍ରାମୀ ପିଢିକି ବାହୁବଳେନ୍ଦ୍ର, ଉତ୍କଳମଣି ଗୋପବନ୍ଧୁ ଓ ଉତ୍କଳ ଗୌରବ ମଧୁସୂଦନଙ୍କ ପରି ଓଡ଼ିଶା ମାଟିର ଯୋଗ୍ୟତମ ସନ୍ତାନମାନଙ୍କ ସଂପର୍କରେ ଭାବଗର୍ଭକ ଆଲୋଚନା ରହିଛି । ଆମ ସଂସ୍କୃତି, ସାହିତ୍ୟ, ସମୃଦ୍ଧି ଓ ଆଦିବାସୀ ଲୋକ ଜୀବନର ଗବେଷଣାଧର୍ମୀ କେତୋଟି ଚର୍ଚ୍ଚା, ଆଲୋଚନା ରହିଛି । ସୁରେନ୍ଦ୍ର ମହାନ୍ତିଙ୍କ ଶେଷସ୍ତମ୍ଭ ଉପରେ ବିଶ୍ଳେଷଣାତ୍ମକ ଆଲେଖ୍ୟ ପୁସ୍ତକଟିର ଅନ୍ୟତମ ଆକର୍ଷଣ ।

ଆମ ଐତିହ୍ୟର ଜୟଗାନ କରୁଥିବା, ଆମ ଅସ୍ମିତାକୁ ମହିମାମଣ୍ଡନ କରୁଥିବା ଏହି ତଥ୍ୟାନୁସାରୀ ପ୍ରବନ୍ଧଗୁଡ଼ିକ ବୁଦ୍ଧିଜୀବୀ, ଗବେଷକ ଓ ଛାତ୍ରଛାତ୍ରୀଙ୍କ ପାଇଁ ବେଶ୍ ଉପାଦେୟ ହେବ ବୋଲି ଆଶା କରୁଛି ।

ଲେଖାଗୁଡ଼ିକୁ ମୁଦ୍ରିତ ରୂପ ଦେଇଥିବା ଡି.ଟି.ପି. ଅପରେଟର ଶ୍ରଦ୍ଧେୟ ସୁଦର୍ଶନକୁ ସ୍ନେହାଶୀର୍ବାଦ ଦେଉଛି । ତୀରତରଙ୍ଗର ସୁଯୋଗ୍ୟା ପ୍ରକାଶିକା ଶ୍ରଦ୍ଧେୟା ବନ୍ଦନା ମିଶ୍ର ସ୍ୱତଃପ୍ରବୃତ୍ତ ହୋଇ ପୁସ୍ତକଟିର ପ୍ରକାଶନ ଦାୟିତ୍ୱ ହାତକୁ ନେଇଥିବାରୁ ମୁଁ ତାଙ୍କ ନିକଟରେ ଋଣୀ ରହିଲି ।

ଏହି ଅବସରରେ ପ୍ରବନ୍ଧଗୁଡ଼ିକୁ ଯେଉଁ ପତ୍ରପତ୍ରିକା ଓ ଅନୁଷ୍ଠାନମାନେ ପ୍ରଚାର ଓ ପ୍ରସାର କରି ମୋତେ ଉତ୍ସାହିତ କରିଥିଲେ, ମୁଁ ସେମାନଙ୍କୁ ସାଧୁବାଦ ଜଣାଉଛି ।

ସହୃଦୟ ପାଠକ ପାଠିକାଙ୍କ ଦ୍ୱାରା ପୁସ୍ତକଟିର ଉଦ୍ଦେଶ୍ୟ ସାଧିତ ହେଲେ ମୋର ଶ୍ରମ ସାର୍ଥକ ହେଲା ବୋଲି ଅନୁଭବ କରିବି ।

**ବାସନ୍ତୀ ମହାନ୍ତି**

# ପ୍ର ବ ନ୍ଧ କ୍ର ମ



# ଦୁଇ ଯୁଗ ପୁରୁଷ : ଭୀଷ୍ମ ଓ କୃଷ୍ଣ

କୁରୁବଂଶର ଶେଷ ଦାୟାଦ ଥିଲେ ପିତାମହ ଭୀଷ୍ମ। ଧୃତରାଷ୍ଟ୍ର ପଣ୍ଡୁ ଓ ବିଦୁରଙ୍କ ଶରୀରରେ କୁରୁବଂଶର ରକ୍ତ ନଥିଲା। କାଶୀରାଜ ନନ୍ଦିନୀ ଅମ୍ବିକା ଅମ୍ବାଳିକା ଓ ବ୍ୟାସଦେବ ଥିଲେ ଏମାନଙ୍କର ପିତାମାତା। ଚିତ୍ରାଙ୍ଗଦ ଓ ବିଚିତ୍ରବୀର୍ଯ୍ୟଙ୍କ ଅକାଳ ମୃତ୍ୟୁପରେ, ତତ୍‌କାଳୀନ ସାମାଜିକ ବିଧିବ୍ୟବସ୍ଥା ଅନୁସାରେ ନିଯୋଗ ବା ନିୟୋଗ ସୂତ୍ରରେ ଦୁହେଁ ସନ୍ତାନ ଜନ୍ମ ଦେଇଥିଲେ। ଦାସୀ ଗର୍ଭରୁ ଜନ୍ମ ହୋଇଥିଲେ ବିଦୁର। ତଥାପି ଭୀଷ୍ମ ଏମାନଙ୍କୁ ଆପଣାର କରିଥିଲେ। ରାଜସିଂହାସନର ସୁରକ୍ଷା ପାଇଁ କର୍ତ୍ତବ୍ୟ କରି ଚାଲିଥିଲେ। ଭୀଷ୍ମଙ୍କ ପରେ ଆହୁରି ତିନି ପିଢ଼ି ରାଜୁତି କରିଥିଲେ। ଯୁଧିଷ୍ଠିର, ପରୀକ୍ଷିତ ଓ ଜନ୍ମେଜୟ, ଯେଉଁମାନେ ପ୍ରକୃତରେ କୁରବଂଶର ରକ୍ତ ନ ଥିଲେ।

ସେହିପରି ଶ୍ରୀକୃଷ୍ଣ ମଧ୍ୟ ଥିଲେ ଯଦୁବଂଶର ଶେଷ ଦାୟାଦ। ଯଦୁବଂଶର ସମସ୍ତେ ଧ୍ୱଂସ ହୋଇ ସାରିବା ପରେ ସେ ନିଜେ ଶରୀର ଛାଡ଼ିବା ପାଇଁ ମନସ୍ଥ କରିଥିଲେ। ଶିଆଳୀ ଲତା ତଳେ ଧ୍ୟାନସ୍ଥ ହୋଇ ବସିଥିବା ବେଳେ ଜାରାଶବରର ତୀରରେ ତାଙ୍କର ମହାପ୍ରୟାଣ ହୋଇଥିଲା। ଭୀଷ୍ମ ମଧ୍ୟ ସେହି ତୀରରେ ହିଁ ବୀରଗତି ପ୍ରାପ୍ତ ହୋଇଥିଲେ। ଯଦିଓ ନିଜ ଇଚ୍ଛାରେ ସେ ଶେଷ ନିଶ୍ୱାସ ତ୍ୟାଗ କରିଥିଲେ।

ମହାଭାରତ ଯୁଗରେ ଭୀଷ୍ମ ଓ କୃଷ୍ଣ ଦୁହେଁ ଥିଲେ ଅସାଧାରଣ ବ୍ୟକ୍ତିତ୍ୱସଂପନ୍ନ। ବୁଦ୍ଧି ବିଦ୍ୟା ପ୍ରଜ୍ଞା ପ୍ରତିଭାରେ କେହି କାହାଠୁଁ ଊଣା ନଥିଲେ। ଦୁହିଁଙ୍କର ବେଶ୍ ସାମାଜିକ ପ୍ରତିଷ୍ଠା ଥିଲା। ତଥାପି ଦୁହେଁ ଥିଲେ ପରସ୍ପର ବିରୋଧି। ଦୁଇଟି ଦର୍ଶନ ଉପରେ ଦୁହେଁ ଠିଆ ହୋଇଥିଲେ। ପରମ୍ପରା,

ନୀତି ନିୟମ, ଶାସ୍ତ୍ରାନୁମୋଦିତ ପ୍ରଥାପ୍ରତି ଅଙ୍ଗୀକାର ବଦ୍ଧ ଥିଲେ ଭୀଷ୍ମ। ସତ୍ୟପ୍ରତି ଅଙ୍ଗୀକାରବଦ୍ଧତା ହେତୁ ସେ ବିଶ୍ୱବିଖ୍ୟାତ ହୋଇଥିଲେ। ପିତାଙ୍କ ପାଇଁ ତାଙ୍କର ଭୀଷଣ ତ୍ୟାଗ ତାଙ୍କୁ ଦେବବ୍ରତରୁ ଭୀଷ୍ମରେ ପରିଣତ କରିଦେଇଥିଲା। ଗୋଟିଏ ଦିଗରେ ହସ୍ତିନାପୁରର ରାଜସିଂହାସନ ଅନ୍ୟ ଦିଗରେ ତାଙ୍କର ଭୀଷ୍ମ ପ୍ରତିଜ୍ଞା ଏ ଦୁଇଟିକୁ ଅକ୍ଷୁଣ୍ଣ ରଖିବା ପାଇଁ ସେ ଅନେକ ପ୍ରଚେଷ୍ଟା କରିଥିଲେ। ତାଙ୍କର ଏହି ଭୀଷ୍ମ ପ୍ରତିଜ୍ଞା ପାଇଁ ହିଁ ହସ୍ତିନା ରାଜସିଂହାସନ ପାଇଁ ସଙ୍କଟ ସୃଷ୍ଟି କରିଥିଲା। ସିଂହାସନ ପାଇଁ ଯୋଗ୍ୟ ଶାସକ ସମ୍ଭବ ହୋଇପାରିନଥିଲେ। ନିଜ ପ୍ରତିଜ୍ଞାର ବନ୍ଧନରୁ ମୁକ୍ତ ହୋଇ ନ ପାରି ହସ୍ତିନା ପୁରର ବିପର୍ଯ୍ୟୟର କାରଣ ହୋଇଥିଲେ। ପ୍ରକାରାନ୍ତରେ ଯୁଦ୍ଧକୁ ସେ ରୋକି ପାରିଥାନ୍ତେ କିନ୍ତୁ ତାଙ୍କ ପ୍ରତିଜ୍ଞା ପାଖରେ ଅଟକି ଯାଇ କିଛି କରିପାରି ନ ଥିଲେ। ଶକୁନି ଦୁର୍ଯ୍ୟୋଧନ ଓ ଧୃତରାଷ୍ଟ୍ର ତାଙ୍କର ଏଇ ଅସହାୟତାର ସୁଯୋଗ ନେଇଥିଲେ। କୌଣସି ନିର୍ଣ୍ଣୟ ନିଷ୍ପତ୍ତି ସେ ନେଇ ନପାରି କେବଳ ଅନୁଚିତ ଉଚ୍ଚାଭିଳାଷୀ ପୁତ୍ରମୋହରେ ଅନ୍ଧ ଧୃତରାଷ୍ଟ୍ରଙ୍କର ଆଜ୍ଞାବହ ପାଲଟି ଯାଇଥିଲେ। ତାଙ୍କର ସବୁ ଚିନ୍ତା, ଚେତନା, ଶାସ୍ତ୍ରଜ୍ଞାନ ବୃଥା ହୋଇଯାଇଥିଲା। ପରିବାର ଓ ସିଂହାସନ ପ୍ରତି ଦାୟିତ୍ୱ ଓ କର୍ତ୍ତବ୍ୟ ନାଁରେ ସବୁ ଅଧର୍ମ, ଅନ୍ୟାୟ, ଅନୀତିର ବିଷକୁ ସେ ହଜମ କରି ଚାଲୁଥିବାବେଳେ ଶ୍ରୀକୃଷ୍ଣ ଥିଲେ ମୁକ୍ତ ପୁରୁଷ। ଭୀଷ୍ମଙ୍କ ପରି କୌଣସି ଗୋଟଏ ବିନ୍ଦୁରେ ସେ ଅଟକି ଯାଇନଥିଲେ। ସମୂହ ସ୍ୱାର୍ଥ ଓ ସମାଜ କଲ୍ୟାଣ ପାଇଁ ସେ ସବୁ ପ୍ରକାର ନୀତି ନିୟମକୁ ଉଲ୍ଲଘନ କରିଦେଉଥିଲେ। କେବଳ ସେତିକି ନୁହେଁ ସବୁ ନୀତି ନିୟମକୁ ଅନୀତି କରିବାପାଇଁ ତାଙ୍କୁ ମୁହୂର୍ତ୍ତେ ବି ଲାଗୁନଥିଲା।

ଯେ କୌଣସି ସଙ୍କଟ ସମାଧାନ ପାଇଁ ଭୀଷ୍ମ ଶାସ୍ତ୍ର ମାନଙ୍କର ସାହାରା ନେଉଥିଲେ। ଏହି ମହାଜ୍ଞାନୀଙ୍କର ଶାସ୍ତ୍ରଜ୍ଞାନ ମଧ୍ୟ ଅଭୁତ ଥିଲା। ପ୍ରାଚୀନ ଶାସ୍ତ୍ରବିତ୍‌ମାନଙ୍କ ମଧ୍ୟରେ ଭୀଷ୍ମ ଥିଲେ ଅନ୍ୟତମ। ପ୍ରତ୍ୟେକ ପ୍ରଶ୍ନର ଉତ୍ତର ପାଇଁ ସେ ନିମ୍ନୋକ୍ତ ବାକ୍ୟ ବ୍ୟବହାର କରୁଥିବା ବ୍ୟାସଙ୍କ ମହାଭାରତରେ ଦେଖିବାକୁ ମିଳେ।

"ଅନାପ୍ୟୁଦାହରନ୍ତିମିତ ହାସଂ ପୁରାତନମ୍"–ଏଠାରେ ମଧ୍ୟ ଲୋକମାନେ

ପୁରୁଣା ଇତିହାସର ଉଦାହରଣ ନିଅନ୍ତି। ଶରଯଯ୍ୟାରେ ଶୟନ କରି ସେ ଯୁଧିଷ୍ଠିରଙ୍କୁ ଯେଉଁ ସବୁ ପ୍ରଶାସନିକ ତଥ୍ୟ ପ୍ରଦାନ କରିଥିଲେ, ତାହା ଆଜିସୁଦ୍ଧା ଆମ ସମ୍ବିଧାନ ପ୍ରଣେତାମାନଙ୍କ ପାଇଁ ଧେୟ ହୋଇ ରହିଛି।

କିନ୍ତୁ ବିଷାଦଗ୍ରସ୍ତ ଅର୍ଜୁନଙ୍କୁ ଶ୍ରୀକୃଷ୍ଣ ଯେଉଁ ୧୮ ଅଧ୍ୟାୟ ଗୀତା କହିଥିଲେ ତାହା କୌଣସି ଶାସ୍ତ୍ର ପୁରାଣ ଆଧାରିତ ନଥିଲା। ଯାହା କହୁଥିଲେ ସେ ନିଜେ କହୁଥିଲେ ନିଜ ଅନୁଭୂତିରୁ। ମାତୃଗର୍ଭରେ ଥିବା ସମୟରୁ ସେ ଯେଉଁ ସବୁ ସମସ୍ୟା ସଙ୍କଟ ଦେଇ ଗତି କରିଥିଲେ ପୁଣି ତାକୁ ଅତିକ୍ରମ କରିବାର ଯେଉଁ କୌଶଳ ତାଙ୍କୁ କରିବାକୁ ପଡ଼ିଥିଲା, ତାହା ତାଙ୍କର ସବୁଠାରୁ ବଡ ଶାସ୍ତ୍ରସଂହିତା। ସେହି ଜୀବନ ଶାସ୍ତ୍ର ହିଁ ତାଙ୍କୁ ଯୁଗପୁରୁଷ କରିଥିଲା। ସମାଜ କଲ୍ୟାଣ ପାଇଁ ସେ ସେଗୁଡ଼ିକୁ ଉତ୍ସର୍ଗ କରୁଥିଲେ, ସେଥିପାଇଁ ସେ କହିପାରୁଥିଲେ ମୁଁ ଛଳନାକାରୀଙ୍କ ଠାରେ ଦ୍ୟୁତ, ତେଜସ୍ୱୀଙ୍କ ଠାରେ ତେଜ, ମୁଁ ବିଜୟ, ମୁଁ ଅଧବସାୟ ତଥା ସାତ୍ତ୍ୱିକଙ୍କ ଠାରେ ମୁଁ ସତ୍ତ୍ୱଗୁଣ। ଦୈତ୍ୟଗଣଙ୍କ ମଧ୍ୟରେ ମୁଁ ପ୍ରହ୍ଲାଦ, କଳନାକାରୀଙ୍କ ମଧ୍ୟରେ ମୁଁ କାଳ, ମୃଗଙ୍କ ମଧ୍ୟରେ ମୁଁ ମୃଗେନ୍ଦ୍ର, ପକ୍ଷୀଙ୍କ ମଧ୍ୟରେ ମୁଁ ଗରୁଡ ଅଟେ। ଅଠର ଅଧ୍ୟାୟ ବ୍ୟାପୀ ଗୀତାରେ ସେ ଯାହା କହିଥିଲେ ତାହା କେବଳ ଜଣେ ଯୁଦ୍ଧ ବିମୁଖ କ୍ଷତ୍ରୀୟ ପାଇଁ ଉଦ୍ଦିଷ୍ଟ ନଥିଲା, ସମଗ୍ର ମାନବ ସମାଜପାଇଁ ଥିଲା ଅମୃତବାଣୀ।

ସଂଯୋଗବଶତଃ ମହାଭାରତ ଯୁଗର ଏହି ଦୁଇ ମହାପୁରୁଷଙ୍କ ଜୀବନରେ ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଅନେକ ସାମ୍ୟ ପରିଲକ୍ଷିତ ହୁଏ। ଯଦିଓ ମୌଳିକ ଚିନ୍ତନରେ ଦୁହେଁ ଥିଲେ ଭିନ୍ନ। ଦୁହେଁ ଥିଲେ ପିତାମାତାଙ୍କର ଅଷ୍ଟମ ଗର୍ଭର ସନ୍ତାନ। ଶ୍ରୀକୃଷ୍ଣଙ୍କୁ ଅବତାର ବୋଲି ଗ୍ରହଣ କରାଯାଉଥିବାବେଳେ ଭୀଷ୍ମ ମଧ୍ୟ ଥିଲେ ଜଣେ ଦେବତା। ଅଷ୍ଟବସୁମାନଙ୍କ ମଧ୍ୟରୁ ଜଣେ 'ପ୍ରଭାସ ବସୁ'। ଦୁହିଁଙ୍କର ଜନ୍ମ ପୂର୍ବରୁ ଅଗ୍ରଜମାନଙ୍କୁ ହତ୍ୟା କରାଯାଇଛି। ନିଜ ଲୋକମାନେ ହିଁ ଏମାନଙ୍କୁ ହତ୍ୟା କରିଛନ୍ତି। ଭୀଷ୍ମଙ୍କ ଅଗ୍ରଜମାନଙ୍କୁ ଜନ୍ମଦାତ୍ରୀ ଗଙ୍ଗା ହତ୍ୟା କରିଥିବା ବେଳେ ଶ୍ରୀକୃଷ୍ଣଙ୍କ ଅଗ୍ରଜମାନଙ୍କୁ ମାତୁଳ କଂସ ହତ୍ୟା କରିଥିଲେ। ଦୁଇ ଅଷ୍ଟମ ଗର୍ଭର ସନ୍ତାନଙ୍କୁ ଉଦ୍ଦେଶ୍ୟ ମୂଳକ ଭାବେ ମୃତ୍ୟୁ ମୁହଁରୁ ରକ୍ଷା କରାଯାଇଛି। ବିଷ୍ଣୁ ଦେବକୀଙ୍କ ଗର୍ଭରେ କୃଷ୍ଣ ରୂପରେ ଜନ୍ମ ହୋଇଥିଲେ। ବସୁଧାର ଯନ୍ତ୍ରଣା ଉପଶମ କରିବାପାଇଁ ପୃଥିବୀ ମାଆ ପାଖରେ

ପ୍ରତିଶ୍ରୁତି ବଦ୍ଧ ହୋଇଥିବାବେଳେ, ବଶିଷ୍ଠଙ୍କ ଅଭିଶାପରେ ପ୍ରଭାସ ବସୁ ଭୀଷ୍ମ ରୂପେ ମର୍ତ୍ତ୍ୟରେ ଜନ୍ମଗ୍ରହଣ କରିଥିଲେ। ନିଜ ସ୍ତ୍ରୀଙ୍କୁ ଉପହାର ଦେବାପାଇଁ ସେ ଅନ୍ୟ ସାତଜଣ ବସୁଙ୍କ ନେତୃତ୍ୱରେ ବଶିଷ୍ଠଙ୍କ କାମଧେନୁକୁ ଅପହରଣ କରିବା ଅପରାଧରେ ଅଭିଶପ୍ତ ହୋଇଥିଲେ। ସେମାନଙ୍କୁ ଉଦ୍ଧାର କରିବାପାଇଁ ଗଙ୍ଗା ସମ୍ମତି ଦେଇଥିଲେ। ଆଦ୍ୟ ସାତଜଣଙ୍କର ଅପରାଧ କମ୍ ହୋଇଥିବାରୁ ସେମାନେ କେବଳ ଜନ୍ମ ପରେ ମୁକ୍ତି ପାଇଥିଲେ। କିନ୍ତୁ ପ୍ରଭାସ ବସୁଙ୍କ ଅପରାଧ ଅମାର୍ଜନୀୟ ଥିବା ହେତୁ ସେ ଜୀବନ ସାରା ପୀଡା ଭୋଗିଥିଲେ। ନ୍ୟାୟତଃ ହସ୍ତିନାପୁର ଉପରେ ସଂପୂର୍ଣ୍ଣ ଅଧିକାର ଥିବା ସତ୍ତ୍ୱେ ସେ ସତ୍ୟବଦ୍ଧ ହୋଇଥିବାରୁ ରାଜଗାଦୀଠୁଁ ଦୂରରେ ରହିଥିଲେ କିନ୍ତୁ ତାର ସୁରକ୍ଷା ପାଇଁ ସାରା ଜୀବନ ଉତ୍ସର୍ଗ କରିଦେଇଥିଲେ। ଯେଉଁମାନଙ୍କ ସ୍ୱାର୍ଥ ରକ୍ଷା ପାଇଁ ସେ କର୍ତ୍ତବ୍ୟରତ ଥିଲେ ସେମାନେ ଅଧର୍ମ  ଅନ୍ୟାୟ ଅନୀତି କରୁଛନ୍ତି ଜାଣି ସୁଦ୍ଧା ସେ ବିବଶ ଜୀବନ କାଟିଥିଲେ। ଅପରପକ୍ଷେ ଶ୍ରୀକୃଷ୍ଣ ମଧ୍ୟ ଅନୁରୂପ ପୂର୍ବଜଙ୍କ ଅଭିଶାପ  ବହନ କରି ରାଜଗାଦୀଠାରୁ ଦୂରରେ ରହିଥିଲେ। କିନ୍ତୁ ରାଜ୍ୟ ସୁରକ୍ଷିତ ରଖିବା ପାଇଁ ସବୁପ୍ରକାର ତ୍ୟାଗ ସ୍ୱୀକାର କରିଥିଲେ।

ବାଲ୍ୟ କାଳରେ ଶ୍ରୀକୃଷ୍ଣ ଯମୁନା ନଦୀ ସହ ସମ୍ପୃକ୍ତ ଥିବାବେଳେ ଭୀଷ୍ମ ଗଙ୍ଗାନଦୀ କୋଳରେ ପରିପାଳିତ ହୋଇଥିଲେ। ଦୁହେଁ ଥିଲେ ବିଶିଷ୍ଟ ଧନୁର୍ଦ୍ଧାରୀ। ଶ୍ରୀକୃଷ୍ଣଙ୍କ ଧନୁର ନାମ ସାରଙ୍ଗ ଥିବାବେଳେ ଭୀଷ୍ମଙ୍କ ଶରର ନାଁ ଥିଲା ବାୟବ୍ୟ। ଦୁହେଁ ଥିଲେ ପାଣ୍ଡବ ପ୍ରିୟ। ଦୁହେଁ ପାଣ୍ଡବଙ୍କର ବିଜୟ କାମନା କରୁଥିଲେ।

ପରସ୍ପର ପରସ୍ପରକୁ ଯଥେଷ୍ଟ ଶ୍ରଦ୍ଧା ଓ ସମ୍ମାନ ପ୍ରଦର୍ଶନ କରୁଥିଲେ। ଭୀଷ୍ମ ଜାଣିଥିଲେ ଶ୍ରୀକୃଷ୍ଣ ହେଉଛନ୍ତି ପରମ ପୁରୁଷ। ଭୀଷ୍ମଙ୍କର ସତ୍ୟପ୍ରତି ନିଷ୍ଠା, ତ୍ୟାଗପୂତ ଜୀବନ, ହସ୍ତିନା ପୁର ପ୍ରତି ଆନୁଗତ୍ୟ, ଗଭୀର ଦେଶପ୍ରୀତି ଓ ଜ୍ଞାନ ଗାରିମା। ମୁଗ୍ଧ କରିଥିଲା ଶ୍ରୀକୃଷ୍ଣଙ୍କୁ। ଭୀଷ୍ମଙ୍କୁ ପରମ ଭକ୍ତ ରୂପେ ଗ୍ରହଣ କରିନେଇଥିଲେ।

ଶ୍ରୀକୃଷ୍ଣଙ୍କ ପାଖରୁ ନାରାୟଣୀ ସେନାପାଇ ଖୁବ୍ ଖୁସି ହୋଇପଡିଥିଲା ଦୁର୍ଯ୍ୟୋଧନ। ଉତ୍‌ଫୁଲ୍ଲିତ ହୋଇ ସେ ଭୀଷ୍ମଙ୍କୁ କହିଥିଲା ଶ୍ରୀକୃଷ୍ଣ ଯୁଦ୍ଧରେ ଅସ୍ତ୍ର ଉଠେଇବେ ନାହିଁ। ତେଣୁ ମୁଁ ତାଙ୍କ ନାରାୟଣୀ ସେନାକୁ ଆଣି ଉଚିତ୍

କାର୍ଯ୍ୟ କରିଛି । କିନ୍ତୁ ଦୁର୍ଯ୍ୟୋଧନର ମୂର୍ଖତା ପାଇଁ ତାଙ୍କୁ ଧିକ୍କାର କରିଥିଲେ ଭୀଷ୍ମ । ଦୃଢ଼ତାର ସହ କହିଥିଲେ ମୁଁ ଦିନେ ତାଙ୍କୁ ଶସ୍ତ୍ର ଉଠାଇବାକୁ ବାଧ୍ୟ କରିବି ।

ସତକୁ ସତ ଭୀଷ୍ମଙ୍କର ଏ ପ୍ରତିଜ୍ଞାକୁ ସମ୍ମାନ ଜଣାଇଥିଲେ ଶ୍ରୀକୃଷ୍ଣ । ପାଣ୍ଡବସେନା ଆକ୍ରମଣରେ ପ୍ରବଳ ଭାବରେ ମୃତାହତ ହେବା ସତ୍ତ୍ୱେ ଅର୍ଜୁନଙ୍କ ଉଦାସ ପଣରେ ବିଚଳିତ ହୋଇପଡଛନ୍ତି ଶ୍ରୀକୃଷ୍ଣ । କ୍ରୋଧରେ ଅଜ୍ଞାନ ହୋଇ ସେ ରଥ ଉପରୁ ଓହ୍ଲେଇ ପଡିଛନ୍ତି ଓ ଶଗଡ଼ ଚକଟିଏ ଧରି ଭୀଷ୍ମଙ୍କୁ ଆକ୍ରମଣ କରିବାପାଇଁ ଉଦ୍ୟତ ହେଲାବେଳକୁ । ଅର୍ଜୁନ ତାଙ୍କୁ ପ୍ରତିରୋଧ କରିଛନ୍ତି । ପ୍ରତିଜ୍ଞା ଭଗ୍ନ ଜନିତ ଅପରାଧରେ ଅପରାଧୀ ହୋଇନାହାଁନ୍ତି । ତର୍କ ବଳରେ ସବୁ ନୀତିକୁ ଉଲଂଘନ କରିସୁଦ୍ଧା ନିର୍ଦ୍ଦୋଷଥିବା ଶ୍ରୀକୃଷ୍ଣ ସାବ୍ୟସ୍ତ କରିଛନ୍ତି, ଶଗଡ଼ ଚକ ଅସ୍ତ୍ର ନୁହେଁ । ଅପରପକ୍ଷେ କୌଶଳ କ୍ରମେ ଭୀଷ୍ମଙ୍କୁ ତାଙ୍କ ପ୍ରତିଜ୍ଞା ରକ୍ଷା କରିବାର ଅବସର ଦେଇଛନ୍ତି । ସେ ଭକ୍ତର ଭଗବାନ । ଶ୍ରୀକୃଷ୍ଣ ପ୍ରତି ଭୀଷ୍ମଙ୍କର ସମ୍ମାନବୋଧ ଆହୁରି ବଢ଼ିଯାଇଛି ।

ଭୀଷ୍ମ ବ୍ରହ୍ମଚର୍ଯ୍ୟ ପାଳନ କରିବେ ବୋଲି ସତ୍ୟବଦ୍ଧ ଥିଲେ । ହସ୍ତିନାର ରାଜସିଂହାସନରେ ଯିଏ ବସିବ ସେ ତାଙ୍କ ଆଦେଶ ପାଳନ କରିବେ । ଏହି ବ୍ରହ୍ମଚର୍ଯ୍ୟ ପାଳନର ପ୍ରତିଜ୍ଞା ହିଁ ମହାଭାରତ ଯୁଦ୍ଧକୁ ଆହ୍ୱାନ କରି ଆଣିଲା । ତାଙ୍କର ଏ ପ୍ରତିଜ୍ଞା ଭଗ୍ନ କରିବାପାଇଁ ଆନେକ ଅବସର ଆସିଛି ।  କିନ୍ତୁ ସେ ବିନ୍ଦୁରୁ ଟିକେ ବି ଘୁଞ୍ଚିନଥିଲେ ଭୀଷ୍ମ । ତାଙ୍କ ପାଇଁ ଜନହିତ ଅପେକ୍ଷା ପଣ ରକ୍ଷା ବଡ଼ଥିଲା । କାଶୀ ରାଜନନ୍ଦିନୀ ଅମ୍ବାଙ୍କୁ ଶାଲ୍ୱ ରାଜା ପ୍ରତ୍ୟାଖ୍ୟାନ କଲାପରେ ସେ ଦାବି କରିଥିଲେ ଭୀଷ୍ମ ତାଙ୍କୁ ଗ୍ରହଣ  କରନ୍ତୁ । ସ୍ୱୟମ୍ବର ସଭାରୁ ରାଜକନ୍ୟାମାନଙ୍କୁ ଉଠାଇ ଆଣିବା ଜନିତ ଅପରାଧର ଶାସ୍ତିସ୍ୱରୂପ ସେ ଅମ୍ବାକୁ ବିବାହ କରିଥିଲେ ହସ୍ତିନା ରାଜସିଂହାସନକୁ ସୁସ୍ଥ ସନ୍ତାନଟିଏ ଦେଇପାରିଥାନ୍ତେ । ଜଣେ ଅନ୍ଧ, ଜଣେ ରୁଗଣ ଓ ଆଉ ଜଣେ ଦାସୀପୁତ୍ର ପରି ତିନି ଜଣ ଅଯୋଗ୍ୟ ସିଂହାସନ ପାଇଁ ପ୍ରାର୍ଥୀ ହୋଇ ନଥାନ୍ତେ । ହସ୍ତିନାପୁର ସୁରକ୍ଷିତ ହୋଇଥା'ନ୍ତା । ଆଉ ଗୋଟାଏ ସୁଯୋଗ ଆସିଥିଲା ବିଚିତ୍ରବୀର୍ଯ୍ୟଙ୍କ ମୃତ୍ୟୁପରେ । ସତ୍ୟବତୀ ଅନୁରୋଧ କରିଥିଲେ ଭୀଷ୍ମଙ୍କୁ ନିଯୋଗ ଦ୍ୱାରା ଅମ୍ବିକା ଅମ୍ବାଳିକାଙ୍କ ଗର୍ଭରେ ସନ୍ତାନ ଉପୁଜାଇବା ପାଇଁ । ତାକୁ ମଧ୍ୟ ଭୀଷ୍ମ

ପ୍ରତ୍ୟାଖ୍ୟାନ କରିଥିଲେ। ତତ୍‌କାଳୀନ ସାମାଜିକ ନୀତି ନିୟମରେ ଏହା ଅବିଧି ନଥିଲା। ତାଙ୍କ କଥା ମାନିଥିଲେ କୁରୁ ବଂଶର ରକ୍ତ ପରବର୍ତ୍ତୀ ରାଜା ହୋଇପାରିଥାନ୍ତେ। ସେ ଏ ପ୍ରସ୍ତାବ ମଧ୍ୟ ପ୍ରତ୍ୟାଖ୍ୟାନ କଲେ। ସେ ପ୍ରତିଜ୍ଞାର ସୀମା ଲଙ୍ଘନ କରି ଆସିପାରିଲେ ନାହିଁ। ଫଳରେ କୁରୁବଂଶର ସୀମା ବାହାରୁ ଆସିଲେ ବ୍ୟାସ। ଯେଉଁ ତିନୋଟି ସନ୍ତାନ ତାଙ୍କଠାରୁ ଉପୁଜା ଗଲା ସେମାନେ କୌଣସି ନା କୌଣସି କ୍ଷେତ୍ରରେ ଅଯୋଗ୍ୟ ସାବ୍ୟସ୍ତ ହେଲେ ସିଂହାସନ ପାଇଁ। କେବଳ କାମଚଳା ରାଜା ବସିଲେ ସିଂହାସନରେ। ଯାହାଙ୍କର ଆଦୌ ରାଜ୍ୟାଭିଷେକ ହୋଇ ନଥିଲା। କିନ୍ତୁ ଭୀଷ୍ମ ଯଦି ଚହିଁଥାଆନ୍ତେ ଅବସ୍ଥା ଭିନ୍ନ ହୋଇଥାନ୍ତା। ଭୀଷ୍ମଙ୍କ ପରି ଜ୍ଞାନୀ, ନ୍ୟାୟବାନ୍, ସତ୍ୟବଦ୍ଧ ଉତ୍ତରାଧିକାରୀ ହସ୍ତିନାପୁର ସିଂହାସନ ପାଇଁ ମିଳିପାରିଥା'ନ୍ତା।

ଗାନ୍ଧାର ରାଜ୍ୟକୁ ଧୃତରାଷ୍ଟ୍ରପାଇଁ ଗାନ୍ଧାରୀଙ୍କ ହସ୍ତ ମାଗିବାକୁ ଯିବା ତାଙ୍କୁ ଅଜସ୍ର ଅର୍ଥରାଶି ଉପଢ଼ୌକନ ଦେବା ଏକ ପ୍ରକାର ଚାପ ଥିଲା ଭୀଷ୍ମଙ୍କର ଗାନ୍ଧାରରାଜ ସୁବଳଙ୍କପ୍ରତି। ସାମନ୍ତରାଜା ସୁବଳ ନିରୁପାୟ ଥିଲେ। ଶକୁନୀର ବାରଣ ସତ୍ତ୍ୱେ ଭୟଭୀତ ହୋଇ ରାଜା ସୁବଳ ଅନ୍ଧ ସମ୍ରାଟ ଧୃତରାଷ୍ଟ୍ରଙ୍କୁ କନ୍ୟା ଅର୍ପଣ କଲେ। ଗାନ୍ଧାରୀ ଶହେପୁତ୍ରର ଜନନୀ ହେବାର ଭବିଷ୍ୟବାଣୀ ସଂପର୍କରେ ଭୀଷ୍ମ ଅବଗତ ଥିଲେ। ହସ୍ତିନାପୁରର ରାଜଗାଦୀ ନିମନ୍ତେ ଉତ୍ତରାଧିକାରୀ ପାଇଁ ବ୍ୟାକୁଳ ଥିଲେ ଭୀଷ୍ମ। ରାଜା ସୁବଳଙ୍କୁ ଚାପ ପ୍ରୟୋଗ କରିବାର ଏହାଥିଲା ଅନ୍ୟତମ ହେତୁ। ଅନ୍ଧାରକୁ ଡରୁଥିବା ଅଲିଅଳୀ ଝିଅଟା ସ୍ୱାମୀ ଅନ୍ଧ ବୋଲି ଜାଣିବା ପରେ ନୀରବ ବିଦ୍ରୋହରେ ଚିରଦିନ ପାଇଁ ନିଜ ଚକ୍ଷୁରେ ଅନ୍ଧପଟିକା ବାନ୍ଧିଦେଲା। ଗାନ୍ଧାରୀଙ୍କ ପରି ଜଣେ ଧର୍ମପରାୟଣା ନୀତିନିପୁଣା ନାରୀ ମୁହଁରେ ଅନ୍ଧପଟିକା ବାନ୍ଧିବା ଦ୍ୱାରା ୧୦୦ ପୁତ୍ରଙ୍କ ଦେଖାଶୁଣା ଦାୟିତ୍ୱ ରହିଲା ଦାସୀ ପରିବାରୀଙ୍କ ଉପରେ। ବାପା ମାଆ ଉଭୟଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନ ଅଭାବରୁ ହସ୍ତିନାପୁର ସିଂହାସନ ପାଇଁ ଦାବୀଦାର ଥିବା ଦାୟାଦମାନେ ଉଚ୍ଛୃଙ୍ଖଳ ଜୀବନ ବିତେଇଲେ। ପ୍ରିୟ ଭଉଣୀକୁ ଚକ୍ଷୁହୀନଙ୍କୁ ବିବାହ କରିବାପାଇଁ ବାଧ୍ୟ କରାଯିବାରୁ ହସ୍ତିନାପୁରକୁ ଧ୍ୱଂସ କରିବାର ଶପଥ ନେଇଥିଲା ଶକୁନୀ। ତେଣୁ ଏଇ ବିବାହ ବିବାହର ପ୍ରସ୍ତାବ ଯେ ଭୀଷ୍ମଙ୍କର କେତେବଡ଼ ଭୁଲ୍ ଥିଲା ତାହା ସହଜରେ ଅନୁମେୟ।

ଆଉ ଗୋଟିଏ ବଡ ଭୁଲ୍ କରିଥିଲେ ଭୀଷ୍ମ। ସେ ସମୟରେ ମୃଗୟାପରି ପଶାଖେଳ ସିନା ରାଜକୀୟ ବିଳାସର ଅଂଶଥିଲା କିନ୍ତୁ ଗୃହବଧୂଙ୍କୁ ପଶାଖେଳରେ ବାଜି ଲଗାଇବା, ପୁଣି ତାଙ୍କୁ ବିବସ୍ତ୍ର କରିବା ରାଜକୀୟ ବିଳାସ ନଥିଲା ବରଂ ଅତ୍ୟନ୍ତ ନିନ୍ଦନୀୟ ଅପରାଧ ଥିଲା। ତାହା ପୁଣି ଭୀଷ୍ମଙ୍କ ସମ୍ମୁଖରେ ଘଟିଗଲା। ଭୀଷ୍ମ ଚାହିଁଥିଲେ ଏସବୁ ରୋକି ପାରିଥାନ୍ତେ। କେବଳ କୁରୁଅନ୍ନ ଭକ୍ଷଣ କରୁଥିଲେ ବୋଲି ସେ ଏତେବଡ ଦୁଷ୍କର୍ମରେ ନୀରବ ରହିବେ, ଯାହା ଅତ୍ୟନ୍ତ ଦୟନୀୟ ଯୁକ୍ତି। ଏଥିପାଇଁ ଇତିହାସ ତାଙ୍କୁ କ୍ଷମା କରିନାହିଁ।

ଦ୍ରୋଣଙ୍କ କଥା ଥିଲା ଭିନ୍ନ। ସେ ଥିଲେ ଗରିବ ବ୍ରାହ୍ମଣ। ଯେକି ନିଜ ସନ୍ତାନମାନଙ୍କୁ କ୍ଷୀର ଟିକେ ଦେଇପାରୁନଥିଲେ। ତାଙ୍କ ପତ୍ନୀ ପିଠଉ ଗୋଳେଇ କ୍ଷୀର ବୋଲି ପିଲାମାନଙ୍କୁ ଦେଉଥିଲେ। ବହୁ କଷ୍ଟରେ ବର୍ତ୍ତମାନ ଯେଉଁ ସ୍ଥିତିରେ ସେ ଥିଲେ ତାହା ହରେଇବାକୁ ଚାହୁଁ ନଥିଲେ। ଆହୁରି ମଧ୍ୟ ତାଙ୍କର ପ୍ରାଣପ୍ରିୟ ପୁତ୍ର ଅଶ୍ୱତ୍‌ଥାମା ଦୁର୍ଯ୍ୟୋଧନର ସପକ୍ଷରେ ଥିଲା। ଧୃତରାଷ୍ଟ୍ରଙ୍କ ପରି ତାଙ୍କର ଅନ୍ଧପୁତ୍ର ମୋହ ନଥିଲା କିନ୍ତୁ ମରଣମୁଖୀ ପତ୍ନୀଙ୍କୁ ଅଶ୍ୱତ୍‌ଥାମାଙ୍କୁ ସବୁପ୍ରକାର ସୁଖ ସ୍ୱାଚ୍ଛନ୍ଦ୍ୟ ଦେବାର ଯେଉଁ ପ୍ରତିଶ୍ରୁତି ଦେଇଥିଲେ ସେଥିପାଇଁ ରାଜସଭାର ଅନେକ ଘୃଣିତ କାର୍ଯ୍ୟ ବରଦାସ୍ତ କରି ଆସୁଥିଲେ। କିନ୍ତୁ ଭୀଷ୍ମ ସଂସାରୀ ନଥିଲେ। କୌଣସି ଆବେଗିକ ବନ୍ଧନ ତାଙ୍କୁ ବିବଶ କରୁନଥିଲା। ଯେଉଁମାନଙ୍କର ଅଯୋଗ୍ୟତା ହେତୁ ଦିନକୁ ଦିନ ରାଜଗାଦୀର ଭବିଷ୍ୟତ ଅସୁରକ୍ଷିତ ଅନିଶ୍ଚିତ ଓ କଳଙ୍କିତ ହୋଇପଡୁଥିଲା ଭୀଷ୍ମ ସେମାନଙ୍କୁ ଅନାୟାସରେ ପ୍ରତିରୋଧ ଓ ପ୍ରତ୍ୟାଖ୍ୟାନ କରିପାରିଥା'ନ୍ତେ, କିନ୍ତୁ ସେ ତାହା କଲେ ନାହିଁ। ଅବଶ୍ୟ ସେ ବଞ୍ଚିଥିବା ପର୍ଯ୍ୟନ୍ତ ଦୁର୍ଯ୍ୟୋଧନକୁ ସିଂହାସନଠାରୁ ଦୂରରେ ରଖିବାର ପ୍ରତିଶ୍ରୁତି ଧୃତରାଷ୍ଟ୍ରଙ୍କ ଠାରୁ ଆଦାୟ କରିନେଇଥିଲେ, ମାତ୍ର ଧୃତରାଷ୍ଟ୍ରଙ୍କର ଅନ୍ଧ ପୁତ୍ର ମୋହ ଦୁର୍ଯ୍ୟୋଧନର ସବୁ ଅପକର୍ମ, ଅପଅଭିଳାଷକୁ ପ୍ରଶୟ ଦେଇ ଆସୁଥିଲା।

ଭୀଷ୍ମ ଭଲ ଭାବରେ ଜାଣିଥିଲେ ଶକୁନୀ ହସ୍ତିନାପୁର ପାଇଁ ଏକ କାଳଗ୍ରହ। ସେ ହସ୍ତିନା ପୁରରେ ଥିବା ପର୍ଯ୍ୟନ୍ତ ସତ୍ୟ, ଧର୍ମ, ନ୍ୟାୟ ଅସୁରକ୍ଷିତ। ସେ ଚାହିଁଥିଲେ ରାଜପ୍ରାସାଦ ପାଖରୁ ତାଙ୍କୁ ଦୂରେଇ ରଖି ପାରିଥାନ୍ତେ, କିନ୍ତୁ ସେ କରିପାରିଲେ ନାହିଁ। ଗୋଟାଏ କଥାରେ କହିଲେ ସେ ହସ୍ତିନା ରାଜପ୍ରାସାଦର

ସର୍ବେସର୍ବା ଥିଲେ, କିନ୍ତୁ ତାଙ୍କର ପ୍ରତିଜ୍ଞା ପାଖରେ ସେ ଏମିତି ଅଟକି ଗଲେ ଯେ କୌଣସି ଗଠନମୂଳକ କାର୍ଯ୍ୟ କରିପାରିଲେ ନାହିଁ।

ମହାଭାରତ ଯୁଦ୍ଧର ଦଶମ ଦିନ ଭୀଷ୍ମ ଅସ୍ତ୍ରତ୍ୟାଗ କରି ଶରଶଯ୍ୟା ଗ୍ରହଣ କରିଥିଲେ। କେହି କେହି ଗବେଷକ କହନ୍ତି ତୀରର କାଣ୍ଡ ଯେଉଁ ତୃଣରୁ ତିଆରି ହୁଏ ତାକୁ ଶରତୃଣ କୁହାଯାଏ। ଭୀଷ୍ମ ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କ ପ୍ରତି ପକ୍ଷପାତ କରୁଛନ୍ତି ବୋଲି ଆରୋପ କରି ଯେପରି ଧିକ୍କାର କରିଥିଲା, ତା ପରଠାରୁ ଭୀଷ୍ମ ଯୁଦ୍ଧରେ ନିଜର ନିରପେକ୍ଷତା ସାବ୍ୟସ୍ତ କରିବାପାଇଁ ପଣ କରିଥିଲେ ଯେ ପାଣ୍ଡବମାନଙ୍କୁ ବିନାଶ ନ କରିବା ପର୍ଯ୍ୟନ୍ତ ସେ ଯୁଦ୍ଧ ଭୂମିରୁ ଫେରିବେ ନାହିଁ। ଅନ୍ନ ଜଳ ସ୍ପର୍ଶ କରିବେ ନାହିଁ। ସେ ଯୁଦ୍ଧ ଭୂଇଁରେ ହିଁ ରାତ୍ରିଯାପନ କରୁଥିଲେ। ସେଇ ଶରତୃଣ ଶଯ୍ୟାରେ ଶୟନ କରିଥାଇ ପାରନ୍ତି। ଯାହା ପରବର୍ତ୍ତୀ ପର୍ଯ୍ୟାୟରେ ଶରଶଯ୍ୟା ବୋଲି ବର୍ଣ୍ଣିତ ହୋଇଗଲା। ସୂର୍ଯ୍ୟଙ୍କ ଉତ୍ତରାୟଣଗତି ଆସିବା ପର୍ଯ୍ୟନ୍ତ ଅର୍ଥାତ୍ ମାଘମାସ ଶୁକ୍ଳଅଷ୍ଟମୀ ପର୍ଯ୍ୟନ୍ତ ସେ ସେହି ଶଯ୍ୟାରେ ପଡିରହି ଶେଷ ନିଶ୍ୱାସ ତ୍ୟାଗ କରିଥିଲେ। ସେ ଯେହେତୁ ଅନାହାରରେ ରହି ପ୍ରାଣତ୍ୟାଗ କରିଥିଲେ, ଏହ ଦିନଟିକୁ ଭାରତର ବିଭିନ୍ନ ଅଞ୍ଚଳରେ ଭୀଷ୍ମାଷ୍ଟମୀ ରୂପେ ପାଳନ କରାଯାଇ ତାଙ୍କୁ ଖାଦ୍ୟଦ୍ରବ୍ୟ ଅର୍ପଣ କରାଯାଇଥାଏ। ଆଉ କେତେକ ଅଞ୍ଚଳରେ ତାଙ୍କ ମୃତ୍ୟୁର ତିନିଦିନ ପରେ ଅର୍ଥାତ୍ ଏକାଦଶୀ ଦିନକୁ ଭୀଷ୍ମ ଏକାଦଶୀ ପାଳନ କରି ଲୋକେ ତାଙ୍କୁ ଖାଦ୍ୟଦ୍ରବ୍ୟ ଉତ୍ସର୍ଗ କରିଥା'ନ୍ତି। ଭୀଷ୍ମ ଅପୁତ୍ରିକ ଥିଲେ। ଆମ ସମାଜ ବ୍ୟବସ୍ଥା ଅନୁସାରେ ତାଙ୍କୁ ଶ୍ରାଦ୍ଧ ଦେବା ପାଇଁ କେହି ନଥିଲେ। ବୋଧହୁଏ ସେଇଥିପାଇଁ ସହାନୁଭୂତିରେ ସମଗ୍ର ଭାରତବାସୀ ଶ୍ରଦ୍ଧାର ସହ ଭୀଷ୍ମ ଶ୍ରାଦ୍ଧଦିବସ ପାଳନ କରିଥା'ନ୍ତି। ଏହା ତାଙ୍କ ପ୍ରତି ଭାରତୀୟମାନଙ୍କର କୃତଜ୍ଞତା।

ତାଙ୍କ ପାଖରେ ଯେଉଁ ପାଣ୍ଡିତ୍ୟ ଜ୍ଞାନ ଗାରିମା ଥିଲା ଦୁର୍ଯ୍ୟୋଧନ ଓ ଧୃତରାଷ୍ଟ୍ରଙ୍କ ଅନୁଚିତ ଅଭିଳାଷ ମାନଙ୍କର କଳାମେଘରେ ଢ଼ାଙ୍କି ହୋଇ ଯାଇଥିଲା। କିନ୍ତୁ ଯେଉଁ ୫୮ ଦିନ ସେ ଶର ଶଯ୍ୟାରେ ଶୟନ କରିଥିଲେ ତାହା ଶାରୀରିକ ଦୃଷ୍ଟିରୁ ଯନ୍ତ୍ରଣାଦାୟକ ଥିଲେ ସୁଦ୍ଧା ଯୁଧିଷ୍ଠିରଙ୍କୁ ସେହି ଜ୍ଞାନ ବିତରଣ କରି ସେ ଖୁବ୍ ଆତ୍ମସନ୍ତୋଷ ଲାଭ କରିଥିଲେ। ସମାଜକୁ ସେ ଯେଉଁ ରୂପରେ ଗଢ଼ିବାକୁ ଚାହୁଁଥିଲେ, ତାର ଏକ କାଳ୍ପନିକ ଚିତ୍ର ସେ

ମାନସପଟରେ ଆଙ୍କି ରଖିଥିଲେ। ଭାରତର ରୂପରେଖ କେମିତି ହେବା ଦରକାର, ରାଜାର କର୍ତ୍ତବ୍ୟ, ରାଜ୍ୟ ଶାସନର ବିଧି ବ୍ୟବସ୍ଥା ଆଦି ବିଷୟରେ ଅନେକ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ପ୍ରଦାନ କରିଥିଲେ। ସେ ମୃତ୍ୟୁବରଣ କରିବା ପୂର୍ବରୁ ଚରମ ପ୍ରଶାନ୍ତି ଅନୁଭବ କରିଥିଲେ। ଏହି ଆଶାରେ ଯେ ଯୁଧିଷ୍ଠିର ତାଙ୍କର ଉପଦେଶ ସବୁ ଅକ୍ଷରେ ଅକ୍ଷରେ ପାଳନ କରିବେ। ଜୀବନସାରା ସେ ଯେଉଁ ପୀଡା ଅନୁଭବ କରିଥିଲେ ମୃତ୍ୟୁ ବେଳକୁ ତାହା ଚରମ ଆନନ୍ଦରେ ପରିବର୍ତ୍ତିତ ହୋଇଯାଇଥିଲା।

ସତ୍ୟସ୍ୟ ବଚନଂ ଶ୍ରେୟଃ ସତ୍ୟାଦପି ହିତଂମ୍ ବଦେତ୍। ଏହା ହେଉଛି ଶ୍ରୀକୃଷ୍ଣଙ୍କର ସମାଜ କଲ୍ୟାଣ କରିବାର କୌଶଳ। କିନ୍ତୁ ଭୀଷ୍ମ ଜୀବଦ୍ଦଶାରେ ସତ୍ୟ ଓ ହିତର ପ୍ରାସଙ୍ଗିକତା ବୁଝି ନଥିଲେ। ସେ ସତ୍ୟ ପାଖରେ ଅଟକି ହିତ କଥା ସଂପୂର୍ଣ୍ଣ ଉପେକ୍ଷା କରିଦେଇଥିଲେ। କିନ୍ତୁ ଶ୍ରୀକୃଷ୍ଣ ଠିକ୍ ତାର ଅପରପକ୍ଷଟା କଲେ। ଭୀଷ୍ମଙ୍କ ମୃତ୍ୟୁ ସଙ୍ଗେ ସଙ୍ଗେ ନବଯୁଗର ଆରମ୍ଭ ହେଲା। କୁରୁବଂଶର ଅଙ୍କୁରଟିଏ ସୁଦ୍ଧା ରହିଲା ନାହିଁ। ପରୀକ୍ଷିତ ହେଉଛନ୍ତି ନବ ଯୁଗର ସୃଷ୍ଟି। ତାଙ୍କର ନିର୍ମାତା ହେଉଛନ୍ତି ଶ୍ରୀକୃଷ୍ଣ। ଉତ୍ତରା ଗର୍ଭରେ ବଢୁଥିବା ସନ୍ତାନଟିର ମୃତ୍ୟୁ ଓ ପୁଣି ତାଙ୍କୁ ଜୀବନ୍ୟାସ ଦେବା ମୂଳରେ ଏହି ସତ୍ୟ ବିଦ୍ୟମାନ। ପୂର୍ବପିଢିର ସକଳ ସତ୍ତା ଲୋପକରି ନବଜନ୍ମ ପାଇଲେ ପରୀକ୍ଷିତ। ସବୁ ନବଯୁଗର ବାର୍ତ୍ତା। ସତ୍ୟବଦ୍ଧ ମଣିଷ ସତ୍ୟ ଭଗ୍ନ କରି ଯଦି ବିଶ୍ୱ କଲ୍ୟାଣ ସାଧି ପାରିଲା ମାନବତାର ମନ୍ତ୍ର ଉଚ୍ଚାରିତ ହୋଇପାରିଲା ସେ ଶପଥ ଥରେ ନୁହେଁ ଶହେଥର ଭଗ୍ନ ହେଲେ ସୁଦ୍ଧା କୌଣସି କ୍ଷତି ନାହିଁ। କିନ୍ତୁ କୌଣସି ସତ୍ୟବଦ୍ଧ ହୋଇ ଯଦି ନଜେ ବନ୍ଧନରେ ପଡିଗଲ, କର୍ତ୍ତବ୍ୟ କରିପାରିଲ ନାହିଁ, ସମାଜ କଲ୍ୟାଣ ସାଧନର ବାଧକ ହୋଇଗଲ ଅଥବା ସମାଜ ଧ୍ୱଂସର କାରଣ ହେଲ ତେବେ ସେ ସତ୍ୟରକ୍ଷା ମିଥ୍ୟା ଠାରୁ ବଳି କମ୍ କ୍ଷତିକାରକ ନୁହେଁ।

ଭୀଷ୍ମ ସତ୍ୟ ରକ୍ଷା ପାଖରେ ଅଟକିଯାଇ କେତେ ବଡ ଭୁଲ କରିଛନ୍ତି ତାହା ତାଙ୍କୁ ବତେଇ ଦେଇଛନ୍ତି ଶ୍ରୀକୃଷ୍ଣ। ପିତାଙ୍କର ପ୍ରେମକୁ ସମ୍ମାନ ଦେବାପାଇଁ ନିଜେ ବ୍ରହ୍ମଚର୍ଯ୍ୟ ରକ୍ଷା କରିବାର ଯେଉଁ ବଜ୍ର ଶପଥ ନେଇଥିଲେ ତାହା ତାଙ୍କୁ ଭୀଷ୍ମ ରୂପେ ପରିଚିତ କଲା ଓ ସେ ଇଚ୍ଛା ମୃତ୍ୟୁ ବରପ୍ରାପ୍ତ

ହେଲେ। କିନ୍ତୁ ଏ ଲମ୍ବା ଜୀବନ କେବଳ ତାଙ୍କର ଯନ୍ତ୍ରଣାର ଜୀବନ ଥିଲା। ଦାସତ୍ୱର ଜୀବନ ପରି। ଯଦିଓ ସେ ଦାସ ନଥିଲେ, ତାଙ୍କରି ଅଙ୍ଗୁଳି ନିର୍ଦ୍ଦେଶରେ ସମଗ୍ର ହସ୍ତିନାପୁର ପରିଚାଳିତ ହୋଇଥାଆନ୍ତା। ଶ୍ରୀକୃଷ୍ଣ ତାଙ୍କୁ ହୃଦ୍‌ବୋଧ କରେଇ ଦେଇଛନ୍ତି ଯେ ନିଜର କର୍ମ କରିବାର ସାମର୍ଥ୍ୟ ଥାଉ ଥାଉ କେବଳ ଅନ୍ୟର ଆଦେଶ ପାଳନ କରିବା କର୍ମ ନୁହେଁ। ତାଙ୍କର ସାମର୍ଥ୍ୟ ଥିଲା, ଶକ୍ତି ଥିଲା କିନ୍ତୁ ସେ ତା'ର ଉପଯୋଗ କଲେ ନାହିଁ। ତାଙ୍କ ପ୍ରତିଜ୍ଞା ଯୁଦ୍ଧକୁ ଟାଳିପାରିଲା ନାହିଁ। ସତ୍ୟରକ୍ଷା ଧର୍ମ ନୁହେଁ, ପରମ୍ପରା ସୁରକ୍ଷା ମଧ୍ୟ ଧର୍ମ ନୁହେଁ। ଜୀବନ ହେଉଛି ଧର୍ମ। ଜୀବନ ପାଇଁ କିଛି ନୂଆ ନିର୍ଣ୍ଣୟ ନେବା ଧର୍ମ। ବନ୍ଧନରୁ ବାହାରି ଆସିବା ଧର୍ମ। ମୁକ୍ତିର ବାର୍ତ୍ତା ହେଉଛି ଧର୍ମ। ପରିବର୍ତ୍ତନର ଅନ୍ୟନାମ ଧର୍ମ। ନବନିର୍ମାଣର ଅନ୍ୟନାମ ଧର୍ମ। ସମାଜ ପାଇଁ, ଜୀବନ ପାଇଁ ସତ୍ୟ ଅପେକ୍ଷା ହିତର ଆବଶ୍ୟକତା ଅଧିକ। ସତ୍ୟରକ୍ଷା ନାମରେ ଅସତ୍ୟକୁ ପକ୍ଷ ଦେବା ଅଧର୍ମ କଥା। ସମୟ ସହ ତାଳ ଦେଇ ଚିନ୍ତାଧାରାର ପରିବର୍ତ୍ତନର ଆବଶ୍ୟକତା ରହିଛି। ଯଦି ନୀତି ପରିବର୍ତ୍ତନ କରି ପାଣ୍ଡବ ସପକ୍ଷରେ ଯୁଦ୍ଧ କରିପାରୁନାହାଁନ୍ତି ସମାଜପାଇଁ ତାଙ୍କର ଯେଉଁ ଉତ୍ତରଦାୟିତ୍ୱ ରହିଛି ତାକୁ ତୁଲେଇ ପାରୁନାହାନ୍ତି, ତେବେ ମୃତ୍ୟୁପାଇଁ ପ୍ରସ୍ତୁତ ହୁଅନ୍ତୁ ବୋଲି ଶ୍ରୀକୃଷ୍ଣ ତାଙ୍କୁ ସ୍ପଷ୍ଟ ଭାବରେ କହିଥିଲେ। ଏତେ ଦିନେ ଭୀଷ୍ମଙ୍କ ଚକ୍ଷୁରେ ଯେଉଁ ଅଜ୍ଞାନତାର ପରଳ ଥିଲା, ତାହା ଦୂରୀଭୂତ ହେଲା। ପାଣ୍ଡବ ପକ୍ଷକୁ ଯାଇ ଯୁଦ୍ଧ କରିବାର ସମୟ ଆଉ ନ ଥିଲା। ସେ ସ୍ୱୀକାର କରିନେଲେ ମୃତ୍ୟୁକୁ। ନିଜ ମୃତ୍ୟୁର ଭେଦ ବତେଇ ଦେଇଗଲେ ଶତ୍ରୁ ଶିବିରକୁ।

କୌଣସି ନୂତନତାକୁ ସହଜରେ ଗ୍ରହଣ କରିପାରୁ ନଥିଲେ ଭୀଷ୍ମ। ତାଙ୍କ ଅଭିଧାନରେ ମୃତ୍ୟୁ ଲୋକରେ ଯିଏ ଯମ, ମର୍ତ୍ତ୍ୟ ଲୋକରେ ତାହା ନିୟମ। ନିୟମ ଭଗ୍ନ କରୁଥିବା ଲୋକଙ୍କୁ ମୃତ୍ୟୁଦଣ୍ଡ ପ୍ରଦାନ କରବାର ପକ୍ଷପାତୀ ସେ ଥିଲେ। ତାଙ୍କ ବିଚାରରେ ମୃତ୍ୟୁପରେ ଯମ ଆତ୍ମାକୁ ସଂସ୍କାର କରିଥାଏ। ତା'ପରେ ମଣିଷ ଶୁଦ୍ଧପୂତ ହୋଇ ପୁନର୍ଜନ୍ମ ନେଇଥାଏ। ପାଣ୍ଡବ ପାଞ୍ଚ ଭାଇଙ୍କର ଗୋଟିଏ ନାରୀକୁ ବିବାହ କରିବା ସେ ଆଦୌ ସହଜରେ ଗ୍ରହଣ କରିନଥିଲେ। ଏହାକୁ ସେ ମହାପାପ ବୋଲି କହୁଥିଲେ। ଶେଷରେ ଦ୍ରୌପଦୀଙ୍କ

ହାତରୁ ସୂର୍ଯ୍ୟ ଓ ଗଙ୍ଗା ଅର୍ଘ୍ୟ ଗ୍ରହଣ କରିବା ଦେଖି ସେ ନରମ ପଡିଥିଲେ।

ଅର୍ଜୁନଙ୍କ ତୀରରେ ଭୀଷ୍ମ ଭୂତଳଶାୟୀ ହୋଇନଥିଲେ, ସେ ଶୂନ୍ୟରେ ଝୁଲି ରହିଥିଲେ ଠିକ୍ ତାଙ୍କର ଜୀବନ ପରି। ତାଙ୍କର ଜନ୍ମ ଓ ଜୀବନ ଧାରଣ ପଦ୍ଧତି ଥିଲା ଅଦ୍ଭୁତ। ସେ ଗଙ୍ଗାଙ୍କ ଗର୍ଭରୁ ଜନ୍ମ ହୋଇଥିଲେ। ସେ ପୁରୁଷ ଥିଲେ କି ପୁରୁଷୋତ୍ତର ଥିଲେ  ଶେଷ ପର୍ଯ୍ୟନ୍ତ ତାହା ଜଣାପଡିନଥିଲା। ସେ ଗୃହୀ ଥିଲେ ସତ କିନ୍ତୁ ତାଙ୍କର ସଂସାର ନଥିଲା। ଯେଉଁ ରାଜ୍ୟର ସିଂହାସନର ସୁରକ୍ଷାପାଇଁ ସେ ଚତୁରାଶ୍ରମ ଧର୍ମର ନିୟମ ଭଗ୍ନ କରିଥିଲେ, ବାନପ୍ରସ୍ଥ ଯିବା ପରିବର୍ତ୍ତେ ସିଂହାସନ ସୁରକ୍ଷାର ଦାୟିତ୍ୱ ନେଲେ, ସେହି ବଂଶର ନୂତନ ପିଢ଼ି ଦ୍ୱାରା ସେ ବାରମ୍ବାର ଅପମାନିତ ହେଉଥିଲେ। ତତ୍କାଳୀନ ସାମାଜିକ ନିୟମ ଅନୁସାରେ ଜୀବନର ତୃତୀୟ ପର୍ଯ୍ୟାୟରେ ନୂତନ ପିଢ଼ିଙ୍କୁ ସ୍ୱାଧୀନତା ଦେଇ ବ୍ୟକ୍ତି ବାନପ୍ରସ୍ଥ କରୁଥିଲେ। ଯେହେତୁ ନୂତନ ପିଢ଼ିଙ୍କୁ ଭୀଷ୍ମ କଠୋର ଅନୁଶାସନ ଭିତରେ ରଖିବାକୁ ଚାହୁଁଥିଲେ ଫଳରେ ପିଢ଼ି ପାର୍ଥକ୍ୟ (Generation Gap)ର ଯନ୍ତ୍ରଣା ଭୋଗିଲେ। ନୂତନ ପିଢ଼ି ତାଙ୍କୁ ଅସମ୍ମାନିତ କଲେ। ଅମର୍ଯ୍ୟାଦା କଲେ। ତାଙ୍କ ପରି ଜଣେ ଜ୍ଞାନୀ ଗୁଣୀ ପରମ ତପସ୍ୱୀ, ବୀର, ଯୋଦ୍ଧା, ତ୍ୟାଗୀ, ସତ୍ୟନିଷ୍ଠ ପୁରୁଷ କୁରୁ ରାଜପରିବାରରେ ଉପଯୁକ୍ତ ମର୍ଯ୍ୟାଦା ପାଇ ପାରିନଥିଲେ। କିନ୍ତୁ ପାଣ୍ଡବମାନେ ତାଙ୍କୁ ଯଥାର୍ଥ ସମ୍ମାନ ଓ ମର୍ଯ୍ୟାଦା ପ୍ରଦାନ କରିଥିଲେ। ତାଙ୍କ ଉପଦେଶ ଓ ଆଶୀର୍ବାଦ ଗ୍ରହଣ କରି ରାଜ୍ୟ ଶାସନ କରିଥିଲେ। ତାହାହିଁ ଥିଲା ଭୀଷ୍ମଙ୍କ ଯନ୍ତ୍ରଣା ଜର୍ଜରିତ ଜୀବନର ଶେଷ ସାନ୍ତ୍ୱନା।

ମହାଭାରତର ମହାକାବ୍ୟର ଏ ଦୁଇ ଚରିତ୍ର ପରସ୍ପର ବିରୋଧୀ ହେଲେ ସୁଦ୍ଧା ସ୍ୱୀୟ ମହତ୍ ପଣରେ ଯେ ଯାହା ସ୍ଥାନରେ ମହୀୟାନ। ଆଗାମୀ ପିଢ଼ି ପାଇଁ ଉତ୍ତମ ସନ୍ଦେଶ ବହନ କରିଥିବା କର୍ତ୍ତବ୍ୟ ପରାୟଣ ନିଃସ୍ୱାର୍ଥପର ଚରିତ୍ର। ଯୁଗକୁ ପ୍ରତିନିଧିତ୍ୱ କରୁଥିବା ଏ ଦୁଇ ମହାନାୟକ ମହାଭାରତର ଅସଂଖ୍ୟ ଚରିତ୍ର ଚିତ୍ରଶାଳା ଭିତରେ ଶୁଦ୍ଧସୁବର୍ଣ୍ଣ ପରି ଜାଜ୍ଜ୍ୱଲ୍ୟମାନ ଦିଶନ୍ତି। ମହାଭାରତର କଳେବର ଏମାନଙ୍କୁ କୋଳାଗ୍ରତ କରି ଗୌରାବାନ୍ୱିତ ହୋଇଛି।



# ଆମ ସାରସ୍ୱତ ସଂପଦ

ରାମାୟଣ ମହାଭାରତ ଅଷ୍ଟାଦଶ ପୁରାଣ ଓ ବେଦ ଭାଗବତ ଆଦି ଗ୍ରନ୍ଥ ଭାରତୀୟ ଜନ ଜୀବନର ସାରସ୍ୱତ ଆଲେଖ୍ୟ। ଏ ଗ୍ରନ୍ଥମାନଙ୍କରେ ଐତିହାସିକ ସତ୍ୟତା ଅପେକ୍ଷା ସାମାଜିକ ସତ୍ୟତା ବେଶି ଗୁରୁତ୍ୱପୂର୍ଣ୍ଣ। ଯୁଗଧର୍ମ ଅନୁସାରେ ସାମାଜିକ ଜୀବନର ପରିବର୍ତ୍ତନ ଆସିଥାଏ। ସେହି ପରିବର୍ତ୍ତନକୁ ଆଧାର କରି ସୃଷ୍ଟି ହୋଇଥାଏ ସାହିତ୍ୟ। ବାଲ୍ମିକୀ ଯେଉଁ ସମୟରେ ରାମାୟଣ ରଚନା କରିଥିଲେ ସେ ସମୟର ଆହ୍ୱାନ ଯାହାଥିଲା ବ୍ୟାସଙ୍କ ମହାଭାରତ ବେଳକୁ ସେଥିରେ ଯଥେଷ୍ଟ ପରିବର୍ତ୍ତନ ଆସିଗଲାଣି। ସେହିହେତୁ ବାହ୍ୟ ସ୍ତରରେ ରାମାୟଣ ମହାଭାରତ ଭିତରେ ସେମିତି କିଛି ନୂତନତା ନଥିଲେ ସୁଦ୍ଧା ଅନ୍ତର୍ନିହିତ ଚେତନା କିନ୍ତୁ ସଂପୂର୍ଣ୍ଣ ଭିନ୍ନଥିଲା। ଦୁଇଟି ଯାକ ମହାକାବ୍ୟ ଭାଇମାନଙ୍କ ଭିତରେ ଥିବା ସଂପର୍କକୁ ଆଧାର କରି ଗଢ଼ିଉଠିଛି। ରାମାୟଣରେ ଭାଇମାନଙ୍କ ମଧ୍ୟରେ ଜଣେ ଅନ୍ୟଜଣକୁ ସବୁକିଛି ଦେଇଦେବାର ପ୍ରବଣତା। ମହାଭାରତରେ ଜଣେ ଅନ୍ୟଜଣକ ପାଖରୁ ସବୁକିଛି ଛଡ଼େଇ ଆଣିବାର ଅହଂକାର। ରାମାୟଣ ରଚନା କାଳରେ ଜୀବନ ଅପେକ୍ଷା ନୀତିନିୟମ ଆଦର୍ଶ ତ୍ୟାଗ ସତ୍ୟରକ୍ଷା ଥିଲା ବଡ଼ କଥା। ପୁରୁଷୋତ୍ତମ ରାମଚନ୍ଦ୍ର ସଂପୂର୍ଣ୍ଣ

ବନ୍ଧା ପଡିଯାଇଥିଲେ ଏଇ ସାମାଜିକ ବନ୍ଧନ ପାଖରେ। ଇଚ୍ଛେ ବି ଘୁଞ୍ଚିବାର କୁ ନଥିଲା ତାଙ୍କର। ମହାଭାରତର ମହାନାୟକ ଶ୍ରୀକୃଷ୍ଣଙ୍କୁ କିନ୍ତୁ କୌଣସି ସାମାଜିକ ନୀତିନିୟମ ବାନ୍ଧି ରଖି ପାରି ନଥିଲା। ଆବଶ୍ୟକ ପଡ଼ିଲେ ସବୁ ନୀତି ନିୟମକୁ ଭାଙ୍ଗିତୁଟି ଏକାକାର କରିଦେଉଥିଲେ। ନୀତିକୁ ଅନୀତି ଅନୀତିକୁ ନୀତି କରି ଥୋଇବାରେ ସେ ଥିଲେ ଧୂରନ୍ଧର। ତାଙ୍କ ଦୃଷ୍ଟିରେ ମଣିଷର କଲ୍ୟାଣ ପାଇଁ ଯେଉଁ କାର୍ଯ୍ୟ ଉଦ୍ଦିଷ୍ଟ ତାହା ଅନୀତି ହେଲେ ବି ନୀତି। ଅଧର୍ମ ହେଲେ ବି ଧର୍ମ। ତାହା ସେ ଅତି ଚମତ୍କାର ଭାବରେ ତର୍କସିଦ୍ଧ କରିଦେଉଥିଲେ। ସେହିହେତୁ ରାମଚନ୍ଦ୍ରଙ୍କୁ ମର୍ଯ୍ୟାଦା ପୁରୁଷ କହିବା ଯେମିତି ଯଥାର୍ଥ ଶ୍ରୀକୃଷ୍ଣଙ୍କୁ ଯୁଗପୁରୁଷ ବା ଯୁଗଳବତାର କହିବା ସେତିକି ଯୁକ୍ତିଯୁକ୍ତ। ଗଢ଼ି ଆସୁଥିବା ଯୁଗଧର୍ମକୁ ଅସ୍ୱୀକାର କରି ଏକ ନୂତନ ଧର୍ମ ସୃଷ୍ଟି କରିଥିଲେ ଶ୍ରୀକୃଷ୍ଣ। ପତିବ୍ରତା ସୀତା ଯୁଗଧର୍ମକୁ ସମ୍ମାନ ଦେଇ ସାରା ଜୀବନ ନିର୍ଯ୍ୟାତିତା ହେଉଛନ୍ତି, ରାବଣ ଅପେକ୍ଷା ରାମଙ୍କ ଠାରୁ ପାଇଛନ୍ତି ବେଶୀ ପୀଡା। ତଥାପି ପ୍ରତିବାଦ କରିବା ପରିବର୍ତ୍ତେ ଯୁଗ ଧର୍ମକୁ ସମ୍ମାନ ଦେଇ ସବୁ ସହି ଯାଇଛନ୍ତି ନୀରବରେ। କେବଳ ସେତିକି ନୁହେଁ ଜନ୍ମଜନ୍ମାନ୍ତର ପାଇଁ ରାମଙ୍କୁ ପତିରୂପେ ପାଇବା ପାଇଁ କାମନା କରିଛନ୍ତି। ସେହିପରି ରାମଚନ୍ଦ୍ର ମଧ୍ୟ ଯୁଗଧର୍ମ ଅନୁସାରେ ସବୁକିଛି ହରେଇ କେବଳ କାନ୍ଦିଛନ୍ତି ଜୀବନସାରା। କିନ୍ତୁ ଶ୍ରୀକୃଷ୍ଣଙ୍କୁ କାନ୍ଦିବାର କୌଣସି ସ୍ଥଳରେ କେହି ଦେଖି ନାହାନ୍ତି, ଯେତେ ବଡ ସମସ୍ୟା ଆସୁନା କାହିଁକି ରହସ୍ୟମୟ ହସଟିଏ ହସି ସେ ସବୁକୁ ସମାଧାନ କରିଦେଇପାରୁଥିଲେ। ସେଇଥିପାଇଁ ବଙ୍ଗଳାରେ ଆପ୍ତବାକ୍ୟଟିଏ ଅଛି, 'ରାମେର କ୍ରନ୍ଦନ କୃଷ୍ଣେର ହାସି'। ଜଣେ ନୀତିନିୟମର ଚାପରେ ଚାପି ହୋଇ ଗଲା ବେଳକୁ ଆଉ ଜଣେ ସମ୍ପୂର୍ଣ୍ଣ ବନ୍ଧନମୁକ୍ତ ମଣିଷ। ଜଣେ କାନ୍ଦି କାନ୍ଦି ନିଜ ଜୀବନ ସରେଇଦେଇଛନ୍ତି ତ ଆଉ ଜଣେ ହସି ହସି କୋଟି ଜୀବନରେ ପ୍ରାଣସ୍ପନ୍ଦନ ଭରିଦେଇଇଛନ୍ତି।

ଆମେ ରାମ ରାଜ୍ୟ ବୋଲି ଯେଉଁ ରାଜ୍ୟକୁ କହୁଛୁ ତାହା ରାମଙ୍କ ଦ୍ୱାରା ସ୍ଥାପିତ ହୋଇ ନଥିଲା। ତାଙ୍କ ପୂର୍ବଜମାନେ ଯେଉଁ ରାଜ୍ୟ ଶାସନ ପାଇଁ ନୀତି ନିୟମ ଓ ଅନୁଶାସନ ପ୍ରଚଳନ କରିଥିଲେ, ତାକୁ ହିଁ ଅକ୍ଷରେ ଅକ୍ଷରେ ପାଳନ କରି ଆସୁଥିଲେ ରାମଚନ୍ଦ୍ର। ସତ୍ୟ, ଅହିଂସା, ସେବା, ତ୍ୟାଗ,

ପ୍ରଜାନୁରଞ୍ଜନ ଏ ସବୁ ଥିଲା ସେ କାଳର ଅନୁଶାସନ । ଏହାକୁ କଠୋର ଭାବରେ ଅନୁସରଣ କରିବାଦ୍ୱାରା ଯେଉଁ ସାମାଜିକ ସମସ୍ୟା ଆସିଲା ତାହା ଜୀବନକୁ ଦୁର୍ବିସହ କରିଦେଲା । ପିତୃ ସତ୍ୟ ପାଳିବାକୁ ଯାଇ ପିତାଙ୍କୁ ହରେଇଲେ ରାମ । ଦଶରଥଙ୍କର ମୃତ୍ୟୁ ହେଲା । ସୀତା ଚୋରୀ ହେଲେ, ବାରବର୍ଷ କାଳ ରାଜ୍ୟହୀନ ହୋଇ ପତ୍ନୀ ବିଚ୍ଛେଦରେ ବଣଜଙ୍ଗଲ ଘୁରିବୁଲିଲେ । ଭରତ ମଧ୍ୟ ବସିଲେ ନାହିଁ ରାଜଗାଦିରେ । ରାଜପ୍ରାସାଦ ଶ୍ରୀହୀନ ହୋଇଗଲା । ରାମ ବନବାସରୁ ଫେରିବା ପରେ ମଧ୍ୟ ନିସ୍ତାର ମିଳିଲା ନାହିଁ । ପ୍ରଜାମାନଙ୍କର ମନ ରକ୍ଷା କରିବାକୁ ଯାଇ ରାମଚନ୍ଦ୍ର ଅନ୍ତସତ୍ତ୍ୱା ସୀତାଙ୍କୁ ପଠେଇଲେ ବନବାସ । ଲବକୁଶ ରାଜକୁମାର ହୋଇ ବି ବଣଜଙ୍ଗଲରେ ଋଷି ଆଶ୍ରମରେ ବଢ଼ିଲେ । ସୀତାଙ୍କର ପରୀକ୍ଷା ଆହୁରି ବାକି ଥିଲା । ସେ ବାରମ୍ବାର ଅପମାନିତ ହେବା ପରେ ଆଉ ବଞ୍ଚିବା ପାଇଁ ଚାହିଁଲେନି । ନିଜେ ପାତାଳି ହୋଇଗଲେ । ସେଇ ପୂର୍ବ ନୀତି ନିୟମର ବଳୟ ଭିତରେ ସତ୍ୟରକ୍ଷା କରିବାକୁ ଲକ୍ଷ୍ମଣ ଆତ୍ମଝାସ ଦେବା ପରେ ରାମ ନିଜେ ମଧ୍ୟ ଗଭୀର ଅବସାଦ ଗ୍ରସ୍ତ ହୋଇ ସରଯୂ ନଦୀରେ ଝାସ ଦେଇଥିଲେ ।

ଏତେ ସବୁ କରୁଣ ପରିସ୍ଥିତି ପରେ ବୋଧହୁଏ ନୀତି ନିୟମକୁ ଶିଥିଳ କରିବାର ଆବଶ୍ୟକତା ଅନୁଭବ କରିଥିବେ ସମସ୍ତେ । ଯାହାର ଅଗ୍ରଭୂମିକା ନେଇଥିଲେ ଶ୍ରୀକୃଷ୍ଣ । ନିଜେ ଷୋଳସହସ୍ର ଗୋପାଙ୍ଗନାଙ୍କ ସହ ନିଃସଙ୍କୋଚରେ ରାସଲୀଳା କରୁଥିବା ପରକୀୟା ପ୍ରୀତିର ପ୍ରବର୍ତ୍ତକ ଶ୍ରୀକୃଷ୍ଣ ଗୋଟିଏ ନାରୀ ସହ ପାଞ୍ଚଟି ପୁରୁଷର ବିବାହକୁ ସୁଦ୍ଧା ସ୍ୱୀକୃତି ଦେଇଥିଲେ । ମିଥ୍ୟା କହିବା, ଚଞ୍ଚକତା କରି ଅନ୍ୟକୁ ହତ୍ୟା କରିବା, ନିଃଶସ୍ତ୍ର ଉପରେ ଅସ୍ତ୍ର ଚାଳନା କରିବା ପରି ଅନେକ ଅନୀତି ଅଧର୍ମକାର୍ଯ୍ୟକୁ ସେ ଏମିତି ଧର୍ମଯୁଦ୍ଧର ଅନ୍ତର୍ଭୁକ୍ତ କରିଦେଲେ ଯେ କାହିଁ କେତେବଡ଼ ତାର୍କିକ ପୁରୁଷ ତାଙ୍କୁ ପ୍ରତିରୋଧ କରି ପାରିଲେ ନାହିଁ । ଏହାହିଁ ତଫାତ୍ ରାମାୟଣ ଓ ମହାଭାରତର ମହାକାବ୍ୟରେ ମର୍ଯ୍ୟାଦାପୁରୁଷ ରାମ ଓ ଯୁଗପୁରୁଷ ଶ୍ରୀକୃଷ୍ଣ ମଧ୍ୟରେ । ରାମ ଥିଲେ ରକ୍ଷଣଶୀଳ ଧର୍ମର ସଂରକ୍ଷକ । ଶ୍ରୀକୃଷ୍ଣ କିନ୍ତୁ ଥିଲେ ନବ ଚେତନାର ବାହକ । ନୂଆ ଯୁଗ ସୃଷ୍ଟି କରିବାପାଇଁ ସେ ସାରାଜୀବନ ଭବଘୂରାଙ୍କ ପରି ଘୁରି ବୁଲିଛନ୍ତି ସାରା ଭାରତବର୍ଷ ।

ବ୍ୟାସକୃତ ଅଷ୍ଟାଦଶ ପୁରାଣ ଏହି ରାମାୟଣ ଓ ମହାଭାରତର ସନ୍ଧିକାଳର ସୃଷ୍ଟି। ମହାଭାରତ ଓ ରାମାୟଣରେ ଗୋଟିଏ ନିର୍ଦ୍ଦିଷ୍ଟ ବଂଶ ଗାଥା ଗାରିମା ବର୍ଣ୍ଣନା ହୋଇଥିବାରୁ ଏହାକୁ ଆମେ ପୁରାଣର ଅନ୍ତର୍ଭୁକ୍ତ କରି ନ ଥାଉ। ଇତିହାସ କିମ୍ବଦନ୍ତୀ ଓ ଲୋକକଥା ଆଦି ସମାଜରେ ପ୍ରଚଳିତ ବିଭିନ୍ନ କଥା କାହାଣୀକୁ ପୁରାଣ ଅନ୍ତର୍ଗହିତ କରିଥାଏ। ଯଦିଓ ସବୁ ପୁରାଣର ରଚୟିତା ବ୍ୟାସ ବୋଲି କୁହାଯାଏ, କିନ୍ତୁ ଏଗୁଡିକର ରଚନାକାଳ ସୀମା ଖୁବ୍ ବ୍ୟାପକ। ବିଭିନ୍ନ ସମୟରେ ବିଭିନ୍ନ ରଚୟିତା ଏଗୁଡିକୁ ଲେଖିବା ପରି ମନେହୁଏ। ବିଷ୍ଣୁପୁରାଣ, ମତ୍ସ୍ୟପୁରାଣ, ଭବିଷ୍ୟପୁରାଣ, କୂର୍ମପୁରାଣ, ଅଗ୍ନିପୁରାଣ, ଭବିଷ୍ୟପୁରାଣ, ବରାହପୁରାଣ, ଅଗ୍ନିପୁରାଣ, ବାମନପୁରାଣ, ମହାଭାଗବତ ପୁରାଣ, ସ୍କନ୍ଦପୁରାଣ, ଶିବ ପୁରାଣ, ବାୟୁପୁରାଣ, ନାରଦୀୟ ପୁରାଣ, ବ୍ରହ୍ମବୈବର୍ତ୍ତ ପୁରାଣ, ପଦ୍ମପୁରାଣ ଆଦି ଅଷ୍ଟାଦଶ ପୁରାଣ ସହ ଅଷ୍ଟାଦଶ ଉପପୁରାଣ ମଧ୍ୟ ରହିଛି।

ଏହି ପୁରାଣମାନଙ୍କ ମଧ୍ୟରୁ ଛଅଟି ସାତ୍ତ୍ୱିକ ପୁରାଣରେ ବିଷ୍ଣୁଙ୍କର ମହିମା ଗାନ କରାଯାଇଥିବା ବେଳେ ଅନ୍ୟ ଛଅଟି ରାଜସିକ ପୁରାଣରେ ବ୍ରହ୍ମାଙ୍କ ଗୁଣଗାନ କରାଯାଇଛି। ଅବଶିଷ୍ଟ ଛଅଟି ପୁରାଣରେ ଶିବଙ୍କର ମହିମା ପ୍ରଖ୍ୟାପିତ ହୋଇଛି। ଏହାକୁ ତାମସିକ ପୁରାଣ କୁହାଯାଏ। ପ୍ରତ୍ୟେକ ପୁରାଣ ଏକାଧିକ ଖଣ୍ଡରେ ବିଭକ୍ତ ହୋଇଛି।

ପୁରାଣଗୁଡିକର ଚରିତ୍ର ଗୁଡିକ ଯେହେତୁ ମୁଖ୍ୟତଃ କାହାଣୀ ଓ ଜନଶ୍ରୁତି ଆଧାରିତ ଥିଲା, ଏଗୁଡିକରେ ଚରିତ୍ରର ଐତିହାସିକତା ପରିବର୍ତ୍ତେ ତତ୍‌କାଳୀନ ସମାଜର ରାଜନୈତିକ, ଅର୍ଥନୈତିକ, ଆଧ୍ୟାତ୍ମିକ ଆଦି ସାମାଜିକ ଚିତ୍ରର ସାଙ୍କେତିକ ସ୍ୱରୂପ ଅବଗୁଣ୍ଠିତ ହୋଇ ରହିଛି। ସେଗୁଡିକୁ ଆକ୍ଷରିକ ଅର୍ଥ ନ କରି ସେହି ସଂକେତକୁ ଖୋଜି ବାହାର କଲେ ପୁରାଣ ପାଠର ତାତ୍ପର୍ଯ୍ୟ ଠିକ୍ ଅନୁଭବ କରି ହୁଏ। ଯେପରି କି ବିଷ୍ଣୁପୁରାଣର ଉତ୍ତାନ ପାଦ ରାଜା, ତାଙ୍କ ସ୍ତ୍ରୀ ସୁନୀତି ଓ ସୁରୁଚି, ପୁତ୍ର ଧ୍ରୁବ ଓ ଉତ୍ତମ। ଉତ୍ତାନ ପାଦ ରାଜା ଅର୍ଥାତ୍ ଆଗକୁ ବଢ଼ିବାକୁ ହେଲେ ଯଦି ଆମେ ସୁରୁଚି ସଂପନ୍ନ ହେବା ତାହେଲେ ଉତ୍ତମ। କିନ୍ତୁ ସୁନୀତି ସଂପନ୍ନ ମଣିଷର ଧ୍ରୁବ ପ୍ରାପ୍ତି ହୁଏ। ସେମାନେ ସତ୍ୟର ସନ୍ଧାନ ପାଇଥା'ନ୍ତି। ଶିବପୁରାଣରୁ ଆଉ ଏକ ଉଦାହରଣ ନିଆଯାଇପାରିବ।

ଦକ୍ଷ ଥିଲେ ପ୍ରଚଣ୍ଡ ଅହଂକାରୀ। ତାଙ୍କର ପ୍ରତିଭା ଥିଲା କିନ୍ତୁ ଅହଂ ସର୍ବସ୍ୱ ହେତୁ ସେ ପ୍ରତିଭା ଜନକଲ୍ୟାଣରେ ଲାଗିପାରୁ ନଥିଲା। ଦକ୍ଷତା ଓ ପ୍ରତିଭା ସହ ବିନମ୍ରତା ଜଡିତ। ଶିବ ଦକ୍ଷଙ୍କର ଗର୍ବୋନ୍ନତ ଶିର କାଟି ଛାଗଳ ଶିର ଲଗାଇଲେ। ଅର୍ଥାତ୍ ତାଙ୍କର ଅହଂକାର ଭାଙ୍ଗି ଶିରନତ କରି ବଞ୍ଚିବା ଶିଖେଇଲେ। ଏମିତି ଅସଂଖ୍ୟ କାହାଣୀ କିମ୍ବଦନ୍ତୀରେ ପୁରାଣ ରସସିକ୍ତ ହୋଇଛି। ଏହି କାହାଣୀମାନଙ୍କର ଅନ୍ତରାଳରେ ଯେଉଁ ବାର୍ତ୍ତା ରହିଛି ତାହାହିଁ ପୁରାଣମାନଙ୍କର ଐଶ୍ୱର୍ଯ୍ୟ। ଆମର ଐତିହ୍ୟ।

ପିଢ଼ି ପିଢ଼ି ଧରି ଶ୍ରୁତିରେ ଗଡି ଗଡି ଆସୁଥିବା ବେଦର ଶ୍ଳୋକ ସମୁହକୁ ଲିପିବଦ୍ଧ କରି ବିଭାଗୀକରଣ କରିବା ଠାରୁ ଅଷ୍ଟାଦଶ ପୁରାଣ ମହାଭାରତ ଓ ଦେବୀ ଭାଗବତ ଶ୍ରୀମଦ୍ ଭାଗବତ ପରି ଅଜସ୍ର ଗ୍ରନ୍ଥର ରଚୟିତା ବ୍ୟାସଦେବ ଜଣେ ଥିଲେ କି ଏକାଧିକ ଥିଲେ ଅଥବା ଯେଉଁମାନେ ସେ ସମୟରେ ଲେଖୁଥିଲେ ସମସ୍ତଙ୍କୁ ବ୍ୟାସ କୁହାଯାଉଥିଲା, ତାହା ଏବେ ଗବେଷଣା ସାପେକ୍ଷ। ବ୍ୟାସଙ୍କ ନାମରେ ଏକ ପ୍ରକାଶନୀ ସଂସ୍ଥା ରହିଥିବା ମଧ୍ୟ ଅସମ୍ଭବ ନୁହେଁ, ତେବେ ସେ ଯାହା ହେଉ ଯୁଗ ଯୁଗ ଧରି ସମାଜକୁ ମାର୍ଗ ଦର୍ଶନ କରୁଥିବା, ବଞ୍ଚିବାର କୌଶଳ ଶିକ୍ଷା ଦେଉଥିବା ଓ ବଞ୍ଚିବାକୁ ରସସିକ୍ତ କରି ମାନବୀୟ ଆବେଦନରେ ଜୀବନର ଜୟଗାନ କରୁଥିବା ପୁରାଣକାରମାନଙ୍କୁ ଆମେ ଯେତେ କୃତଜ୍ଞତା ଜ୍ଞାପନ କଲେ ସୁଦ୍ଧା ତାହା ଯଥେଷ୍ଟ ହେବ ନାହିଁ। ସେମାନଙ୍କ ପଦତଳେ କୋଟି କୋଟି ପ୍ରଣାମ।



# ଦଶହରାର ସାମାଜିକ ପ୍ରାସଙ୍ଗିକତା

"ମା ଦୁର୍ଗେ ! ତୁମର ଯୋଗଶକ୍ତିରେ ଆମ ମଧ୍ୟରେ ପ୍ରବେଶ କର। ଆମେ ତୁମର ଅସ୍ତ୍ର ହୋଇଯିବୁ। ତୁମର ଖଡ୍‌ଗ ହୋଇ ସମସ୍ତ କଲୁଷ ନାଶ କରିବୁ। ତୁମର ପ୍ରଦୀପ ହୋଇ ଅଜ୍ଞାନ ତମିସ୍ରାକୁ ଧ୍ୱଂସ କରିବୁ। ତୁମର ସନ୍ତାନମାନଙ୍କର ଏହି ପ୍ରାର୍ଥନା ପରିପୂର୍ଣ୍ଣ କର ଜନନୀ।"

ଏହାଥିଲା ସିଦ୍ଧଯୋଗୀ ଅରବିନ୍ଦଙ୍କର ଜଗତ୍‌ଜନନୀ ଦୁର୍ଗାଙ୍କ ପାଇଁ ଆବାହନୀ ସଂଗୀତ। ଏହି ଦୁଇଧାଡ଼ି ସଙ୍ଗୀତ ହିଁ ଦୁର୍ଗାପୂଜା ବା ଦଶହରାର ସକଳ ସାମାଜିକ ପ୍ରାସଙ୍ଗିକତା ସ୍ୱଷ୍ଟ ହୃଦ୍‌ବୋଧ କରିହୁଏ।

ଭାରତୀୟ ଜନମାନସରେ ଜଗତ୍‌ଜନନୀ ଦୁର୍ଗା ଶକ୍ତି ସ୍ୱରୂପିଣୀ। ସେ ଆଦ୍ୟାଶକ୍ତି, ସୃଷ୍ଟିକାରିଣୀ, ପାଳନକର୍ତ୍ତ୍ରୀ ପୁଣି ସଂହାର କାରିଣୀ। ସୃଷ୍ଟିର ମଙ୍ଗଳପାଇଁ ସେ ସର୍ବଦା ଅଭୟ ମୁଦ୍ରାରେ ଥା'ନ୍ତି।

ଦେବତାମାନଙ୍କୁ ସଂକଟରୁ ଉଦ୍ଧାର କରିବା ପାଇଁ ଯିଏ ଖଣ୍ଡାଖର୍ପର ଧାରିଣୀ, ଉଗ୍ରରୂପ ଧାରଣ କରନ୍ତି, ଅପଶକ୍ତିମାନଙ୍କ ବିନାଶ ପାଇଁ ସଂହାରିଣୀ ସାଜନ୍ତି ସିଏ ପୁଣି ମଙ୍ଗଳମୟୀ ମାତୃମୂର୍ତ୍ତି ରୂପେ ପ୍ରକୀର୍ତ୍ତିତା ହୁଅନ୍ତି। 'ଦେବୀ ମହାତ୍ମ୍ୟରେ ସେ ଦେବତାମାନଙ୍କୁ କହିଛନ୍ତି, ଅନାବୃଷ୍ଟି ସମୟରେ ମୋ ଶରୀରରୁ ସଂଜୀବନୀ ରସ ନିର୍ଗତ କରାଇବି ଓ ସେହି ରସଦ୍ୱାରା ଶସ୍ୟାଦି ସୃଷ୍ଟି କରି ମୋ ସନ୍ତାନମାନଙ୍କୁ ପ୍ରତିପୋଷଣ କରିବି। ସେହି ହେତୁ ମୁଁ ଶାକାମ୍ବରୀ।

ଶାକର ଅର୍ଥ ହେଲା ଶସ୍ୟ। ସେ ଶସ୍ୟର ଅଧିକାରିଣୀ। ଏହାହିଁ ଶାରଦୀୟ ଦଶହରାର ସାଙ୍କେତିକ ସ୍ୱରୂପ। ଶରତଋତୁ ଶସ୍ୟ ସମ୍ଭାରର ଋତୁ। ବିଭିନ୍ନ ପ୍ରକାର ଫଳପୁଷ୍ପ ପତ୍ରରେ ଧରାବକ୍ଷ ଶସ୍ୟ ଶ୍ୟାମଳା ହୋଇଥାଏ। ଦେବୀଙ୍କୁ

କଦଳୀ ପତ୍ର, ବେଲପତ୍ର, ହଳଦୀପତ୍ର ଆଦି ନବପତ୍ରିକାରେ ଆବାହନୀ କରାଯାଇଥାଏ । ଏହାକୁ ନବପତ୍ରିକା ଉତ୍ସବ କୁହାଯାଏ । କୃଷିପ୍ରଧାନ ଭାରତୀୟ ସମାଜରେ ଏହି ପର୍ବକୁ କୃଷି ମହୋତ୍ସବ ରୂପେ ଗ୍ରହଣ କରାଯାଇଥାଏ । ଓଡ଼ିଶାର ଉପକୂଳବର୍ତ୍ତୀ ଅଧିବାସୀମାନେ ଏହିଦିନ ନୂଆ ଖାଇଥା'ନ୍ତି । ଦେବୀଙ୍କ ପୂଜା ଆରାଧନା ପାଇଁ ବିଭିନ୍ନ ପ୍ରକାର ଶସ୍ୟର ଆବଶ୍ୟକତା ହୋଇଥାଏ । ହରପ୍ପାରୁ ଶସ୍ୟ ଓ ପଲ୍ଲବ ବହିର୍ଗତ ହେଉଥିବା ନାରୀମୂର୍ତ୍ତିଟିଏ ଆବିଷ୍କୃତ ହୋଇଛି । ଯାହାକୁ ଶାକାମ୍ବରୀ ଦୁର୍ଗା ବୋଲି ପରିକଳ୍ପନା କରାଯାଉଛି ।

ଶୁକ୍ଳପକ୍ଷରେ ଦେବୀପୂଜା ନାମରେ ଓ ଚୈତ୍ରମାସର ଶୁକ୍ଳ ପକ୍ଷରେ ବାସନ୍ତୀ ଦେବୀ ପୂଜା ନାମରେ ଦୁର୍ଗାଙ୍କର ମୃଣ୍ମୟ ମୂର୍ତ୍ତି ପୂଜା କରାଯାଇଥାଏ । ଶାରଦୀୟ ଦେବୀ ପୂଜାକୁ ଦଶହରା ପୂଜା ବୋଲି କୁହାଯାଏ । ଏହି ପୂଜାମାନଙ୍କରେ ଦେବୀଙ୍କର ମୃଣ୍ମୟ ମୂର୍ତ୍ତି ଆବାହନ କରାଯାଏ ଓ ପୂଜାର୍ଚ୍ଚନା ପରେ ସସମ୍ମାନେ ତାଙ୍କୁ ବିସର୍ଜନ କରାଯାଇଥାଏ । ମାଆଙ୍କର ମୃଣ୍ମୟ ମୂର୍ତ୍ତି ପରିକଳ୍ପନା ବହୁ ପ୍ରାଚୀନ । ଚଣ୍ଡୀ ସପ୍ତଶତୀ ଅନୁସାରେ ଶତ୍ରୁମାନଙ୍କ ଦ୍ୱାରା ରାଜ୍ୟରୁ ବିତାଡିତ ହୋଇଥିବା ରାଜା ସୁରଥ ଓ ପତ୍ନୀ ଏବଂ ପୁତ୍ରଙ୍କ ଦ୍ୱାରା ପରିତ୍ୟକ୍ତ ହୋଇଥିବା ବୈଶ୍ୟ ସମାଧି ମେଧସ୍ ଋଷିଙ୍କ ପରାମର୍ଶ ଅନୁସାରେ ଚଣ୍ଡୀଙ୍କର ମୃଣ୍ମୟ ମୂର୍ତ୍ତି ପୂଜା କରି କୃତକାର୍ଯ୍ୟ ହୋଇଥିଲେ । ସେହିଦିନ ଠାରୁ ଭାରତରେ ଦେବୀଙ୍କର ମୃଣ୍ମୟ ପୂଜା ପରଂପରା ଆରମ୍ଭ ହୋଇଥିଲା ।

ରାମଚନ୍ଦ୍ର ରାବଣର ଅହଂକାର ଚୂର୍ଣ୍ଣ କରିବାପାଇଁ ଦେବୀଙ୍କୁ ପୂଜା ଆରଧନା କରି ଆଶ୍ୱିନମାସ ଶୁକ୍ଳଦଶମୀ ଦିନ ଲଙ୍କା ଅଭିଯାନ କରିଥିଲେ । ସେହିଦିନଠାରୁ ଏହି ଦିବସକୁ ବିଜୟା ଦଶମୀ ବୋଲି କୁହାଯାଉଛି ।

ରାଜସ୍ଥାନରେ ଏହିଦିନ ଦୁର୍ଗା, ଲକ୍ଷ୍ମୀ ଓ ସରସ୍ୱତୀଙ୍କୁ ପୂଜା ଅର୍ଚ୍ଚନା କରାଯାଇଥାଏ । ଉତ୍ତର ଭାରତର କେତେକ ସ୍ଥାନରେ ଦଶହରା ପୂଜା ପରେ କୁଆଁରୀ କନ୍ୟାଙ୍କୁ ପୁଷ୍ପ ଓ ନାନା ପ୍ରକାର ଉପହାର ପ୍ରଦାନ କରାଯାଏ । ଏହାକୁ 'କଞ୍ଜକ' ପର୍ବ କୁହାଯାଇଥାଏ ।

ପଞ୍ଜାବରେ ଦଶହରା ପର୍ବ ପରେ ଗହମ ବୁଣିବା ପର୍ବ ଆରମ୍ଭ ହୋଇଥାଏ । ନାରୀମାନେ ଗୀତ ଗାଇ ଗହମ ବୁଣାର ଶୁଭଦିଅନ୍ତି ।

ବଙ୍ଗଳାର ପରଂପରା ଅନୁସାରେ ଏହି ପର୍ବ ଅବସରରେ ବିବାହିତା କନ୍ୟା

ପିତ୍ରାଳୟକୁ ଆସିଥା'ନ୍ତି। କୁହାଯାଏ ଥରେ ଗୌରୀ ଶାଶୁଘରେ ତାଙ୍କୁ ସ୍ମରଣ କରି କାନ୍ଦୁଛନ୍ତି ବୋଲି ହିମାଳୟଙ୍କ ପତ୍ନୀ ମୈନାରାଣୀ ସ୍ୱପ୍ନ ଦେଖିଛନ୍ତି। ତେଣୁ ସେ ଝିଅକୁ ପାଖକୁ ଡାକି ତିନିଦିନ ମହାଆନନ୍ଦରେ କଟାଇଛନ୍ତି ଓ ଦଶହରା ଦିନ ସ୍ୱାମୀ ପାଖରେ ଛାଡି ଆସିଛନ୍ତି। ସେହିହେତୁ ଦଶହରାଦିନ ବଙ୍ଗ ଦେଶରେ ଦେବୀ ବିସର୍ଜନ ହୁଅନ୍ତି।

ଏସବୁ ପୂଜାର୍ଚ୍ଚନା ପରଂପରାରୁ ଜଣାଯାଏ ଶକ୍ତିକୁ ସମ୍ମାନ ଦେବା ଆଳରେ ସମାଜରେ ନାରୀ ଶକ୍ତିର ପ୍ରାଧାନ୍ୟ ହିଁ ସ୍ୱୀକାର କରାଯାଇଛି। ସମାଜରେ ନାରୀ ବିନା ପୁରୁଷ ଅସଂପୂର୍ଣ୍ଣ। ସ୍ୱୟଂ ଦେବତାମାନେ ଏହା ସାବ୍ୟସ୍ତ କରିଦେଇଛନ୍ତି। ସାଂପ୍ରତିକ ଯୁଗରେ ନାରୀମାନେ ତାଙ୍କର ନାଯ୍ୟଦାବୀ ଓ ଅଧିକାର ପାଇଁ ସଂଗ୍ରାମ କରୁଛନ୍ତି। ଯୁଗଯୁଗ ଧରି ଭାରତୀୟ ସମାଜରେ ଶକ୍ତିପୂଜା ପରଂପରା ଓ ସମାଜ ଜୀବନ ସହ ଶକ୍ତିଚେତନା ଯେପରି ଘନୀଭୂତ ହୋଇଯାଇଛି ସେଥିରୁ ଏସବୁ ଯଥାର୍ଥ ନୁହେଁ ବୋଲି ପ୍ରତୀୟମାନ ହୁଏ। ନାରୀକୁ ଦେବୀ ରୂପରେ ଆରାଧନା କଲାପରେ ଅନାଦର ଓ ଅବହେଳାର ପ୍ରଶ୍ନ ଉଠୁଛି କେଉଁଠି ?

ହିମାଚଳ ପ୍ରଦେଶରେ ଦେବୀ ପୂଜାର ପାଳନ ବିଧି ଭିନ୍ନ। ଭକ୍ତମାନେ ଦେବୀଙ୍କ ପାଖରେ ମଇଁଷିଟିଏ ଆଣି ନଅଦିନ ପର୍ଯ୍ୟନ୍ତ ବାନ୍ଧି ରଖନ୍ତି। ଦଶମୀଦିନ ମଇଁଷିକୁ ମୁକ୍ତ କରିଦିଅନ୍ତି ଓ ବିଭିନ୍ନ ଅସ୍ତ୍ରଶସ୍ତ୍ରରେ ତାଙ୍କୁ ହତ୍ୟା କରନ୍ତି। ମଇଁଷିକୁ ସେମାନେ ମହିଷାସୁରର ପ୍ରତୀକ ରୂପେ ଗ୍ରହଣକରିଥା'ନ୍ତି। ଏଠି ମଧ୍ୟ ସେହି ଏକାକଥା। ସମାଜରେ ମାନବିକତାର ଅବମାନନା ହେଲେ ପଶୁଶକ୍ତି ପ୍ରବଳ ହେଲେ, ନ୍ୟାୟନୀତି ଧର୍ମରେ ସଂକଟ ଦେଖାଦେଲେ ନାରୀ ହିଁ ସେସବୁକୁ ସନ୍ତୁଳିତ କରିବାରେ ସମର୍ଥ ହୁଏ।

ଦୁର୍ଗାପୂଜା ପରି ଦଶହରା ପର୍ବ ବର୍ଷରେ ଦୁଇଥର ପାଳିତ ହୁଏ। ଜ୍ୟେଷ୍ଠ ମାସ ଶୁକ୍ଳ ଦଶମୀ ହେଉଛି ଗଙ୍ଗାଙ୍କର ଜନ୍ମତିଥି। ଏହିଦିନ ଗଙ୍ଗାଙ୍କର ପୂଜାର୍ଚ୍ଚନା ସାରି ଗଙ୍ଗାରେ ସ୍ନାନ କଲେ ତ୍ରିବିଧ କାୟିକ ପାପ, ତ୍ରିବିଧ ମାନସିକ ପାପ ଓ ଚତୁର୍ବିଧ ବାଚନିକ ପାପ ଆଦି ଦଶବିଧ ପାପ ହରଣ ହେଉଥିବାରୁ ଏହି ତିଥିକୁ ଗଙ୍ଗା ଦଶହରା ବୋଲି କୁହାଯାଏ। କିନ୍ତୁ ଶାରଦୀୟ ଦୁର୍ଗାପୂଜାର ଶେଷଦିବସ ହିଁ ଦଶହରା ବୋଲି ସର୍ବଜନବିଦିତ। ଦଶହରା ପୂର୍ବରୁ ଦୁର୍ଗାଙ୍କର

ନବଦିନବ୍ୟାପୀ ପୂଜା ପଦ୍ଧତିକୁ ମଧ୍ୟ ଏହି ଦଶହରା ପର୍ବର ଅନ୍ତର୍ଭୁକ୍ତ କରାଯାଏ ।।

ଏହି ଦିନ ସିଂହବାହିନୀ ଦୁର୍ଗା ଆସୁରିକ ଶକ୍ତିର ପ୍ରତୀକ ମହିଷାସୁରକୁ ବଧ କରିଥିଲେ । ଏ ଯୁଦ୍ଧ ପ୍ରକ୍ରିୟା ଅଷ୍ଟମୀ ଦିନ ଆରମ୍ଭ ହୋଇ ଦଶମୀଦିନ ଶେଷ ହୋଇଥିଲା । ଅଷ୍ଟମୀ ଓ ନବମୀର ସନ୍ଧିରେ ମହାମାରୁ ହୋଇଥିଲା । ସହସ୍ର ସହସ୍ର ଅସୁର ମୃତ୍ୟୁମୁଖରେ ପଡିଥିଲେ । ନବମୀ ରାତ୍ରିର ଅନ୍ଧକାର ସହ ପୃଥିବୀରୁ ସବୁ ଅପଶକୁନର ଛାୟା ଦୂରୀଭୁତ ହେଲା । ଦଶମୀ ଦିନ ଶାନ୍ତି ପ୍ରତିଷ୍ଠା ହେଲା ଓ ସବୁ ପ୍ରକାର ଶୁଭକାର୍ଯ୍ୟ ଆରମ୍ଭ ହେଲା । ଏହିଦିନ ଜଗତରୁ ଦୁଃଖର ହରଣ ହୋଇଥିବାରୁ ଏହା ଦୁଃଖ ହା ଦଶମୀ ବୋଲି ପ୍ରସିଦ୍ଧି ଲାଭକରିଛି । ଶାରଳା ଦାସ ଚଣ୍ଡୀ ପୁରାଣରେ ଲେଖିଛନ୍ତି –

*ତୈତିଳ ନାମେ କରଣ ଯୋଗ ନାମେ ଧୃତି*
*ସର୍ବସିଦ୍ଧି ହୋଇଲା ସେ ଦଶମୀର ତିଥି ।*

ରାଜରାଜୁଡା ଅମଳରେ ରାଜାମାନେ ବିଜୟା ଦଶମୀ ଦିନ ହିଁ ଯୁଦ୍ଧ ଅଭିଯାନ କରୁଥିଲେ । ଏହି ଦିନଟିକୁ ହିନ୍ଦୁମାନେ ଅତ୍ୟନ୍ତ ପବିତ୍ର ଓ ଶୁଭଦିନ ବୋଲି ଗ୍ରହଣ କରିଥା'ନ୍ତି । ଏହି ଦିନରେ କାର୍ଯ୍ୟ ଆରମ୍ଭ କରି ପ୍ରତିଷ୍ଠିତ ଲୋକମାନେ ବହୁ ସିଦ୍ଧି ଲାଭ କରିଥିବାରୁ ଏହି ଦିନ କୌଣସି କାର୍ଯ୍ୟର ଶୁଭ ଦେଲେ ଆମମାନଙ୍କର ଆତ୍ମବିଶ୍ୱାସ ବଢ଼ିଯାଏ । ଆମେ ସିଦ୍ଧ ମନୋରଥ ହେଉ । ବଙ୍ଗ ଦେଶରେ ଚିରସ୍ଥାୟୀ ବନ୍ଦୋବସ୍ତ ଆଇନ ହେବା ଫଳରେ ଗୋଟାଏ ନବ୍ୟ ଜମିଦାର ଗୋଷ୍ଠୀ ସୃଷ୍ଟି ହେଲେ । ନିଜର ଐଶ୍ୱର୍ଯ୍ୟ ଓ ପ୍ରାଚୁର୍ଯ୍ୟ ପ୍ରଦର୍ଶନ ପାଇଁ ଦୁର୍ଗାପୂଜା ସେମାନଙ୍କର ଗୋଟିଏ ମାଧ୍ୟମ ହୋଇଉଠିଲା ।

ଇଂରେଜ ପ୍ରଚଳିତ ସୂର୍ଯ୍ୟାସ୍ତ ଆଇନ ଫଳରେ ଓଡ଼ିଶାର ଜମିଦାରୀ ଶାଗମାଛ ମୂଲ୍ୟରେ କଲିକତାରେ ନିଲାମ ହୋଇଗଲା । ଓଡ଼ିଆଙ୍କ ଜମିଦାରୀ ବଙ୍ଗାଳୀମାନେ କିଣିନେଇ ଓଡ଼ିଶା ଆସିଲେ । ଏଠାରେ ମଧ୍ୟ ସେହି ପରମ୍ପରାରେ ଦଶହରା ପୂଜା ଆରମ୍ଭ କଲେ । କ୍ରମେ ଏହି ପୂଜା କେବଳ ଜମିଦାରମାନଙ୍କ ଭିତରେ ସୀମିତ ନରହି ଅନ୍ୟାନ୍ୟ ମଧ୍ୟବିତ୍ତ ମାନଙ୍କ ଦ୍ୱାରା ପାଳିତ ହେଲା । ଏଠାରେ ମଧ୍ୟ ସେହି ବିଭବ ପ୍ରଦର୍ଶନର ପ୍ରତିଯୋଗିତା ରହିଲା । ଦେବୀଙ୍କ ଆରାଧନା ଧୀରେ ଧୀରେ ଜଣେ ନୁହେଁ ଗଣ ପର୍ବ କରିଦିଆଗଲା । ଜନସାଧାରଣଙ୍କ ଠାରୁ ଚନ୍ଦା ଆଦାୟ କରି ସାମୁହିକ ଭାବରେ ଏ ପୂଜା ପାଳିତ ହେଲା ।

ବର୍ତ୍ତମାନ ଦଶହରା ପର୍ବକୁ ଭାଇଚାରାର ପର୍ବ ବୋଲି କୁହାଯାଉଛି । ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ଏ ପାର୍ବଣ ଆନନ୍ଦ ଉଲ୍ଲାସର ସହ ପାଳନ କରୁଛନ୍ତି । ସମାଜରେ ଶାନ୍ତି ସୌହାର୍ଦ୍ଦ୍ୟ ମୈତ୍ରୀ ଓ ଭାତୃଭାବନା ପ୍ରତିଷ୍ଠା ପାଇଁ ଏହି ପର୍ବ ଏକ ପ୍ରମୁଖ ଭୂମିକା ଗ୍ରହଣ କଲା । ତଥାପି କେତେକ ଅସାମାଜିକ ଲୋକଙ୍କ କାରଣରୁ ଏ ପୂଜାର ବେଳେବେଳେ ମହତ୍ୱ କ୍ଷୁଣ୍ଣ ହେଉଛି । ପୂଜାକୁ ଆଡମ୍ବର କରିବା ନାଁରେ ଚାନ୍ଦା ଆଦାୟକାରୀମାନେ ଜନସାଧାରଣଙ୍କୁ ସୀମାତିକ୍ରାନ୍ତ ଜୁଲମ କରୁଛନ୍ତି । ପୂଜା ପେଣ୍ଡାଲରେ ଭକ୍ତି ସଂଗୀତ ଅଥବା ଆଧ୍ୟାତ୍ମିକ ଆଲୋଚନା କମ୍ ହୁଏ କିନ୍ତୁ ବେଶି ଅଶ୍ଳୀଳ ନୃତ୍ୟ ପରିବେଷଣ କରାଯାଏ । ....। ଅସାମାଜିକ ବ୍ୟକ୍ତିଙ୍କ କାର୍ଯ୍ୟକଳାପରେ ଜନତା ଅତିଷ୍ଠ ହୋଇଯାଆନ୍ତି । ଦେବୀ ବିସର୍ଜନ ବେଳେ ସାଂପ୍ରଦାୟିକ ଦଙ୍ଗା ସର୍ବଦା ଏକ ସ୍ପର୍ଶକାତର ପ୍ରସଙ୍ଗ ହୋଇ ରହିଯାଏ । ଭବାନୀ ପାଟଣାର ଛତ୍ରଯାତ୍ରା ଏହାର ସବୁଠାରୁ ଲୋମହର୍ଷଣକାରୀ ଉଦାହରଣ । ରାଜରାସ୍ତାରେ ହଜାର ହଜାର ସଂଖ୍ୟାରେ ପଶୁପକ୍ଷୀଙ୍କୁ ବଳିଦିଆଯାଏ । ରାଜରାସ୍ତା ରକ୍ତରଞ୍ଜିତ ହୋଇଥାଏ ।

ଏହାଛଡା ଶକ୍ତିପୀଠମାନଙ୍କରେ ପଶୁବଳି ପ୍ରଥା ଏହି ପାର୍ବଣର ଗୋଟିଏ ନିନ୍ଦନୀୟ ପ୍ରସଙ୍ଗ । ମନ୍ତ୍ରତନ୍ତ୍ରର ଭୁଲପ୍ରୟୋଗ ହେତୁ ହେଉ ଅଥବା ଅଜ୍ଞାନତା ବଶତଃ ହେଉ ଏ ପ୍ରଥା ବହୁ ସ୍ଥାନରେ ଅଦ୍ୟାବଧି ପ୍ରଚଳିତ । ମଣିଷ ମନରେ ଥିବା ପଶୁ ପ୍ରବୃତ୍ତିକୁ ବଳିଦେବା ପାଇଁ ଶାସ୍ତ୍ରଜ୍ଞମାନେ ନିର୍ଦ୍ଦେଶ ଦେଇଛନ୍ତି ପଶୁମାନଙ୍କୁ ନୁହେଁ । ମାଆ କେବେ ସନ୍ତାନର ବଳି ଚାହେଁ ନାହିଁ ବରଂ ସନ୍ତାନର ମଙ୍ଗଳ ପାଇଁ ସେ ଆତ୍ମବଳି ଦେଇଥାଏ । ଏହି ଭଳି କେତେକ ବ୍ୟତିକ୍ରମ ସତ୍ତ୍ୱେ ଦଶହରା ପର୍ବ ସମାଜରେ ଏକ ସକରାତ୍ମକ ପ୍ରଭାବ ସୃଷ୍ଟି କରିଥାଏ । ଏ ସମୟରେ ଯେପରି ମାତୃକୃପା ଧରଣୀ ବକ୍ଷରେ ବର୍ଷି ଦେଇଯାଉଛି ଓ ଅଗଣିତ ଭକ୍ତ ଭାବ ବିହ୍ୱଳ ହୋଇ ତାହା ଗ୍ରହଣ କରୁଛନ୍ତି ଏମିତି ଗୋଟାଏ ଭାବ ସର୍ବତ୍ର ବିଦ୍ୟମାନ ଥାଏ । ସେହି କୃପା ଆଗାମୀ ଗୋଟାଏ ବର୍ଷ ପାଇଁ ନୂତନ ଉତ୍ସାହ ଉଦ୍ଦୀପନା ଓ ନୂତନ ପ୍ରାଣ ପ୍ରବାହରେ ଭକ୍ତମାନଙ୍କୁ ଆଚ୍ଛନ୍ନ କରି ରଖେ । ଗଭୀର ଆତ୍ମବିଶ୍ୱାସ ଶକ୍ତିଶାଳୀ ହୋଇ ସେମାନଙ୍କ ଜୀବନପ୍ରାଚୁର୍ଯ୍ୟମୟ ଓ ଋଦ୍ଧିମନ୍ତ ହୁଏ । ଏହାହିଁ ହେଉଛି ଦଶହରା ପୂଜାର ସବୁଠାରୁ ବଡ ବିଶେଷତ୍ୱ ।



# ଅର୍ଦ୍ଧନାରୀଶ୍ୱର

ବିଳାସ ବ୍ୟସନ ଠାରୁ ସଂପୂର୍ଣ୍ଣ ଦୂରରେ, ବୈରାଗ୍ୟ ଚେତନାରେ ବୁଡ଼ି ରହିଥିବା ଭସ୍ମବିଲୋପିତ ଶିବ କିନ୍ତୁ ମହା ସଂସାରୀ। ପତ୍ନୀ ପୁତ୍ର ଓ ପଶୁପକ୍ଷୀ ସମ୍ବଳିତ ପରସ୍ପର ବିରୋଧୀ ଚରିତ୍ର ଗୁଡ଼ିକୁ ନେଇ ତାଙ୍କର ସଂସାର। ସିଂହ, ଷଣ୍ଢ, ମୟୂର, ସାପ, ମୂଷା ଏମାନଙ୍କୁ ନେଇ ଗୋଟିଏ ପରିବାରରେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ କରିଥା'ନ୍ତି। ପୁଣି ହାତୀମୁଣ୍ଡ ଓ ଲମ୍ବୋଦର ଥିବା ଗଣେଶ ଓ କାର୍ତ୍ତିକେୟଙ୍କ ପରି ଦିବ୍ୟ ସୁନ୍ଦର ପୁତ୍ର। ଗୋଟିଏ ପୁତ୍ରର ମୂଷିକ ବାହନ, କେବଳ କୋଠରୀ ଭିତରେ ବୁଲିବାର ସାମାର୍ଥ୍ୟ ରଖିଥିବାବେଳେ ଆଉ ଗୋଟିଏ ପୁଅ ମୟୂର ବାହନ ଉପରେ ନିମିଷକରେ ସାରା ବିଶ୍ୱ ପରିଭ୍ରମଣ କରିବାର ସାମର୍ଥ୍ୟ ରଖିଛନ୍ତି। ସେ ଦେବତାମାନଙ୍କର ସେନାପତି। ରୂପରେ ସବୁ ଦେବତାଙ୍କଠାରୁ ସୁନ୍ଦର। ଏଇଭଳି ପରିବାରଟିରେ ଥାଇ ଶିବ ବେଳେବେଳେ ଅନେକ ଅପ୍ରୀତିକର ପରିସ୍ଥିତିର ସମ୍ମୁଖିନ ହୁଅନ୍ତି। ପୁଣି କେତେବେଳେ କାହାପାଖରେ ଆତ୍ମସମର୍ପଣ କରନ୍ତି ତ ଆଉ କେତେବେଳେ କାହାକୁ କାହାସହ ସାଲିସ୍ କରନ୍ତି। ଅତ୍ୟନ୍ତ ଚତୁରତାର ସହ ତାଙ୍କୁ ପରିବାର ଲୋକଙ୍କୁ ପରିଚାଳନା କରିବାକୁ ହୋଇଥାଏ।

ପାର୍ବତୀ ଓ ଗଙ୍ଗା ତାଙ୍କର ଦୁଇଟି ସ୍ତ୍ରୀଙ୍କୁ ଏପରି ତାଙ୍କ ସଂସାର ଭିତରେ ସେ ସ୍ଥାନ ଦେଇଥା'ନ୍ତି ଯେ କେହି କାହାର ଟେର ପାଆନ୍ତି ନାହିଁ। ଦୁହିଁଙ୍କ ଭିତରେ ସପତ୍ନୀ ବିବାଦ ମଧ୍ୟ କେହି କେବେ ଦେଖି ନାହାନ୍ତି। ଗଙ୍ଗାକୁ ଲୁଚେଇ ରଖିଥାଆନ୍ତି ଜଟାଭିତରେ ତ ପାର୍ବତୀଙ୍କ ପ୍ରଶ୍ନର ଉତ୍ତର ଦେଇ ନପାରି ଅଙ୍ଗୀଭୂତ କରିଦେଇଥା'ନ୍ତି ନିଜ ଭିତରେ। ଏତେ ଜଞ୍ଜାଳ ଭିତରେ ବି ସେ ଥା'ନ୍ତି ସ୍ଥିତ ପ୍ରଜ୍ଞ। ଯୋଗନିଦ୍ରାରେ।

ଶିବ ବୈରାଗୀ । କୌଣସି ମାୟା ମୋହ ତାଙ୍କୁ ଆକୃଷ୍ଟ କରିପାରେ ନାହିଁ । ସେଥିପାଇଁ ସେ ଅଧିକାଂଶ ସମୟ ଶ୍ମଶାନରେ କାଟିଥା'ନ୍ତି । ଅପରପକ୍ଷେ ପାର୍ବତୀଙ୍କୁ ସେ ଯେପରି ନିଜ ଭିତରେ ସମାହିତ କରି ରଖିଥା'ନ୍ତି ବ୍ରହ୍ମା କିମ୍ବା ବିଷ୍ଣୁ ସେମିତି ରଖି ନ ଥା'ନ୍ତି । ବ୍ରହ୍ମା ଓ ବିଷ୍ଣୁଙ୍କର କୌଣସି ସ୍ଥାନରେ ଅର୍ଦ୍ଧାଙ୍ଗ ନାରୀ ଓ ଅର୍ଦ୍ଧାଙ୍ଗ ପୁରୁଷ ହୋଇ ନାହାନ୍ତି । ସେମାନେ ସ୍ୱତନ୍ତ୍ର ହୋଇ ରହିଛନ୍ତି । ଶିବଙ୍କର ଏହି ଅର୍ଦ୍ଧନାରୀଶ୍ୱର ମୂର୍ତ୍ତି ମୂଳରେ ଭାରତର ବିଭିନ୍ନ ଅଞ୍ଚଳରେ ଅନେକ କାହାଣୀ କିମ୍ବଦନ୍ତୀ ରହିଛି । ସୃଷ୍ଟି ଆରମ୍ଭର କଥା । ବ୍ରହ୍ମା ବିଶ୍ୱବ୍ରହ୍ମାଣ୍ଡ ସୃଷ୍ଟି କରି ସାରିବା ପରେ ବହୁତ ଏକୁଟିଆ ଅନୁଭବ କଲେ, ତାଙ୍କ ପାଖରେ କେହି ନଥିଲେ । ସେ ତାଙ୍କ ମାନସ ସନ୍ତାନମାନଙ୍କୁ କହିଲେ ସେମାନେ ନିଜ ନିଜ ଦେହରୁ ନୂଆ ମଣିଷ ଜନ୍ମଦେବାପାଇଁ । ସେମାନେ କିନ୍ତୁ ରାଜି ହେଲେ ନାହିଁ । ବ୍ରହ୍ମା ଚକ୍ଷୁ ବନ୍ଦ କରି ଧ୍ୟାନ କଲେ । କିଛି ସମୟ ପରେ ଆଖି ଖୋଲିଲା ବେଳକୁ ଦେଖିଲେ ସମ୍ମୁଖରେ ଅର୍ଦ୍ଧନାରୀଶ୍ୱର ରୂପ । ସେହି ଶରୀରର ବାମପାର୍ଶ୍ୱ ନାରୀ ଅଂଶରୁ କିଛି ନାରୀ ସୃଷ୍ଟି କରି ସେ ତାଙ୍କ ପୁତ୍ରମାନଙ୍କୁ ଦେଲେ । ଏହାପରେ ସଂସାରରେ ମନୁଷ୍ୟ ସୃଷ୍ଟି ହେଲା ।

ଆଉ ଗୋଟାଏ ଚମତ୍କାର ଉପାଖ୍ୟାନ ରହିଛି । ସଗରରାଜାଙ୍କ ହଜାରେ ପୁତ୍ର କପିଳମୁନିଙ୍କ ଅଭିଶାପରେ ପାଉଁଶ ହୋଇ ଯାଇଥିଲେ । ସେମାନଙ୍କ ମୋକ୍ଷ ପାଇଁ ଭଗୀରଥ ସ୍ୱର୍ଗରୁ ଆଣିଥିଲେ ଗଙ୍ଗାଙ୍କୁ । ସେଥିପାଇଁ ତାଙ୍କୁ ବାରବର୍ଷ ତପସ୍ୟା କରିବାକୁ ପଡିଥିଲା । ସ୍ୱର୍ଗରେ ଶାନ୍ତିରେ ଥିବା ଗଙ୍ଗା, ପୃଥିବୀ ବକ୍ଷକୁ ଆସିବାକୁ ଆଦୌ ରାଜି ନଥିଲେ । କିନ୍ତୁ ଶେଷରେ ବ୍ରହ୍ମା ଓ ବିଷ୍ଣୁଙ୍କ ଉପରେ ତାଙ୍କୁ ପୃଥିବୀକୁ ଆସିବାକୁ ପଡିଲା । ସେଥିପାଇଁ ସେ ଗୋଟାଏ ସର୍ତ୍ତ ରଖିଲେ ଯେ ସେ ପୃଥିବୀକୁ ଲମ୍ଫପ୍ରଦାନ କଲେ ପୃଥିବୀ ରସାତଳ ଗାମୀ ହୋଇଯିବ । ତେଣୁ ତାଙ୍କୁ ଧାରଣ କରିବାପାଇଁ ଶିବଙ୍କୁ ଆହ୍ୱାନ କରାଯାଉ । ଭଗିରଥ ତପସ୍ୟା କରି ଶିବଙ୍କୁ ସନ୍ତୁଷ୍ଟ କଲେ । ଶିବ ଗଙ୍ଗାଙ୍କୁ ତାଙ୍କ ମସ୍ତିଷ୍କରେ ଲମ୍ଫପ୍ରଦାନ କରିବାପାଇଁ ଅନୁମତି ଦେଲେ । ଗଙ୍ଗା ଯେତେବେଳେ ତାଙ୍କ ମସ୍ତିକ ଉପରେ ଲମ୍ଫପ୍ରଦାନ କଲେ, ପ୍ରଳୟ ଆଶଙ୍କାରେ ଶିବ ତାଙ୍କୁ ଆବଦ୍ଧ କରିନେଲେ ଜଟାରେ । ଆବଦ୍ଧ ସିନା କରିଦେଲେ କିନ୍ତୁ ତାହା ପ୍ରଖର ଜଳସ୍ରୋତରୁ ଗୋଟିଏ କ୍ଷୁଦ୍ର ଧାରଟିଏ ବହିବାକୁ ଲାଗିଲା । ତାହା ପାର୍ବତୀଙ୍କ

ଦୃଷ୍ଟିରେ ପଡିବାରୁ ସେ ତାଙ୍କ ଜଟା ଅନୁସନ୍ଧାନ କଲେ। ସେଠାରେ ଗୋଟିଏ ନାରୀକୁ ଦେଖି ପାର୍ବତୀଙ୍କୁ ଆଉ ସମ୍ଭାଳେ କିଏ? ଶିବ ଜଟା ଭିତରେ ରଖିଛନ୍ତି ଆଉ ଗୋଟାଏ ସ୍ତ୍ରୀ? କମ୍ ସାହସ ଶିବଙ୍କର। ସେ କ୍ରୋଧରେ ଅଜ୍ଞାନ ହୋଇଗଲେ। ତାଙ୍କୁ ଶାନ୍ତ କରିବାପାଇଁ ଶିବ ବହୁତ ଚେଷ୍ଟା କଲେ, ପାରିଲେ ନାହିଁ। ଶେଷରେ ତାଙ୍କୁ ନିଜ ବାଁ ହାତରେ ଏତେ ଯୋର୍‌ରେ ଚପି ଧରିଲେ ଯେ ତାଙ୍କ ଶରୀରରେ ଚପି ହୋଇ ପାର୍ବତୀ ବାମ ଅଙ୍ଗରେ ରହିଗଲେ।

ତୃତୀୟ ଗଳ୍ପଟି ସବୁଠାରୁ ବଳି ଚମକ ପ୍ରଦ। ଶିବ ଭକ୍ତ ଭୃଙ୍ଗୀ ଥରେ ଶିବଙ୍କ ଚାରିପଟେ ପ୍ରଦକ୍ଷିଣ କରିବାକୁ ଚାହିଁଥିଲେ। କିନ୍ତୁ ପାର୍ବତୀ କହିଲେ, ଶିବ ଓ ମୁଁ ଏକ ଓ ଅଭିନ୍ନ। ତେଣୁ ତୁ ଯଦି ପ୍ରଦିକ୍ଷଣ କରିବାକୁ ଚାହୁଁ ତ ଆମ ଦୁହିଁଙ୍କୁ ପ୍ରଦକ୍ଷିଣ କର। କିନ୍ତୁ ଭୃଙ୍ଗୀ ଦିଦ୍ କରିବସିଲା ଯେ ସେ କେବଳ ଶିବଙ୍କୁ ହିଁ ପ୍ରଦିକ୍ଷଣ କରିବ। ପାର୍ବତୀ ରାଗିଗଲେ। ସେ ଭୃଙ୍ଗୀଙ୍କ ଉଦ୍ଦେଶ୍ୟ ବିଫଳ କରିବାପାଇଁ ସେ ଯାଇ ଶିବଙ୍କ ବାମ କୋଳରେ ବସିପଡିଲେ। ଫଳରେ ଭୃଙ୍ଗୀ ଦୁହିଁଙ୍କ ମଝିରେ ଯିବାପାଇଁ ମଧୁ ମକ୍ଷିକା ରୂପଟିଏ ନେଲା ଓ ଦୁହିଁଙ୍କ ମଝିରେ ଗଳି ସେପଟକୁ ଯିବା ପାଇଁ ଚାହିଁଲା। ପାର୍ବତୀଙ୍କ ଜିଦ୍ ଆହୁରି ବଢ଼ିଗଲା, ସେ ଭୃଙ୍ଗୀକୁ ରାସ୍ତା ନଦେବା ପାଇଁ ଶିବଙ୍କ ଶରୀରରେ ମିଶିଯାଇ ତାଙ୍କର ଅଧାଅଙ୍ଗ ହୋଇଗଲେ। ତଥାପି ଭୃଙ୍ଗୀ ଛାଡିଲା ନାହିଁ। ସେ ସେହି ଅର୍ଦ୍ଧନାରୀଶ୍ୱର ମଝିରେ କଣା କରି ସେପଟକୁ ଚାଲିଗଲା। ପାର୍ବତୀଙ୍କ କ୍ରୋଧ ପଞ୍ଚମକୁ ଉଠିଗଲା। ସେ ତତ୍‌କ୍ଷଣାତ୍ ତାକୁ ଅଭିଶାପ ଦେଲେ ତୋ ଶରୀରର ଯେଉଁ ଅଂଶ ମୋ ଅଙ୍ଗ ସ୍ପର୍ଶ କରିଛି ତାହା ନଷ୍ଟ ହୋଇଯାଉ। ପାର୍ବତୀଙ୍କ ଅଭିଶାପରେ ଭୃଙ୍ଗୀ ଶରୀରରୁ ସଙ୍ଗେ ସଙ୍ଗେ ରକ୍ତ ମାଂସ ସବୁ ଝଡି ପଡିଲା ଓ ସେ କଙ୍କାଳ ଗଦାଟାଏ ହୋଇଗଲା। ଶେଷରେ ଭୃଙ୍ଗୀ ନିଜ ଭୁଲ ସ୍ୱୀକାର କରି ପାର୍ବତୀଙ୍କୁ ସ୍ତୁତି କଲା। ପାର୍ବତୀ ସନ୍ତୁଷ୍ଟ ହୋଇ ତାକୁ ଆଉ ଗୋଟିଏ ଗୋଡ଼ ଦେଲେ। ଫଳରେ ସେ ଠିଆ ହେବାପାଇଁ ସମର୍ଥ ହୋଇପାରିଲା। ସେଇ ଦିନଠୁଁ ଭୃଙ୍ଗୀର ତିନୋଟି ପାଦ।



# ବହୁ ବିଖଣ୍ଡିତ ବୌଦ୍ଧ ଦର୍ଶନ

କୌଣସି ଧର୍ମ ଅଥବା ବିଶ୍ୱାସର ଏକ ସର୍ବକାଳୀନ ଓ ସର୍ବଜନୀନ ସିଦ୍ଧାନ୍ତ ସମ୍ଭବ ନୁହେଁ। କାଳର ଶାଣିତ ଦନ୍ତାଘାତ ସବୁ ସିଦ୍ଧାନ୍ତକୁ ବହୁ ବିଖଣ୍ଡିତ ଅଥବା ଅସିଦ୍ଧ ପ୍ରମାଣିତ କରିବା ଅତି ସ୍ୱାଭାବିକ ପ୍ରକ୍ରିୟା। ଖୁବ୍ କମ୍ ସମୟ ମଧ୍ୟରେ ଏମିତି ଗୋଟାଏ ଗୋଟାଏ ବିଶ୍ୱାସ ବିଶ୍ୱବ୍ୟାପୀ ହେବା ପୁଣି ନିର୍ଦ୍ଦିଷ୍ଟ କାଳଖଣ୍ଡ ମଧ୍ୟରେ ବହୁଧା ବିଭକ୍ତ ହେବାର ଅନେକ ଦୃଷ୍ଟାନ୍ତ ରହିଛି। ଏ ପରିପ୍ରେକ୍ଷୀରେ ବୌଦ୍ଧ ଧର୍ମ ଓ ଦର୍ଶନ ବିଚାର୍ଯ୍ୟ।

ଗୋଟିଏ ଆଞ୍ଚଳିକ ବିଶ୍ୱାସ ବଳିଷ୍ଠ ଧର୍ମଦର୍ଶନରେ ପରିଣତ ହୋଇ ବୌଦ୍ଧ ଧର୍ମ ଦର୍ଶନ ବିଶ୍ୱ ପରିକ୍ରମା କଲାବେଳକୁ ଏହା ବହୁଳାଂଶରେ ପ୍ରକ୍ଷିପ୍ତ ଓ ବିକ୍ଷିପ୍ତ ହୋଇସାରିଥିଲା ଓ ପରେ ପରେ ଏହା ବହୁଧା ବିଭକ୍ତ ହୋଇପଡିଲା। ସବୁଠାରୁ ବିସ୍ମୟଜନକ କଥା ହେଲା ବୁଦ୍ଧଙ୍କ ଜୀବଦ୍ଦଶାରେ ହିଁ ତାଙ୍କ ପ୍ରଚାରିତ ଧର୍ମ ଦର୍ଶନରେ ପରିବର୍ତ୍ତନ କରିବାକୁ ଚେଷ୍ଟା କରାଯାଇଥିଲା। ଅବଶ୍ୟ ତାହା ଫଳବତୀ ହୋଇନଥିଲା। କିନ୍ତୁ ସେହି କାଳରୁ ସଂଘରେ ଯେଉଁ ଅସନ୍ତୋଷ ଓ ବିଦ୍ରୋହର ବୀଜବପନ କରାଯାଇଥିଲା ତାହା ପରେ ପରେ ବୁଦ୍ଧ ଦର୍ଶନକୁ ବିଭିନ୍ନ ସଂପ୍ରଦାୟ ଭୁକ୍ତ କରିଦେଇଥିଲା। ବୁଦ୍ଧଙ୍କ ପ୍ରଚାରିତ ମତବାଦରେ ଏକାଧିକ ବୈଚାରିକ ସିଦ୍ଧାନ୍ତ ଅନୁପ୍ରବେଶର ପ୍ରମୁଖ କାରଣ ହେଲା। ବହୁକାଳ ପର୍ଯ୍ୟନ୍ତ ଏହି ଧର୍ମ ଦର୍ଶନ କେବଳ ଲୋକମୁଖରେ ପ୍ରଚଳିତ ଥିଲା। ଏପରିକି

ବୁଦ୍ଧଦେବଙ୍କ ଅନ୍ତେ ଦୀର୍ଘ ଚାରି ଶହ ବର୍ଷ ପର୍ଯ୍ୟନ୍ତ ଏହି ବିଚାର ଦର୍ଶନର କୌଣସି ଲିପିବଦ୍ଧ ରୂପ ନଥିଲା। ଫଳରେ ଅଚିରେ ଏହା ବହୁ ଗୋଷ୍ଠୀରେ ଅନ୍ତର୍ଭୁକ୍ତ ହୋଇପଡିଥିଲା। ଏମିତି କି ଅଶୋକଙ୍କ ସମୟ ବେଳକୁ ଏହି ଧର୍ମ ଅଠରଟି ଗୋଷ୍ଠୀରେ ପରିଣତ ହୋଇସାରିଥିଲା। ପରିସର ଓ କଳେବରର ସୀମିତତା ହେତୁ ଏଠାରେ କେବଳ ହୀନଯାନ ମହାଯାନ ଓ ତନ୍ତ୍ରଯାନ ଉପରେ ଯତ୍ କିଞ୍ଚିତ୍ ଆଲୋଚନା କରାଯାଉଛି।

ବାଲ୍ୟକାଳରୁ ଗୌତମବୁଦ୍ଧଙ୍କ ପ୍ରତି ଅସହିଷ୍ଣୁ ଥିଲେ ତାଙ୍କ ସଂପର୍କୀୟ ଭାଇ ଦେବଦତ୍ତ। ପରବର୍ତ୍ତୀ ପର୍ଯ୍ୟାୟରେ ବୌଦ୍ଧଧର୍ମ ଗ୍ରହଣ କରି ସଂଘଭୁକ୍ତ ହୋଇ ସୁଦ୍ଧା ସେ ସଂଘରେ ଜଣେ ବିଦ୍ରୋହୀ ଭିକ୍ଷୁ ରୂପେ ସାବ୍ୟସ୍ତ ହୋଇଥିଲେ। ସେହି ଦେବଦତ୍ତ ବୌଦ୍ଧଭିକ୍ଷୁ ମାନଙ୍କର ଆଚରଣ ସଂପର୍କରେ କେତେଗୁଡିଏ ପରିବର୍ତ୍ତନର ପ୍ରସ୍ତାବ ଧରି ବୁଦ୍ଧଙ୍କ ନିକଟରେ ପହଞ୍ଚିଥିଲେ, ଏଥିରେ ଭିକ୍ଷୁମାନେ ଏକାକୀ ରହିବେ, ତିନିଖଣ୍ଡ ବସ୍ତ୍ର ପରିବର୍ତ୍ତେ ଖଣ୍ଡେ ବସ୍ତ୍ର ରଖିବେ, ନିରାମିଷ ଖାଦ୍ୟ ଖାଇବେ ପରି ଆହୁରି କେତେକ ପ୍ରସ୍ତାବ ଥିଲା। କିନ୍ତୁ ବୁଦ୍ଧ ଏହାକୁ ଉତ୍ସାହିତ ନକରିବାରୁ ସେ କେତେଜଣ ଭିକ୍ଷୁଙ୍କୁ ନେଇ ନୂଆଗୋଷ୍ଠୀଟିଏ ଗଠନ କରିଥିଲେ। କିନ୍ତୁ ଏହା ବେଶିଦିନ ତିଷ୍ଠି ନଥିଲା। ମାତ୍ର ବୁଦ୍ଧଦେବଙ୍କ ନିର୍ବାଣପ୍ରାପ୍ତିର ୧୦୦ ବର୍ଷ ପରେ ବଜ୍ଜୀର ଭିକ୍ଷୁମାନେ ବୌଦ୍ଧଧର୍ମର କଠୋର ନୀତିନିୟମ ପାଳନରେ ଅବହେଳା ପ୍ରଦର୍ଶନ କଲେ। ଦ୍ୱିତୀୟ ବୌଦ୍ଧ ମହାସମ୍ମିଳନୀରେ ଏମାନଙ୍କୁ ସମାଲୋଚନା ମଧ୍ୟ କରାଯାଇଥିଲା। ଏମାନଙ୍କୁ ଆଜୀବକ ବୋଲି କୁହାଯାଉଥିଲା। ସଂଖ୍ୟାନ୍ୟୁନ ଥିବାରୁ ଏମାନେ ସଂଘରେ ପ୍ରଭାବ ବିସ୍ତାର କରିପାରିନଥିଲେ। ସଂଘର ପ୍ରଥା ଅନୁସାରେ ଏମାନେ ପ୍ରାୟଶ୍ଚିତ ନକରି ସଂଘରୁ ବାହାରି ଯାଇଥିଲେ ଓ ମହାସଂଘ ନାମରେ ଗୋଷ୍ଠୀ ଗଠନ କରିଥିଲେ। ଏହାହିଁ ହେଉଛି ବୌଦ୍ଧ ସଂଘ ବିଭାଜନର ପ୍ରାଥମିକ ସଫଳ ପ୍ରକ୍ରିୟା। ପରବର୍ତ୍ତୀ କାଳରେ ଏହି ମହାସଂଘ ମହାଯାନରେ ପରିଣତ ହୋଇଥିଲା। ମହାସଂଘ ଗଠନ ପରେ ମୂଳ ସଂଘରେ ଯେଉଁମାନେ ରହିଲେ ସେମାନଙ୍କୁ କୁହାଗଲା ସ୍ଥବୀରବାଦୀ। ପରବର୍ତ୍ତୀ ପର୍ଯ୍ୟାୟରେ ଏମାନେ ହୀନଯାନରେ ନାମିତ ହୋଇଥିଲେ।

ହୀନଯାନର ଅର୍ଥ ନୀଚ ଅଥବା ଘୃଣ୍ୟ ଅସ୍ପୃଶ୍ୟ କିମ୍ବା ହେୟ ନୁହଁନ୍ତି।

ଏହାର ଅର୍ଥ କ୍ଷୁଦ୍ର। ଅର୍ଥାତ୍ ଏହି ଯାନରେ ଅଳ୍ପ ସଂଖ୍ୟକ ଲୋକ ପାରିହୋଇପାରିବେ। ହୀନଯାନ ଓ ସ୍ଥବୀର ବା ଥେରବାଦ ମଧ୍ୟରେ ବେଶି କିଛି ପାର୍ଥକ୍ୟ ନାହିଁ। ସ୍ଥବିର ବା ଥେର ଅର୍ଥ ବୟସ୍କ ଓ ବୃଦ୍ଧ। ଏମାନେ ପ୍ରାୟତଃ ମୌଳିକତାବାଦୀ। ପରିବର୍ତ୍ତନକୁ ଏମାନେ ଉତ୍ସାହିତ କରନ୍ତି ନାହିଁ। ଏମାନେ ବୁଦ୍ଧଙ୍କ ମୁଖନିସୃତ ବାଣୀ ଭିନ୍ନ ଅନ୍ୟ ବାଣୀ ଗ୍ରହଣ କରନ୍ତି ନାହିଁ। ହୀନଯାନ ଓ ମହାଯାନମାନେ ଉଭୟ ଆତ୍ମା ଓ ପରମାତ୍ମାରେ ବିଶ୍ୱାସ କରନ୍ତି ନାହିଁ। ଯେହେତୁ ବୌଦ୍ଧଧର୍ମର ମୂଳତତ୍ତ୍ୱ ଏହି ବିଚାର ଧାରା ଉପରେ ଆଧାରିତ ଉଭୟ ଗୋଷ୍ଠୀଙ୍କ ମଧ୍ୟରେ ଏହି ସାମ୍ୟ ପରିଲକ୍ଷିତ ହେବା ସ୍ୱାଭାବିକ। ବୌଦ୍ଧଧର୍ମରେ ବ୍ୟକ୍ତିକୁ କୁହାଯାଇଥାଏ ପଞ୍ଚସ୍କନ୍ଦ। ପଞ୍ଚ ଇନ୍ଦ୍ରିୟର ଆଧାରରେ ମଣିଷ ପରିପୁଷ୍ଟ। ପଞ୍ଚ ଇନ୍ଦ୍ରିୟ ନଶ୍ୱର ଓ କ୍ଷୟଶୀଳ ହୋଇଥିବାରୁ ଶାଶ୍ୱତ ଆତ୍ମା ଏଠାରେ କଦାପି ରହିପାରିବ ନାହିଁ। ଏହା ହେଉଛି ହୀନଯାନୀ ମାନଙ୍କର ମତ। ସେହିପରି ମହାଯାନୀମାନେ ପୁଦ୍‌ଗଳ (ବ୍ୟକ୍ତି) ନୈରାତ୍ମ୍ୟ ଓ ଧର୍ମ ନୈରାତ୍ମ୍ୟ ବୋଲି କହନ୍ତି, ଏମାନେ ମଧ୍ୟ ଆତ୍ମା ଓ ପରମାତ୍ମା ଉପରେ ବିଶେଷ ତର୍କ ଆଲୋଚନା କରନ୍ତି ନାହିଁ।

ଥେରବାଦ ବା ହୀନଯାନୀମାନଙ୍କର ଆଦର୍ଶ ହେଉଛନ୍ତି ଅର୍ହତ ଓ ମହାଯାନୀଙ୍କର ଆଦର୍ଶ ହେଉଛନ୍ତି ବୋଧିସତ୍ତ୍ୱ। ଅର୍ହତଙ୍କର କୌଣସି ତୃଷ୍ଣା ନଥାଏ। ସେମାନେ ସବୁତକ ତୃଷ୍ଣାର ବିନାଶ କରିଥା'ନ୍ତି। କିନ୍ତୁ ମହାଯାନୀମାନଙ୍କର ଆଦର୍ଶ ବୋଧିସତ୍ତ୍ୱମାନଙ୍କର ସବୁ କାମନାର ବିନାଶ ହୋଇଥାଏ ସତ୍ୟ କିନ୍ତୁ ଗୋଟିଏ ତୃଷ୍ଣାକୁ ସେମାନେ ଉଜ୍ଜୀବୀତ କରି ରଖିଥାନ୍ତି। ଅର୍ହତ ନିର୍ବାଣ କାମନା କରିଥାନ୍ତି କିନ୍ତୁ ବୋଧସତ୍ତ୍ୱ ବାରମ୍ବାର ପୃଥିବୀରେ ଜନ୍ମଗ୍ରହଣ କରି କେବଳ ମଣିଷ ନୁହଁନ୍ତି ଇତର ପ୍ରାଣୀମାନଙ୍କର ସୁଦ୍ଧା ଦୁଃଖଯନ୍ତ୍ରଣାକୁ ନିଜ ଜୀବନ ବିନିମୟରେ ଦୂରୀଭୂତ କରିବାର ବ୍ରତଧାରଣ କରିଥାନ୍ତି।

ସବୁଠାରୁ ମହତ୍ତ୍ୱପୂର୍ଣ୍ଣ କଥା ହେଲା ହୀନଯାନୀ ଓ ମହାଯାନୀଙ୍କ ମଧ୍ୟରେ କୌଣସି ହିଂସା, ବାଦ ଅସୂୟା କିମ୍ବା ଅସହିଷ୍ଣୁତା ନଥିଲା। ଦୁଇଟି ମତବାଦ ସମାନ୍ତରାଳ ଭାବରେ ଶତାବ୍ଦୀ ଶତାବ୍ଦୀଧରି ବୁଦ୍ଧଙ୍କ ମତ ଓ ବାଣୀ ପ୍ରଚାର କରିଚାଲିଥିଲା। ବ୍ୟକ୍ତି ନିଜର ରୁଚି ଅନୁସାରେ ସ୍ଥବୀରଦାବୀ ଭାବଧାରାର

ଅନ୍ତର୍ଭୁକ୍ତ ହେଉଥିଲା ଅଥବା ଅପେକ୍ଷାକୃତ ସହଜମାର୍ଗୀ ମହାଯାନରେ ଆସ୍ଥାସ୍ଥାପନ କରୁଥିଲା ।

ହୀନଯାନୀମାନେ ବୁଦ୍ଧଙ୍କ ମୌଳିକ ବାଣୀରେ ଆସ୍ଥା ସ୍ଥାପନ କରନ୍ତି । ପୂଜାର୍ଚ୍ଚନା ଅପେକ୍ଷା ସେମାନେ ଆଚରଣ ସିଦ୍ଧ ହୋଇ ବଞ୍ଚିଥା'ନ୍ତି । ବୁଦ୍ଧ ଯେଉଁ ଆଚରଣ ଉପରେ ଗୁରୁତ୍ୱ ଦେଇଥିଲେ ସେଗୁଡିକୁ ଆର୍ଯ୍ୟ ଅଷ୍ଟାଙ୍ଗିକ ମାର୍ଗ ବୋଲି କୁହାଯାଉଥିଲା । ସେଗୁଡିକ ହେଉଛି -

(୧) ସମ୍ୟକ୍ ଦୃଷ୍ଟି (Right Understanding)

(୨) ସମ୍ୟକ୍ ସଂକଳ୍ପ (Right Resolution)

(୩) ସମ୍ୟକ୍ ବାକ୍ (Right Speech)

(୪) ସମ୍ୟକ୍ କର୍ମ (Right Action)

(୫) ସମ୍ୟକ୍ ଆଜୀବ (Right Line hood)

(୬) ସମ୍ୟକ୍ ବ୍ୟାୟାମ (Right Effort)

(୭) ସମ୍ୟକ୍ ସ୍ମୃତି (Right Recollection)

(୮) ସମ୍ୟକ୍ ସମାଧି (Right Meditation)

ବୁଦ୍ଧ କହୁଥିଲେ ଜଣେ ବର୍ଷ ବର୍ଷ ଧରି ନିରୋଗ ରହି ଶାରୀରିକ ସ୍ୱାସ୍ଥ୍ୟ ଉପଭୋଗ କରିପାରେ ମାତ୍ର ଘଡ଼ିଏ କାଳ ଦ୍ୱନ୍ଦ୍ୱ ଉତ୍କଣ୍ଠା ଉଦ୍‌ବେଗରୁ ମୁକ୍ତରହି ମାନସିକ ସ୍ୱାସ୍ଥ୍ୟ ଉପଭୋଗ କରିପାରେ ନାହିଁ । ଏଥିପାଇଁ ଅଷ୍ଟାଙ୍ଗିକମାର୍ଗ ମଣିଷକୁ ଆଚରଣ ସିଦ୍ଧ କରେ ଓ ମାନସିକ ଉଦ୍‌ବେଗରୁ ମୁକ୍ତ ରଖେ ।

ମହାଯାନୀମାନେ ଧ୍ୟାନ ଉପରେ ଗୁରୁତ୍ୱ ଦେଇଥା'ନ୍ତି । ଧ୍ୟାନରେ ଷଡପାରମିତାଙ୍କୁ ସନ୍ତୁଷ୍ଟ କରିବାର ନିର୍ଦ୍ଦେଶ ରହିଛି । ଏହି ଷଡପାରମିତା ହେଉଛନ୍ତି ଦାନ,ଶୀଳ, କ୍ଷାନ୍ତି, ବୀର୍ଯ୍ୟ, ଧ୍ୟାନ ଓ ପ୍ରଜ୍ଞା । ପ୍ରଜ୍ଞା ହେଉଛନ୍ତି ଶ୍ରେଷ୍ଠ ପାରମିତା । ଏହି ଦେବୀମାନଙ୍କ ଠାରେ ଲୟରଖି ଜଣେ ଭିକ୍ଷୁ ବୋଧିସତ୍ତ୍ୱ ହେବାର ଲକ୍ଷ୍ୟନେଇ ଜୀବନ ପଥରେ ଅଗ୍ରସର ହୋଇଥା'ନ୍ତି ।

ପାରମିତା ଶବ୍ଦର ଅର୍ଥ ହେଉଛି ଉତ୍କର୍ଷ । (Perfection) ଜୀବନକୁ ଉତ୍କୃଷ୍ଟ ମାର୍ଗରେ ବଞ୍ଚିବାପାଇଁ ଉତ୍କର୍ଷ ଦେବୀଙ୍କ ଆରାଧନା ଓ ଆଶୀର୍ବାଦ ଏମାନଙ୍କର ଲକ୍ଷ୍ୟ ଥିଲା ।

ହୀନଯାନୀମାନେ ଜ୍ଞାନ ଓ କର୍ମରେ ବିଶ୍ୱାସ କରୁଥିବାବେଳେ ମହାଯାନୀମାନେ ଭକ୍ତିଯୋଗରେ ବିଶ୍ୱାସ କରୁଥିଲେ। ଠିକ୍ ଯେମିତି ଆମ ଉତ୍କଳୀୟ ବୈଷ୍ଣବ ଧର୍ମ ଓ ଚୈତନ୍ୟଙ୍କ ପ୍ରଚାରିତ ବୈଷ୍ଣବ ଧର୍ମ। ଦୁହିଁଙ୍କର ଆରାଧ୍ୟ ଦେବତା ହେଉଛନ୍ତି ବିଷ୍ଣୁ। କିନ୍ତୁ ଗୋଟିଏ ଗୋଷ୍ଠୀ ଜ୍ଞାନମିଶ୍ରା ତ ଅନ୍ୟଟି ପ୍ରେମମିଶ୍ରା ଭକ୍ତି। ପ୍ରେମମିଶ୍ରା ଭକ୍ତି ଅପେକ୍ଷାକୃତ ସହଜ ଓ ବହୁ ଲୋକଙ୍କୁ ଆକର୍ଷିତ କରୁଥିବା ବେଳେ ଜ୍ଞାନ ମିଶ୍ରା ଭକ୍ତି କେବଳ ବୌଦ୍ଧିକ ମଣିଷମାନଙ୍କ ମଧ୍ୟରେ ସୀମିତ ରହିଥିଲା।

ବୌଦ୍ଧଧର୍ମର ହୀନଯାନ ଓ ମହାଯାନର ବିକାଶ ମଧ୍ୟ ସେହିପରି ହୋଇଥିଲା। ସିଂହଳ, ଶ୍ୟାମ ଓ କାମ୍ବୋଡିଆ ଆଦି ରାଜ୍ୟମାନଙ୍କରେ ହୀନଯାନ ଲୋକପ୍ରିୟତା ହାସଲ କରିଥିବାବେଳେ ଚୀନ୍ ଜାପାନ୍ କୋରିଆ ଓ ମଙ୍ଗୋଲିଆ ଆଦି ରାଜ୍ୟମାନଙ୍କରେ ମହାଯାନର ପ୍ରାଧାନ୍ୟ ପରିଲକ୍ଷିତ ହୋଇଥିଲା। ବୌଦ୍ଧଧର୍ମ ବିଶ୍ୱ ପରିକ୍ରମା କଲାବେଳେ ହୀନଯାନ ତାର ଯଥାସମ୍ଭବ ମୌଳିକତା ରକ୍ଷା କରିଥିବା ବେଳେ ମହାଯାନ ସେ ଦେଶର ଧର୍ମ ସଂସ୍କୃତି ବିଚାରଧାରା ଓ ପରଂପରା ଅନୁଯାୟୀ ପରିବର୍ତ୍ତିତ ହେବାରେ ଲାଗିଥିଲା।

'ଜାତକ କଥା' ବିଶ୍ୱସାହିତ୍ୟକୁ ମହାଯାନପନ୍ଥୀମାନଙ୍କର ଏକ ଅମୂଲ୍ୟ ଅବଦାନ। ଯେଉ ବୁଦ୍ଧଦେବ ବ୍ୟକ୍ତିର ପୂର୍ବଜନ୍ମ ପରଜନ୍ମ ସଂପର୍କରେ ସଂପୂର୍ଣ୍ଣ ନୀରବଥିଲେ, ତାଙ୍କର ଭିନ୍ନ ଭିନ୍ନ ଜନ୍ମ ଓ ଜୀବନ କାହାଣୀକୁ ନେଇ ଅତି ସୁନ୍ଦର ଚମତ୍କାର ଶିକ୍ଷଣୀୟ କାହାଣୀ ସବୁ ଜାତକ କଥାରେ ଭରପୂର ହୋଇ ରହିଛି। ପ୍ରତିଜନ୍ମରେ ସେ ପଶୁପକ୍ଷୀ ପାଖରୁ ମଣିଷ ଜନ୍ମ ପର୍ଯ୍ୟନ୍ତ ବିଭିନ୍ନ ଜନ୍ମନେଇ ସେମାନଙ୍କ ଦୁଃଖ ଯନ୍ତ୍ରଣା ଦୂରକରିବା ପାଇଁ ଜୀବନ ଉତ୍ସର୍ଗ କରିଥିଲେ।

ହୀନଯାନୀମାନେ ଅପେକ୍ଷାକୃତ ଶୁଷ୍କନିରସ। କଠୋରଶୀଳତା ସେମାନଙ୍କ ଦର୍ଶନର ମୂଳାଧାର ହୋଇଥିବାରୁ ଧୀରେ ଧୀରେ ସେମାନେ ସଂଖ୍ୟା ଲଘୁ ମଧ୍ୟ ହୋଇଗଲେ ଓ ମହାଯାନ କ୍ରମଶଃ ବ୍ୟାପକ ହୋଇଗଲା। ବୁଦ୍ଧଙ୍କୁ ନେଇ ବିଭିନ୍ନ କଳ୍ପନାଜଳ୍ପନାକୁ ମହାଯାନୀମାନେ ଉତ୍ସାହିତ କରୁଥିବାରୁ କଳା ସାହିତ୍ୟରେ ବୁଦ୍ଧ ପ୍ରମୁଖ ଭୂମିକା ଗ୍ରହଣ କଲେ। ବୁଦ୍ଧଙ୍କର ମୂର୍ତ୍ତିମାନ ଗଢ଼ା ହେଲା। ଜାତକ କଥାର ଗଳ୍ପ ସମୂହକୁ ଆଧାର କରି ସୁନ୍ଦର ଚିତ୍ରକଳା

ଭାସ୍କର୍ଯ୍ୟ ସୃଷ୍ଟି ହେଲା। ମଞ୍ଚମାନଙ୍କରେ ନୃତ୍ୟ ନାଟକ ପରିବେଷିତ ହେଲା। ଅସରନ୍ତି କାହାଣୀ କିମ୍ବଦନ୍ତୀ ପକ୍ଷମେଲିଲେ ଓ ସେଗୁଡିକୁ ନେଇ କଳାଜଗତ ସମୃଦ୍ଧ ହେଲା। ଷଷ୍ଠ ଶତାବ୍ଦୀ ପର୍ଯ୍ୟନ୍ତ ଭାରତର ଯେଉଁ କଳାସ୍ଥାପତ୍ୟ ବିଶ୍ୱବିଖ୍ୟାତ ହୋଇଥିଲା ସେସବୁ ବୌଦ୍ଧକୈନ୍ଦ୍ରିକ ଥିଲା। କେବଳ ଭାରତବର୍ଷରେ ନୁହେଁ ଭାରତ ବାହାରେ ଯେଉଁ ଅଞ୍ଚଳମାନଙ୍କରେ ବୌଦ୍ଧଧର୍ମ ବିସ୍ତାର ଲାଭ କରିଥିଲା ସେଠାରେ ସୁଦ୍ଧା କଳା ସଂସ୍କୃତି ସ୍ଥାପତ୍ୟ ଓ ଭାସ୍କର୍ଯ୍ୟର ନୂତନ ଦିଗନ୍ତ ଉନ୍ମୋଚିତ ହୋଇଥିଲା।

ଅଶୋକଙ୍କ ପର୍ଯ୍ୟନ୍ତ ବୌଦ୍ଧଧର୍ମର କାରୁକାର୍ଯ୍ୟମାନ କାଠ ନିର୍ମିତ ଥିଲା। ସେଗୁଡିକ ପ୍ରାୟତଃ ନଷ୍ଟ ହୋଇଛି। କିନ୍ତୁ ଅଶୋକ ପ୍ରଥମ କରି ପାରସ୍ୟ କଳାକୁ ଅବଲମ୍ବନ କରି ପଥର ଇଟା ସିମେଣ୍ଟ ଓ ମାର୍ବଲରେ ବହୁ ବୌଦ୍ଧ ଶିଳ୍ପକଳା ନିର୍ମାଣ କରାଇଥିଲେ।

ସ୍ତୂପ ସଂସ୍କତି ବୌଦ୍ଧମାନଙ୍କର ବିଶ୍ୱକୁ ଅନ୍ୟତମ ଅବଦାନ। ଗୃହୀ ଶିଷ୍ୟମାନଙ୍କ ପାଇଁ ବୁଦ୍ଧଦେବ ନିର୍ବାଣ ପ୍ରାପ୍ତି ପୂର୍ବରୁ ଏହି ସ୍ତୂପନିର୍ମାଣ ଓ ସେଠାରେ ପୂଜା ଅର୍ଚ୍ଚନା ପାଇଁ ନିର୍ଦ୍ଦେଶ ଦେଇଯାଇଥିଲେ। ତାଙ୍କ ମରଶରୀର ସଂପର୍କରେ ଭିକ୍ଷୁ ଆନନ୍ଦଙ୍କ ପ୍ରଶ୍ନର ଉତ୍ତରରେ ସେ କହିଥିଲେ,ତାଙ୍କ ମୃତ୍ୟୁ ପରେ ଭିକ୍ଷୁମାନେ ପୂର୍ବପରି ବ୍ରତ ଆଚରଣ କରି ଜୀବନ ଅତିବାହିତ କରିବେ। ତାଙ୍କ ଭସ୍ମାବଶେଷକୁ ଗୃହୀ ଭକ୍ତମାନଙ୍କ ମଧ୍ୟରେ ବାଣ୍ଟି ଦିଆଯିବ ଓ ସେମାନେ ସ୍ତୂପ ନିର୍ମାଣ କରି ପୂଜା କରିବେ। ବୁଦ୍ଧଙ୍କର ଏହି ଟିକିଏ କୋହଳ ମନୋଭାବ ବୁଦ୍ଧ ଦର୍ଶନ ଓ ସଂସ୍କୃତିକୁ କଳାମୟ କରିଦେଲା। ଦେଶରେ ଅସଂଖ୍ୟ ସ୍ତୂପ ନିର୍ମିତ ହେଲା। ବହୁ ସମ୍ପନ୍ନ ଓ ପ୍ରତିପତ୍ତିଶାଳୀ ଗୃହୀ ଭକ୍ତମାନେ ଏହାର ଦାୟିତ୍ୱ ନେଲେ। ପୂଜା ସାମଗ୍ରୀ ରୂପେ ବହୁ ମୂଲ୍ୟବାନ ଦ୍ରବ୍ୟ ଗ୍ରହଣ କରାଗଲା। ପୂଜାର୍ଚ୍ଚନା କାଳରେ ମନୋରଞ୍ଜନର ମହୋତ୍ସବ ଚାଲିଲା। ବିଳାସବ୍ୟସନ ଧର୍ମ ଭିତରକୁ ପ୍ରବେଶ କଲା। ଧୀରେ ଧୀରେ ଏହା ତାର ଲକ୍ଷ୍ୟପଥରୁ ବିଚ୍ୟୁତ ହେଲା। ଅବଶ୍ୟ ଭିକ୍ଷୁମାନଙ୍କୁ ଏହି ସ୍ତୂପ ସଂସ୍କୃତି ବାରଣ ଥିଲା, କିନ୍ତୁ ଗୃହୀମାନେ ଯେପରି ପୂଜାର୍ଚ୍ଚନା କାଳରେ ବିଳାସକୁ ପ୍ରାଧାନ୍ୟ ଦେଲେ ତାହା ବୌଦ୍ଧ ଧର୍ମର ଗାରିମାକୁ ନଷ୍ଟ କଲା ଓ ସାଧନାନିଷ୍ଠ ଭିକ୍ଷୁମାନଙ୍କ ଚିତ୍ତଦୌର୍ବଲ୍ୟ ସ୍ୱାଭାବିକ ପ୍ରକ୍ରିୟା ହୋଇଉଠିଲା। ବୌଦ୍ଧଧର୍ମରେ ପଶି ଆସିଲା ବ୍ୟଭିଚାର।

ବିଶ୍ୱକୁ ଆଲୋକିତ କରୁଥିବା ବୌଦ୍ଧ ଦର୍ଶନରେ ବ୍ୟଭିଚାର ଓ ତନ୍ତ୍ରାଚାରର ପ୍ରବେଶ ହିଁ ଏହି ମହାନ୍ ଧର୍ମକୁ ବିଲୟମୁଖୀ କରିଦେଲା। ହୀନଯାନର ସଂଯମପିଣ୍ଡିତ ନିଷ୍ଠା କୃଚ୍ଛ୍ର ସାଧନା ବୌଦ୍ଧଧର୍ମ ଓ ଦର୍ଶନର ମୌଳିକତା ଅକ୍ଷୁଣ୍ଣ ରଖିଥିଲା। କିନ୍ତୁ ମହାଯାନର ମହାସମୁଦ୍ର ବୌଦ୍ଧ ଦର୍ଶନକୁ କଳାସଂସ୍କୃତି ସାହିତ୍ୟ ସ୍ଥାପତ୍ୟ ଦୃଷ୍ଟିରୁ ରତ୍ନଗର୍ଭା କଲାସିନା କିନ୍ତୁ ତତ୍ ସଙ୍ଗେ ସଙ୍ଗେ ଯୌନ ବ୍ୟଭିଚାର ଓ ତନ୍ତ୍ରାଚାର ପାଇଁ ପଥ ଉନ୍ମୋଚନ କରିଦେଲା।

ବୌଦ୍ଧଧର୍ମରେ ସବୁଠାରୁ ଘାତକ ସିଦ୍ଧ ହେଲା ତନ୍ତ୍ରଯାନ। ହୀନଯାନର ଅର୍ହତ ଓ ମହାଯାନର ବୋଧିସତ୍ତ୍ୱ ପରି ତନ୍ତ୍ରାଚାର ପନ୍ଥୀଙ୍କ ଆଦର୍ଶ ସିଦ୍ଧାଚାର୍ଯ୍ୟ ବୁଦ୍ଧଦେବ ଜୀବିତାବସ୍ଥାରେ ତନ୍ତ୍ର ପ୍ରଭାବରେ ଲୋକମାନଙ୍କୁ ପ୍ରଭାବିତ ନକରିବାପାଇଁ ବାରମ୍ବାର ବାରଣ କରିଥିଲେ ସୁଦ୍ଧା ତନ୍ତ୍ରଚାରୀମାନେ ତାଙ୍କ ନିର୍ଦ୍ଦେଶ ଅମାନ୍ୟ କଲେ। ତନ୍ତ୍ର ମାଧ୍ୟମରେ ସେମାନେ ପ୍ରଥମେ ପ୍ରଥମେ ଲୋକମାନଙ୍କୁ ବୌଦ୍ଧଧର୍ମ ଆଡକୁ ଆକୃଷ୍ଟ କଲେ। ପରବର୍ତ୍ତୀ ପର୍ଯ୍ୟାୟରେ ଜନମାନସକୁ ଲୁଣ୍ଠନ କଲେ। ସମାଜରେ ନାନା ହଟଚମଟ ପ୍ରଦର୍ଶନ କରି ବୌଦ୍ଧ ଧର୍ମର ଗାରିମା ନଷ୍ଟ କଲେ। ଭାରତରେ ବୌଦ୍ଧଧର୍ମ ବିବଦମାନ ଓ ବିଲୟମୁଖୀ ହୋଇପଡିଲା।

ଭାରତୀୟ ଧର୍ମଦର୍ଶନର ଏକ ଅତୁଳନୀୟ ବିଭବ ବୌଦ୍ଧଧର୍ମ ଦର୍ଶନ ସମଗ୍ର ବିଶ୍ୱକୁ ଗଭୀର ଭାବରେ ଆଲୋଡିତ କରିଥିଲା। ଏବେ ସୁଦ୍ଧା ବିଶ୍ୱ ଏହାର ପ୍ରଭାବକୁ ଅକ୍ଷୁଣ୍ଣ ରଖିଛି। କିନ୍ତୁ ବହୁମତ ଓ ବହୁପଥ ହେତୁ ଭାରତରେ ତାହା ଅବକ୍ଷୟମୁଖୀ ହେବା ନିଶ୍ଚୟ ବିଡମ୍ବନାର ବିଷୟ।



# ବୌଦ୍ଧ ସ୍ମାରକୀର
# ଅନୁପମ ପୀଠ ସାଞ୍ଚୀ

ଭୋପାଳ ଠାରୁ ସାଞ୍ଚୀ ଅଭିମୁଖେ ଯାଉଥିବା ଆମ ଗାଡିଟି ଯେତେବେଳେ ବିଦିଶା ସହରରେ ପହଞ୍ଚିଲା ମୁଁ ସତକୁ ସତ ଅଭିଭୂତ ହୋଇପଡିଲି । ଏକଦା ହାତୀଦାନ୍ତର କାରିଗରୀ ପାଇଁ ବିଶ୍ୱବିଦିତ ଥିବା ବିଦିଶା ଏକ ଐତିହ୍ୟମୟୀ ନଗରୀ ଥିଲା । ବୌଦ୍ଧ ଧର୍ମର ବହୁ ଆଖ୍ୟାନ ଉପାଖ୍ୟାନ ବିଦିଶା ନଗରୀ ସହ ଜଡିତ । ବହୁ ବୌଦ୍ଧଯୁଗୀୟ ଗଳ୍ପର ସ୍ରଷ୍ଟା ଗାଳ୍ପିକ ସୁରେନ୍ଦ୍ର ମହାନ୍ତିଙ୍କ ଗଳ୍ପରେ ବିଦିଶା ନଗରୀର ପ୍ରାଚୁର୍ଯ୍ୟ ଓ ଐଶ୍ୱର୍ଯ୍ୟ ଅତ୍ୟନ୍ତ ମହନୀୟ ହୋଇଉଠିଛି । ଗୋଟିଏ ମୁହୂର୍ତ୍ତ ପାଇଁ ମୋତେ ମନେ ହେଲା ମୁଁ ଯେମିତି ବୌଦ୍ଧ ଯୁଗର ଚରିତ୍ରଟିଏ । ବିଦିଶା ନଗରୀରେ ପରିଭ୍ରମଣ କରୁଛି । ବିଦିଶା'ର ନାମ ଉଚ୍ଚାରଣ ହିଁ ସେମିତି, ବ୍ୟକ୍ତିକୁ ସ୍ୱପ୍ନରାଜ୍ୟକୁ ନେଇଯାଏ ଅବଲୀଳା କ୍ରମେ ।

ମଧ୍ୟ ପ୍ରଦେଶର ରାଜଧାନୀ ଭୋପାଳଠାରୁ ଉତ୍ତରପୂର୍ବ ଦିଗରେ ୪୫ କି.ମି. ଦୂର ଓ ୨୩.୨୯ ଅକ୍ଷାଂଶ ମଧ୍ୟରେ ଅବସ୍ଥିତ ବିଶ୍ୱର ଅନ୍ୟତମ ବୌଦ୍ଧକୀର୍ତ୍ତି ସାଞ୍ଚି । ଭୋପାଳ ଠୁଁ ତିରିଶ କିଲୋମିଟର ଗଲେ ପଡେ ବିଦିଶା । ବିଦିଶା ଠୁଁ ସାଞ୍ଚୀର ଦୂରତ୍ୱ ଦଶ କିଲୋମିଟର । ପ୍ରାଚୀନ କାଳରେ ବେଶନଗର ନାମରେ ବିଦିତ ବିଦିଶା ଅଶୋକଙ୍କ ରାଣୀଙ୍କର ପ୍ରିୟ ସହର ଥିଲା । ତାଙ୍କରି

ଅନୁରୋଧରେ ଅଶୋକ ସାଞ୍ଚି ସ୍ତୂପରେ ବୌଦ୍ଧ ସ୍ମାରକ ସବୁ ନିର୍ମାଣ କରିଥିଲେ।

ସାଞ୍ଚିର ଅନୁପମ ବୌଦ୍ଧ କୀର୍ତ୍ତି କୌଣସି ଗୋଟିଏ ରାଜାଙ୍କ ରାଜତ୍ୱ କାଳରେ ହୋଇନଥିଲା। ଖ୍ରୀ.ପୂ. ତୃତୀୟ ଶତାବ୍ଦୀଠାରୁ ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ବହୁ ରାଜା ମହାରାଜାଙ୍କ ଉଦ୍ୟମରେ ସାଞ୍ଚୀ ପର୍ବତର ବୌଦ୍ଧ କୀର୍ତ୍ତି ସମୂହ ସମୃଦ୍ଧ।

କଳିଙ୍ଗ ଯୁଦ୍ଧର ଭୟାବହତା ଅନୁଭବ କଲାପରେ ଅଶୋକ ଯୁଦ୍ଧ ବିମୁଖ ହୋଇ ପଡିଥିଲେ। କେବଳ ଯୁଦ୍ଧ ବିମୁଖ ହୋଇ ନଥିଲେ ତାଙ୍କର ସମଗ୍ର ଜୀବନ ମାନବ କଲ୍ୟାଣ ଉଦ୍ଦେଶ୍ୟରେ ଉତ୍ସର୍ଗୀକୃତ କରିଥିଲେ। ଧାର୍ମିକ ଅନୁଶାସନ ମାଧ୍ୟମରେ ମାନବ ହୃଦୟରୁ ହିଂସାବାଦ ଅସୂୟା ଅହଂକାର ଦୂର କରିବାପାଇଁ ସେ ଚେଷ୍ଟିତ ଥିଲେ। ସେ ଭଲଭାବରେ ଉପଲବ୍ଧି କରିଥିଲେ ହିଂସା ପ୍ରଣୋଦିତ ତରବାରୀର ଜୟ ଜୟ ନୁହେଁ, ବ୍ୟକ୍ତିର ହୃଦୟକୁ ଜୟ କରିବାରେ ହିଁ ପ୍ରକୃତ ବିଜୟ ନିହିତ। କଳିଙ୍ଗ ଯୁଦ୍ଧପରେ ତାଙ୍କର ଏ ଉପଲବ୍ଧିକୁ ସେ ବିଶ୍ୱଜନତା ପାଖରେ ପହଞ୍ଚାଇବାକୁ ଚାହିଁଥିଲେ। ସେଥିପାଇଁ ସେ ଗୌତମ ବୁଦ୍ଧଙ୍କ ବାଣୀକୁ ମାଧ୍ୟମ କରିଥିଲେ। ତାଙ୍କରି ପ୍ରଚେଷ୍ଟାରେ ଗୋଟିଏ ସ୍ଥାନୀୟ ଲୋକ ବିଶ୍ୱାସ ବିଶ୍ୱବାସୀଙ୍କ ବିଶ୍ୱାସର ଆଧାର ହୋଇପାରିଥିଲା। ବିଶ୍ୱର ଅନ୍ୟତମ ଧର୍ମ ଭାବରେ ବିଶ୍ୱଜନତାଙ୍କୁ ଶାନ୍ତି ଓ ମୈତ୍ରୀର ବାର୍ତ୍ତା ଦେଇପାରିଲା। ତାଙ୍କ ରାଜତ୍ୱର ଦଶମ ବର୍ଷଠାରୁ ଅନ୍ତିମ କାଳ ପର୍ଯ୍ୟନ୍ତ ଅର୍ଥାତ୍ ଖ୍ରୀଷ୍ଟପୂର୍ବ ୨୭୪ରୁ ୨୩୭ ପର୍ଯ୍ୟନ୍ତ ଦୀର୍ଘ ୩୫ ବର୍ଷ ବ୍ୟାପୀ ସେ ତାଙ୍କର ସକଳ ସଂପତ୍ତି ସମୟ ଓ ସାମର୍ଥ୍ୟ ବୌଦ୍ଧଧର୍ମର ପ୍ରଚାର ଓ ପ୍ରସାର ନିମନ୍ତେ ଉତ୍ସର୍ଗ କରିଦେଇଥିଲେ। ଏଥିପାଇଁ ବିଭିନ୍ନ ସ୍ଥାନରେ ସ୍ତୂପ, ଚୈତ୍ୟ (ସ୍ତମ୍ଭ) ମନ୍ଦିର ଓ ବିହାରମାନ ନିର୍ମାଣ କରିଥିଲେ। ନାନା ଘାତ ପ୍ରତିଘାତ ସତ୍ତ୍ୱେ ତୃତୀୟ ଶତାବ୍ଦୀ ଠାରୁ ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ସାରା ଭାରତ ବର୍ଷରେ ବୌଦ୍ଧ ଧର୍ମକୁ ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ପ୍ରଦାନ କରିବାରେ ଅଶୋକଙ୍କ ଉତ୍ତରସୁରୀମାନେ ସମର୍ଥ ହୋଇଥିଲେ।

ଅଶୋକଙ୍କ ପରେ ଶୁଙ୍ଗବଂଶର ରାଜା ପୁଷ୍ୟମିତ୍ର ହିନ୍ଦୁ ରାଜାଥିଲେ। ସେ ବୌଦ୍ଧ ଧର୍ମ ପ୍ରତି ଅସହିଷ୍ଣୁ ଥିଲେ। କିନ୍ତୁ ସୌଭାଗ୍ୟବଶତଃ ତାଙ୍କ ପୁତ୍ର ଅଗ୍ନିମିତ୍ରଙ୍କୁ ସେ ଯୁବରାଜ ପଦରେ ଅଧିଷ୍ଠିତ କରି ରାଜ୍ୟର ପଶ୍ଚିମାଞ୍ଚଳ

ପ୍ରଦାନ କରିଥିଲେ ଓ ବିଦିଶା ନଗରୀକୁ ତାଙ୍କ ରାଜ୍ୟର ରାଜଧାନୀ ରୂପେ ଘୋଷଣା କରିଥିଲେ। ଅଗ୍ନିମିତ୍ର ପିତାଙ୍କ ପରି ଅନ୍ୟ ଧର୍ମପ୍ରତି ଅସହିଷ୍ଣୁ ନଥିଲେ ବରଂ ଅଶୋକଙ୍କ ଦ୍ୱାରା ପରିକଳ୍ପିତ ଓ ନିର୍ମିତ ସାଞ୍ଚି ପର୍ବତର ବୌଦ୍ଧ ସ୍ମାରକୀକୁ ବହୁପରିମାଣରେ ସମୃଦ୍ଧ କରିଥିଲେ। ବୁଦ୍ଧଙ୍କର ଅସ୍ଥିଅବଶେଷ ଥିବା ମୁଖ୍ୟ ତଥା ପ୍ରଥମ ସ୍ତୂପକୁ ଅଶୋକ ଇଟାରେ ନିର୍ମାଣ କରିଥିଲେ। ଅଗ୍ନିମିତ୍ର ଏହି ସ୍ତୂପକୁ ପ୍ରସ୍ତର ଆଚ୍ଛାଦିତ କରିଥିଲେ। କ୍ରମାଙ୍କ ପଶିଚି ସ୍ତମ୍ଭ ଅଗ୍ନିମିତ୍ରଙ୍କ ଦ୍ୱାରା ନିର୍ମିତ ହେବାର ଶିଳାଲିପି ରହିଛି।

ଶୃଙ୍ଗ ବଂଶପରେ ଆନ୍ଧ୍ରରାଜା ସାତବାହନ ପୂର୍ବ ମାଳବ ଅଧିକାର କରିଥିଲେ। ତାଙ୍କ ସମୟରେ ସାଞ୍ଚି ପର୍ବତର ଚାରୁକଳା ଆହୁରି ଋଦ୍ଧିମନ୍ତ ହୋଇଥିଲା। ମୁଖ୍ୟ ସ୍ତୂପ ଚାରିପଟେ ଯେଉଁ କଳାତ୍ମକ କାରୁକାର୍ଯ୍ୟପୂର୍ଣ୍ଣ ତୋରଣ ସବୁ ରହିଛି, ତାହା ଏହି ରାଜାଙ୍କର କୀର୍ତ୍ତି। ଏଠାରେ କ୍ରମାଙ୍କ ତୃତୀୟ ସ୍ତୂପରେ ସାରୀପୁତ୍ତ ଓ ମୋଗଲାୟନଙ୍କ ଅସ୍ଥିବିଶେଷ ରହିଛି। କ୍ରମାଙ୍କ ଦ୍ୱିତୀୟ ସ୍ତୂପ ତଳେ ବୁଦ୍ଧଙ୍କର ପ୍ରମୁଖ ଦଶଜଣ ଶିଷ୍ୟଙ୍କର ଅସ୍ଥି ବିଶେଷ ରହିଛି ବୋଲି ଏକ ପଥର ମଞ୍ଜୁଷାରେ ବ୍ରାହ୍ମୀ ଲିପିରେ ଉଲ୍ଲେଖ ରହିଛି। ଏହାପରେ ରାଜା ସାତକର୍ଣ୍ଣି ମଧ୍ୟ ସାଞ୍ଚି ପର୍ବତରେ ଥିବା ବୌଦ୍ଧକୀର୍ତ୍ତି ପାଇଁ ବହୁତ ଉପାଦେୟ ପଦକ୍ଷେପ ନେଇଥିଲେ।

ସାଞ୍ଚିରେ ପ୍ରକୀର୍ତ୍ତିତ ସକଳ ଶିଳାଖଣ୍ଡ ବୌଦ୍ଧଭିକ୍ଷୁମାନଙ୍କ ଅବଦାନରେ ସମୃଦ୍ଧ। ବ୍ରାହ୍ମୀ ଲିପିରେ ଦାତା ଓ ଦାତ୍ରୀମାନଙ୍କ ନାମ ଅଦ୍ୟାବଧି ପ୍ରକୀର୍ତ୍ତିତ ରହିଛି।

ପଶ୍ଚିମ ଦ୍ୱାରର ତୋରଣ ବାଳମିତ୍ରା ନାମକ ଭିକ୍ଷୁଣୀଙ୍କ ଦ୍ୱାରା ପ୍ରଦତ୍ତ ଓ ପୂର୍ବ ଦ୍ୱାରର ତୋରଣ ନାଗପ୍ରିୟ ନାମକ ବୌଦ୍ଧଭିକ୍ଷୁ ପ୍ରଦାନ କରିଥିଲେ। ଚାରିଟି ସିଂହ ମୂର୍ତ୍ତି ଥାଇ ଗୋଟିଏ ସ୍ତମ୍ଭ ବାଳମିତ୍ରାଙ୍କ ଦ୍ୱାରା ପ୍ରଦତ୍ତ ହୋଇଥିବା ବେଳେ ଚାରିହସ୍ତୀ ଚିହ୍ନିତ ସ୍ତମ୍ଭ ଅସମୀତାଙ୍କ ଦ୍ୱାରା ପ୍ରଦତ୍ତ ବୋଲି ଉଲ୍ଲେଖ ରହିଛି। ବିଦିଶା ନଗରୀର ହାତୀଦାନ୍ତ କାରିଗରଙ୍କ ଦ୍ୱାରା ଏହି ସ୍ଥାପତ୍ୟ ସମୃଦ୍ଧ।

ସାଂପ୍ରତିକ କାଳ ପରି ସେତେବେଳେ ସୁଦ୍ଧା ଆମ କଳା ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ ଅସାମାଜିକ ଲୋକଙ୍କ ଦ୍ୱାରା ଚିହ୍ନାଙ୍କନ, ଖଣ୍ଡନ ମଣ୍ଡନ ଓ ସ୍ଥାନାନ୍ତରଣ

ଆଦିର ଆଶଙ୍କା ଥିଲା। ଏହି ସାଞ୍ଚି ପର୍ବତରେ ନିର୍ମିତ କାରୁକଳାକୁ ସୁରକ୍ଷା କରିବା ଉଦ୍ଦେଶ୍ୟରେ ପଶ୍ଚିମ ଦ୍ୱାରରେ ବ୍ରାହ୍ମୀ ଲିପିରେ ଖୋଦିତ ନିମ୍ନୋକ୍ତ ଅନୁଶାସନ ରହିଛି।

ଯେଉଁ ବ୍ୟକ୍ତି ତିଳେମାତ୍ର ଏହି କୀର୍ତ୍ତିରାଜିକୁ ଚିହ୍ନାଙ୍କନ ଖଣ୍ଡନମଣ୍ଡନ ଅଥବା ସ୍ଥାନାନ୍ତରଣ କରିବ ସିଏ "ମୃତୁଘାତ" ଅର୍ଥାତ୍ ମାତୃହତ୍ୟା, ପିତୃହତ୍ୟା ଅର୍ଥାତ୍ ପିତୃହତା ଅର୍ହତ ଘାତ୍ ଅର୍ହତ ହତ୍ୟା ଲୋହିତୁପାତ ଅର୍ଥାତ୍ ଗଣ ରକ୍ତପାତ ସଂଘଭେଦ ଅର୍ଥାତ୍ ସାଂପ୍ରଦାୟିକ ବିଭେଦର କାରକ ଜନିତ ପାଞ୍ଚଟି ଅପରାଧରେ ଅପରାଧି ହେବ।

ବହୁ ପ୍ରାଚୀନ ଐତିହ୍ୟ ବହନ କରିଥିବା ସାଞ୍ଚି ପର୍ବତ ବିଭିନ୍ନ କାଳରେ ବିଭିନ୍ନ ନାମରେ କଥିତ ହୋଇଆସିଛି। ସାଞ୍ଚିର ସର୍ବପ୍ରାଚୀନ ନାମ ଥିଲା କାଙ୍କଣାୟ। ଏହାପରେ କାଙ୍କଣାଦ ବୋଟ ଏବଂ କାଙ୍କଣାଦ ବୋଟରୁ ବୋଟା ଶ୍ରୀ ପର୍ବତରେ ପରିଣତ ହେଲା। ପବିତ୍ର ବୌଦ୍ଧ କୀର୍ତ୍ତିସବୁ ଧାରଣ କରିଥିବାରୁ ବୋଧହୁଏ ଏହାର ନାମ ଶାନ୍ତି ଶ୍ରୀପର୍ବତ ଓ ଶାନ୍ତିଶ୍ରୀ ପର୍ବତରୁ ଅପଭ୍ରଂଶ ହୋଇ ସାଞ୍ଚୀ ପର୍ବତ ହୋଇଥିବାର ଗବେଷକମାନେ ଅନୁମାନ କରନ୍ତି। ସାଞ୍ଚୀ ଏହାର ଅଧୁନାତମ ନାମ। ଏହି ପର୍ବତରେ ବହୁ ପରିମାଣରେ ଚୈତ୍ୟ ନିର୍ମିତ ହୋଇଥିବାରୁ ସିଂହଳର ଲିଖିତ ବୌଦ୍ଧଗ୍ରନ୍ଥ ମହାବଂଶରେ ଏହାର ନାମ ଚୈତିୟଗିରି ବୋଲି ମଧ୍ୟ ଉଲ୍ଲିଖିତ ରହିଛି।

ସବୁଠାରୁ ଉଲ୍ଲେଖନୀୟ କଥା ହେଲା, ବୁଦ୍ଧଗୟା, ସାରନାଥ, ଲୁମ୍ବିନୀ, କୁଶୀନୀରା ଓ ଶ୍ରାବସ୍ତୀ ଆଦି ପବିତ୍ର ପୀଠ ବୁଦ୍ଧଙ୍କ ଜୀବନର ବିଭିନ୍ନ ଗୌରବମୟ ଗାଥା ସହ ଜଡିତ। ଜନ୍ମ ସିଦ୍ଧି ପ୍ରାପ୍ତି, ଅଲୌକିକ କାର୍ଯ୍ୟ ପ୍ରଦର୍ଶନ, ଧର୍ମପ୍ରଚାର, ସଂଘ ପ୍ରତିଷ୍ଠା ମୃତ୍ୟୁ ଆଦି ଘଟଣା ଏହି ସ୍ଥାନଗୁଡିକରେ ସଂଘଟିତ ହୋଇଥିଲା। ଅଥବା ତାଙ୍କର ପ୍ରମୁଖ ଶିଷ୍ୟମାନେ ଏହି ସ୍ଥାନ ମାନଙ୍କରେ ବହୁକାଳ ଅବସ୍ଥାନ କରିଥିଲେ। କିନ୍ତୁ ସାଞ୍ଚୀର ଶିଳା ଲେଖରେ ବୁଦ୍ଧଦେବ ଅଥବା ତାଙ୍କର ପ୍ରମୁଖ ଶିଷ୍ୟ ଏଠାରେ ପଦାର୍ପଣ କରିଥିବା ଉଲ୍ଲେଖ ନାହିଁ। ତଥାପି ବହୁ ରାଜା ରାଜୁଡାଙ୍କ ଚେଷ୍ଟାରେ ସ୍ଥାନଟି ବିଶ୍ୱର ଅନ୍ୟାନ୍ୟ ବୌଦ୍ଧପୀଠ ଅପେକ୍ଷା କୌଣସି ଗୁଣରେ କମ୍ ନୁହେଁ। ବୌଦ୍ଧକଳାର ସବୁ ପ୍ରକାର ନମୁନା ଏହି ସ୍ଥାନରେ ପ୍ରଚୁର ପରିମାଣରେ ରହିଛି। ଏତେ

ସଂଖ୍ୟକ ସ୍ତୂପ, ସ୍ତମ୍ଭ ମନ୍ଦିର ଓ ବିହାର ଅନ୍ୟ ବୌଦ୍ଧପୀଠ ମାନଙ୍କରେ କ୍ୱଚିତ୍ ମିଳେ । ବୌଦ୍ଧ ଯୁଗୀୟ କଳା ଭାସ୍କର୍ଯ୍ୟ ଓ ସ୍ଥାପତ୍ୟରେ ଏହି ପୀଠର ଅନନ୍ୟତା ରହିଛି ।

ସାଞ୍ଚୀ ପର୍ବତରେ ବୌଦ୍ଧ କୀର୍ତ୍ତି ସମୟର ନିର୍ମାଣ ପ୍ରଚାର ପ୍ରସାର ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ସକ୍ରିୟ ଥିଲା । ଏହାପରେ ଦୀର୍ଘ ଛଅଶହ ବ୍ୟାପୀ କୌଣସି କାରଣରୁ ଅବହେଳିତ ଓ ଉପେକ୍ଷିତ ହୋଇପଡିରହିଥିଲା । ଫଳରେ ଘଞ୍ଚ ଜଙ୍ଗଲରେ ପରିପୂର୍ଣ୍ଣ ହୋଇପଡିଲା । ଜନସାଧାରଣଙ୍କ ପାଇଁ ଦୁର୍ଗମ ଓ ଦୁର୍ଭେଦ୍ୟ ହେବାରୁ ଜନମାନସ ଅନ୍ତରାଳରେ ରହିଲା । ୧୮୧୮ ଖ୍ରୀଷ୍ଟାବ୍ଦରେ ପ୍ରଥମେ ଇଂରେଜ ଐତିହାସିକ ଓ ପ୍ରତ୍ନତାତ୍ତ୍ୱିକ ଜେନେରାଲ ଟେଲର ଏହାକୁ ଆବିଷ୍କାର କରି ଏହାର ଦାୟିତ୍ୱ ନିଜ ନିୟନ୍ତ୍ରଣକୁ ଆଣିଥିଲେ । ପ୍ରାୟତଃ ପଚାଶଟି ବୌଦ୍ଧସ୍ତୂପ, ଚୈତ୍ୟ ମନ୍ଦିର ଓ ବିହାର ଆଦିର ସନ୍ଧାନ ମିଳିଥିଲା । ଏହାପରେ "କ୍ରମାନ୍ୱୟରେ ୧୮୨୨ ଠାରୁ ୧୯୧୯ ପର୍ଯ୍ୟନ୍ତ ସାର୍ ଆଲେକ୍‌ଜାଣ୍ଡାର କନିଂହାମ୍ ଜେନେରାଲ ଜନ୍‌ସନ୍, ଜେନେରାଲ୍ କନିଂହାମ୍, ଜେନେରାଲ୍ ମୈସୀ, ମେଜର କୋଲ୍ ଏବଂ ସାର୍‌ଜନ୍ ମାର୍ଶାଲ ପ୍ରଭୃତି ପତ୍ନତତ୍ତ୍ୱବିତ୍‌ମାନେ ଏହି ପୀଠକୁ ଅନ୍ୱେଷଣ, ଉତ୍‌ଖନନ ଓ ସଂରକ୍ଷଣ ଆଦି କାର୍ଯ୍ୟରେ ନଜକୁ ନିୟୋଗ କରିଥିଲେ । ସାର୍ ଜନ୍ ମାର୍ଶାଲ ଏଠାରେ ଏକ ଲଘୁ ସଂଗ୍ରହାଳର ନିର୍ମାଣ କରିଥିଲେ । ତାହା ଏପର୍ଯ୍ୟନ୍ତ ବିଦ୍ୟମାନ ଅଛି ।

ସାଞ୍ଚୀର ସମଗ୍ର କୃତିକୁ ଚାରିଭାଗରେ ବିଭକ୍ତ କରାଯାଇଛି । ସ୍ତୂପ, ସ୍ତମ୍ଭ, ମନ୍ଦିର ଓ ବିହାର ।

ସ୍ତୂପ ଗୁଡିକ ଅର୍ଦ୍ଧଗୋଲାକାର, ହିନ୍ଦୁଧର୍ମର ସମାଧି ପୀଠଭଳି । ଏହି ସ୍ତୂପଗୁଡିକ ଗୌତମ ବୁଦ୍ଧ ଓ ତାଙ୍କ ଶିଷ୍ୟ ଏବଂ ଅନ୍ୟାନ୍ୟ ବୌଦ୍ଧଭିକ୍ଷୁମାନଙ୍କ ଅସ୍ଥି ଅବଶେଷ ଉପରେ ନିର୍ମିତ ହୋଇଛି । ଏଠାରେ ଥିବା ଏକନମ୍ବର ସ୍ତୂପରେ ଗୌତମ ବୁଦ୍ଧଙ୍କର ଅସ୍ଥି ବିଶେଷ ଥିବାବେଳେ ଦୁଇ ନମ୍ବର ସ୍ତୂପତଳେ ଦଶଜଣ ଅର୍ହତଙ୍କ ଅସ୍ଥିବିଶେଷ ଓ ତିନିନମ୍ବର ସ୍ତୂପତଳେ ସାରୀପୁତ୍ତ ଓ ମୋଗଲାୟନସ୍ଙ୍କ ଅସ୍ଥି ଅବଶେଷ ରହିଛି ।

ସ୍ତମ୍ଭମାନଙ୍କରେ ଅଶୋକଙ୍କ ଧର୍ମ ଅନୁଶାସନ ନୀତିବାଣୀ, ବୌଦ୍ଧକୀର୍ତ୍ତି ସମ୍ବନ୍ଧୀୟ ତଥ୍ୟ, ଗୌତମବୁଦ୍ଧଙ୍କ ଜୀବନୀ, ଜାତକ କଥା, ବୁଦ୍ଧଦେବଙ୍କ

ସିଦ୍ଧିପ୍ରାପ୍ତି ଆଦି ଅନେକ ବିଷୟବସ୍ତୁ ନେଇ ବହୁ ଶିଳାଲେଖ ବ୍ରାହ୍ମୀ ଲିପିରେ ଖୋଦିତ ହୋଇଛି। ଅଶୋକଙ୍କ ଧର୍ମଚକ୍ର, କେଉଁଠି ଚାରୋଟି ସିଂହ ଅଥବା କେଉଁଠି ଚାରୋଟି ହସ୍ତୀ ସହ କାରୁକାର୍ଯ୍ୟମୟ ସ୍ତମ୍ଭମାନ ରହିଛି।

ଆରାଧନା ପାଇଁ ବୌଦ୍ଧମନ୍ଦିରମାନ ରହିଛି। ବୌଦ୍ଧମୂର୍ତ୍ତି ସହ ବୁଦ୍ଧ ଆତ୍ମଜୀବନୀ ଜାତକ କଥା ସମ୍ବଳିତ ଚିତ୍ର ଅଙ୍କାଯାଇଛି। କ୍ରମିକ ନମ୍ବର ୧୭ ଥିବା ମନ୍ଦିରଟି ଚାରିଗୋଟି ସ୍ତମ୍ଭ ଓ ଛାତ ସମତଳଥିବା ଏକ କାରୁକଳାମୟୀ ମନ୍ଦିର। ଏହି ମନ୍ଦିରଟି ଭାରତୀୟ ବାସ୍ତୁକଳାର ସଂପୂର୍ଣ୍ଣ ବିକଶିତ ରୂପ। କ୍ରମିକ ୧୮ ନମ୍ବର ମନ୍ଦିରରୁ ମୌର୍ଯ୍ୟ ଶୁଙ୍ଗ ସମୟର କଳାନୈପୂଣ୍ୟ ଧ୍ୱସ୍ତ ବିଧ୍ୱଂସ୍ତ ଅବସ୍ଥା ରହିଛି। ୨୫ ନମ୍ବର ମନ୍ଦିରଟି ଏକ ଉଚ୍ଚ ଓ ବିଶାଳ ମନ୍ଦିର। ଯେଉଁଠାରେ ଉତ୍ତର ଭାରତର କଳା ଭାସ୍କର୍ଯ୍ୟର ବିକଶିତ ରୂପ ଏହି ମନ୍ଦିର ଗୁଡିକରେ କେଉଁଠାରେ ବୌଦ୍ଧମୂର୍ତ୍ତିମାନ ଅକ୍ଷୁଣ୍ଣ ଅବସ୍ଥାରେ ଅଛନ୍ତି ତ ଆଉ କେଉଁଠି ଜରାଜୀର୍ଣ୍ଣ ରୂପେ ବିଦ୍ୟମାନ।

ଭିକ୍ଷୁ ବା ଅର୍ହତମାନଙ୍କର ରହିବାପାଇଁ ଛୋଟ ଛୋଟ ଗୁମ୍ଫା ଓ କୋଠରୀ ଗୁଡାଏ ରହିଛି। ଏଗୁଡିକୁ ବିହାର କୁହାଯାଏ। ଏହାର ମଝିରେ ଗୋଟାଏ ଲେଖାଏଁ ଉନ୍ମୁକ୍ତ ପ୍ରାଙ୍ଗଣ ରହିଛି। ଗୁମ୍ଫାମାନଙ୍କରେ ବୌଦ୍ଧଭିକ୍ଷୁମାନେ ରହୁଥିଲେ ଓ ପ୍ରାଙ୍ଗଣରେ ସଭାସମିତି ଓ ବିଚାର ଆଲୋଚନା ହେଉଥିଲା।

ଏସବୁ ବ୍ୟତୀତ କେତେ ଗୁଡିଏ ବିସ୍ତୃତ ବେଦିକାମାନ ରହିଛି। ଯେଉଁଠାରେ ବୌଦ୍ଧ ସନ୍ନ୍ୟାସୀମାନଙ୍କର ସାମୂହିକ ପ୍ରାର୍ଥନା ଓ ବିଚାର ଆଲୋଚନା ହେଉଥିଲା।

ବେଟଓ୍ୱା ନଦୀ କୂଳରେ ଅବସ୍ଥିତ ସାଞ୍ଚି ପର୍ବତର ପ୍ରାକୃତିକ ଶୋଭା ଅନୁପମ। ପର୍ବତକୁ ଆବୋରି ରହିଥିବା ଘଞ୍ଚ ଜଙ୍ଗଲ ମଧ୍ୟରୁ ବିଭିନ୍ନ ପ୍ରକାର ବନ୍ୟ ପକ୍ଷୀମାନଙ୍କର କଳକୂଜନରେ ସ୍ଥାନଟି ସଙ୍ଗୀତମୟ ମନେ ହୁଏ। ଦଳଦଳ ମୟୂରଙ୍କର ନିର୍ଭୟ ବିଚରଣରୁ ହୃଦ୍‌ବୋଧ ହୁଏ ଗୌତମ ବୁଦ୍ଧଙ୍କର ଅହିଂସା ଧର୍ମ ଏବେ ସୁଦ୍ଧା ସାଞ୍ଚୀ ପର୍ବତରେ ଅକ୍ଷୁଣ୍ଣ ରହିଛି। ଶ୍ରମଣ ଶ୍ରେଷ୍ଠୀ ଅଥବା ବିଦିଶାର ରାଜବଧୁଙ୍କ ବିଳାସପାଳିତ ରାଜହଂସ, ଶଶକ ଓ ମୟୁର ମୟୁରୀ ଏବେ ସୁଦ୍ଧା ବୁଦ୍ଧଙ୍କର ଶାନ୍ତି ମୈତ୍ରୀର ସନ୍ଦେଶ ବିଶ୍ୱବାସୀଙ୍କୁ ପରିବେଷଣ କରୁଛନ୍ତି।

ଶ୍ରାବଣ ମାସ ହୋଇଥିବାରୁ ବେଟଓ୍ୱା ନଦୀ ବନ୍ୟାପ୍ଳାବିତ ହୋଇଥିଲା। ଜଣେ କର୍ମଚାରୀ ଆମକୁ ହିନ୍ଦିରେ କହିଲେ - ମାଡାମ୍ ଜୀ ବାଢ଼।

ଆମେ କୌତୁହଳୀ ହୋଇ ପାହାଡର ଗୋଟିଏ ଧାରକୁ ଯାଇ ନିମ୍ନକୁ ଦୃଷ୍ଟି ନିକ୍ଷେପ କଲୁ। ମନେ ହେଲା ସତେ ଅବା ଜଳମଗ୍ନ ଦ୍ୱାରକା। ପାଦଦେଶରେ ଗାଁ ଗଣ୍ଡାକୁ ବେଢ଼ିଛି ଜଳରାଶି। ଉପକୂଳ ଅଞ୍ଚଳରେ ବନ୍ୟା ଦେଖିଥିଲି, କିନ୍ତୁ ଗୋଟାଏ ସୁଉଚ୍ଚ ପାହାଡ ଉପରେ ଠିଆ ହୋଇ ତଳେ ବନ୍ୟାର ତାଣ୍ଡବ ଦୃଶ୍ୟ ଦର୍ଶନ କରିବାର ଯେଉଁ ଅନୁଭବ ତାହା ସତରେ ଅନନ୍ୟ। ପ୍ରଳୟର ବି ଗୋଟାଏ ସୌନ୍ଦର୍ଯ୍ୟ ଅଛି। ଭୀମକାନ୍ତ ସେ ସୌନ୍ଦର୍ଯ୍ୟ।

କଫି ହାଉସ୍‌ରୁ କଫି ପିଇ ସାରି ଆମେ ଫେରି ଆସିଲୁ ଗାଡି ପାଖକୁ। ସମୟ ସେତେବେଳକୁ ଅପରାହ୍ନ ସ୍ପର୍ଶ କଲାଣି। ଦୀର୍ଘ ଅଢ଼େଇ ହଜାର ବର୍ଷ ଧରି ବିଶ୍ୱକୁ ଶାନ୍ତି, ମୈତ୍ରୀ ଓ ଅହିଂସାର ବାର୍ତ୍ତା ବାଣ୍ଟୁଥିବା ବୌଦ୍ଧ ସ୍ମାରକର ସ୍ରଷ୍ଟାମାନଙ୍କ ଉଦ୍ଦେଶ୍ୟରେ ବିନମ୍ର ପ୍ରଣତି ଜଣେଇ ମୁଁ ଗାଡି ଭିତରେ ବସି ପଡିଲି।



# ଅପରାଜେୟତାର ପ୍ରତୀକ : ପିଣ୍ଡିକ ବାହୁବଳେନ୍ଦ୍ର

ପିଣ୍ଡିକ ବାହୁବଳେନ୍ଦ୍ର ଶତ ସଂଘର୍ଷ ଭିତରେ ତଥାପି ଅପରାଜେୟ ରହିଥିବା ଓଡ଼ିଶା ଓ ଓଡ଼ିଆର ପ୍ରାଣ ପ୍ରତିଭୂ। ଓଡ଼ିଶାର ସ୍ୱାଭିମାନ, ଓଡ଼ିଆର ଗର୍ବ ଗୌରବ। ବାହୁବଳେନ୍ଦ୍ର ଜୀବନ ଆରମ୍ଭ କରିବା ବେଳକୁ ଦୀର୍ଘକାଳ ଧରି ବୈଦେଶିକମାନଙ୍କ ଲୋଲୁପ ଦୃଷ୍ଟିର ଶିକାର ହୋଇ ଓଡ଼ିଶା ହତଶ୍ରୀ ହୋଇପଡିଥିଲା। କେବଳ ସମ୍ପତ୍ତି ଲୁଣ୍ଠନ ନୁହେଁ ସେମାନଙ୍କ ନୈତିକ ବଳ ଓ ଆତ୍ମବିଶ୍ୱାସ ମଧ୍ୟ ଲୁଣ୍ଠିତ ହୋଇସାରିଥିଲା। ବୈଦେଶିକ ଶାସକ ଅପେକ୍ଷା ମରହଟ୍ଟାମାନଙ୍କର ବର୍ବରତା ଓଡ଼ିଶାର ଜନଜୀବନକୁ ବେଶି ବିପର୍ଯ୍ୟସ୍ତ କରିଦେଇଥିଲା। ଓଡ଼ିଆ ମାନେ ଜୀବନ ବିମୁଖ ହୋଇପଡିଥିଲେ। ସେମାନଙ୍କ ତରବାରୀ ଶିଥିଳ ହୋଇଯାଇଥିଲା। ମନୋବଳ ଭାଙ୍ଗି ତୁଟି ଯାଇଥିଲା। ତେଣୁ ମହରହଟ୍ଟାଙ୍କ ହାତରୁ ଇଂରେଜମାନେ ଯେତେବେଳେ ଓଡ଼ିଶାକୁ ଛିନ୍ନ କରିବାକୁ ଚାହିଁଲେ ଓଡ଼ିଆ ପାଇକ ନିଷ୍କ୍ରିୟ ରହିଲେ। ମରହଟ୍ଟା ଶାସନର ଦୌରାତ୍ମ୍ୟରେ ଓଡ଼ିଆମାନେ କିପରି ଦୟନୀୟ ଜୀବନ ଯାପନ କରୁଥିଲେ ତାର ଏକ ନମୁନା ଦେଇଛନ୍ତି ଜେମ୍ସ୍ ହଣ୍ଟର ତାଙ୍କ ଇତିହାସ ବହିରେ। ହଣ୍ଟର ଲେଖିଛନ୍ତି –

ମରହଟ୍ଟା ଦୁଃଶାସନର ଦୁର୍ଗତି ଓଡ଼ିଶାରେ କ୍ରୀତଦାସ ପ୍ରଥାର ଏକ ନୂତନ ଅଧ୍ୟାୟ ଆରମ୍ଭ କରିଦେଲା । ଚାଷୀମାନେ ଜୀବନ ଧାରଣର ଅନ୍ୟ ଉପାୟ ନ ଦେଖି ନିଜକୁ କ୍ରୀତଦାସ ବ୍ୟବସାୟୀମାନଙ୍କ ଠାରେ ବିକ୍ରି କରି ଦେଉଥିଲେ । ସେମାନଙ୍କୁ ଜାହାଜରେ ଲଦି କ୍ରୀତଦାସ ବ୍ୟବସାୟୀମାନେ ବିଦେଶକୁ ପଠାଇ ଦେଉଥିଲେ । ମାନ୍ଦ୍ରାଜ ଠାରେ ଓଡ଼ିଶାରୁ ରପ୍ତାନୀ କରାଯାଉଥିବା ବହୁ କ୍ରୀତଦାସଙ୍କୁ ଇଷ୍ଟଇଣ୍ଡିଆ କମ୍ପାନୀର କର୍ମଚାରୀମାନେ ଉଦ୍ଧାର କରିଥିବା କମ୍ପାନୀର ଗଞ୍ଜାମ ରେକର୍ଡରେ ଲିପିବଦ୍ଧ ରହିଅଛି ।

"ପୁରୀ ବନ୍ଦର (Puri Road Stead) ସେତେବେଳେ କ୍ରୀତଦାସମାନଙ୍କର ଏକ ପ୍ରଧାନ ପେଣ୍ଠ ଥିଲା । ଏଠାରୁ ଓଡ଼ିଆମାନଙ୍କୁ କ୍ରୀତଦାସ ରୂପେ କିଣି ବ୍ୟବସାୟୀମାନେ ମାନ୍ଦ୍ରାଜକୁ ରପ୍ତାନୀ କରୁଥିଲେ ।" (ଉଦ୍ଧୃତ) ଉତ୍କଳ ଯୁଗେ ଯୁଗେ (ପୃଷ୍ଠା ୯୭) ।

ଓଡ଼ିଆମାନେ ମରହଟ୍ଟା ଶାସନକୁ ଅନ୍ତ କରିବାପାଇଁ ଓଡ଼ିଶାରେ ଇଂରେଜ ଆକ୍ରମଣକୁ ମୌନ ସମର୍ଥନ କଲେ । ଇଂରେଜମାନେ ଅନାୟାସରେ ଅବଲୀଳାକ୍ରମେ ମରହଟ୍ଟାମାନଙ୍କ ହାତରୁ ଓଡ଼ିଶାର ଶାସନ କ୍ଷମତା ଛିନ୍ନ କରିନେଇଥିଲେ ।

୧୮୦୩ ମସିହା ଅକ୍ଟୋବର ୧୪ ତାରିଖରେ ପିପିଲିଠାରେ ମରହଟ୍ଟା ଓ ଇଂରେଜଙ୍କ ମଧ୍ୟରେ ଯେଉଁ ଶେଷ ସଂଗ୍ରାମ ହୋଇଥିଲା, ସେଥିରେ ୧୦ ହଜାରରୁ ଉର୍ଦ୍ଧ୍ୱ ପାଇକ ଥିବାବେଳେ ହାତ ଗଣତି ଥିଲେ ଇଂରେଜ ସୈନ୍ୟ । ଯୁଦ୍ଧରେ ପଚିଶରୁ ବି କମ୍ ଇଂରେଜ ସୈନ୍ୟ ମୃତାହତ ହୋଇଥିଲେ । ମୃତାହତଙ୍କୁ ବୋହିନେବାପାଇଁ ମାନ୍ଦ୍ରାଜରୁ ୪୦୦ ଶିବିକା ଅଣାଯାଇଥିଲା । କିନ୍ତୁ ସେଗୁଡିକ ସେମିତି ଶୂନ୍ୟଶୂନ୍ୟ ପୁରୀ ଯାଇଥିଲା । ପିପିଲିରେ ଯେଉଁ ସୈନ୍ୟ ଛତ୍ରଭଙ୍ଗ ଦେଇଥିଲେ ସେମାନେ ଆଉ ସଂଗଠିତ ହୋଇପାରିଲେ ନାହିଁ । ବାଲେଶ୍ୱରରେ ମଧ୍ୟ ମାତ୍ର ଏକ ହଜାର ସିପାହୀ ତିନୋଟି ଜାହାଜରେ ଇଂରେଜ ସେନାପତି କ୍ୟାପ୍‌ଟେନ୍ ମୋର୍ଗାନ ଓ ଲେଫ୍ଟନାଣ୍ଟ ବ୍ରାଉଟନ୍‌ଙ୍କ ନେତୃତ୍ୱରେ କଲିକତାରୁ ଆସିଥିଲେ । ମରହଟ୍ଟା ପ୍ରତିନିଧି ମୟୂରୀ ପଣ୍ଡିତ ଏମାନଙ୍କୁ ଦେଖି ଛତ୍ରଭଙ୍ଗ ଦେଲେ । ଗଞ୍ଜାମ ଓ ସମ୍ବଲପୁରରେ ମଧ୍ୟ ସେଇ କଥା । ଗଞ୍ଜାମ ଅଧିକାର କଲାବେଳେ ଇଂରେଜମାନେ ୮୦୦ ଶଗଡ ଧାନ

ଧରି ଆସିଥିବା କୁହାଯାଏ । ଯାହା ସେମାନଙ୍କ ବ୍ୟବସାୟ ବାଣିଜ୍ୟ ପାଇଁ ଉଦ୍ଦିଷ୍ଟ ଥିଲା । ହଣ୍ଟର ସାହେବ ତାଙ୍କ ଇତିହାସରେ ଲେଖିଛନ୍ତି ମାତ୍ର ୩୦୦ ସୈନ୍ୟ ଓ ଦୁଇଟା ତୋପ ଯଦି ମରହଟ୍ଟାମାନେ ଯୋଗାଡ କରିପାରିଥାନ୍ତେ ଇଂରେଜ ସିପାହୀ ଚିଲିକାରେ ସଲୀଳ ସମାଧି ନେଇଥାନ୍ତେ, କିନ୍ତୁ ବିନା ପ୍ରତିବାଦରେ ଇଂରେଜ ସରକାର ଓଡ଼ିଶାର କ୍ଷମତା ହାତକୁ ନେଇଗଲା ।

ଏକଦା ସମ୍ରାଟ ଅଶୋକଙ୍କୁ ନାକେଦମ କରିଦେଇଥିବା ପାଇକ ଯୋଦ୍ଧାଙ୍କ ସ୍ୱାର୍ଥ ଓ ସ୍ୱାଭିମାନକୁ ସମ୍ମାନ ଜଣାଇ ଯଦି ମରହଟ୍ଟାମାନେ ତାର ଉପଯୋଗ କରିଥାନ୍ତେ ଓଡ଼ିଶାରେ ଇଂରେଜମାନେ ପଶିପାରି ନଥାନ୍ତେ । କିନ୍ତୁ ସେତେବେଳେ ରାଜାପ୍ରଜାଙ୍କ ମଧ୍ୟରେ ଥିଲା ପୀଡିତ ପୀଡକର ସଂପର୍କ । ଖାଦ୍ୟ ଖାଦକର ସଂପର୍କ । ଶୋଷକ ଶୋଷିତର ସଂପର୍କ । ତେଣୁ ଯେ କେହି ପ୍ରଜା ହେଲେ ବି ଓଡ଼ିଆମାନଙ୍କୁ କିଛି ଫରକ୍ ପଡିନଥା'ନ୍ତା । ମରହଟ୍ଟା ଶକ୍ତି ଓଡ଼ିଶାରୁ ବିଦାୟ ନେଇଗଲା ପରେ ଇଂରେଜମାନଙ୍କ ବିରୁଦ୍ଧରେ ଅସଲ ଯୁଦ୍ଧ ଆରମ୍ଭ ହୋଇଥିଲା ଓଡ଼ିଶାରେ । ପାଇକମାନଙ୍କର ସୁପ୍ତ ଶକ୍ତି ଜାଗ୍ରତ ହୋଇଥିଲା । ଦେଶପ୍ରେମର ବହ୍ନିରେ ସେମାନେ ବହ୍ନିମାନ ହୋଇଗଲେ ।

୧୮୦୪ ବେଳକୁ ଖୋର୍ଦ୍ଧାର ରାଜା ମୁକୁନ୍ଦଦେବ ନାବାଳକ ଥିଲେ । ତାଙ୍କ ଅଭିଭାବକ ଥିଲେ ଜୟୀରାଜଗୁରୁ । ଇଂରେଜମାନେ ବାରବାଟୀ ଦୁର୍ଗ ଦଖଲ କରିସାରିବା ପରେ ଏକ ଚିଠିରେ ଇଂରେଜମାନଙ୍କୁ କରଦେବାପାଇଁ ଠାକୁର ରାଜା ମୁକୁନ୍ଦ ଦେବଙ୍କୁ ନିର୍ଦ୍ଦେଶ ଦେଇଥିଲେ । ଏହାଛଡା ସେମାନଙ୍କ ବେପାର ବାଣିଜ୍ୟରେ ସହାୟତା କରିବା କଥା ଚିଠିରେ ଉଲ୍ଲେଖ ଥିଲା । ଏଇଠୁ ହୋଇଥିଲା ବିଦ୍ରୋହ ଓ ପ୍ରତିରୋଧର ସୂତ୍ରପାତ । ୧୮୦୪ରୁ ୧୮୫୭ ମସିହା ପର୍ଯ୍ୟନ୍ତ ଇଂରେଜମାନଙ୍କ ବିରୁଦ୍ଧରେ ଯେଉଁ ଅପ୍ରତିହତ ସଂଗ୍ରାମ ଚାଲିଥିଲା ତାହା ଥିଲା ସମଗ୍ର ଭାରତ ବର୍ଷରେ ପ୍ରଥମ ଇଂରେଜ ବିରୋଧୀ ସଂଗ୍ରାମ । କିନ୍ତୁ ୧୯୫୭ର ସିପାହୀ ବିଦ୍ରୋହ ଯେପରି ସଂଗଠିତ ଥିଲା ଏହା ସେପରି ସଂଗଠିତ ନଥିବାରୁ ବିଫଳ ହୋଇଥିଲା । ବନ୍ଧୁ ଦ୍ରୋହ ଓ ବିଶ୍ୱାସଘାତକତା ବିଦ୍ରୋହ ବିଫଳ ହେବାର ଅନ୍ୟତମ କାରଣଥିଲା । ଖୋର୍ଦ୍ଧାର ପାଇକମାନଙ୍କ ବିଦ୍ରୋହର ପ୍ରତିଧ୍ୱନି ଓଡ଼ିଶାର ଅନ୍ୟ ଅଞ୍ଚଳମାନଙ୍କରେ ଶୁଭିଥିଲା । ସମ୍ବଲପୁର ଅଞ୍ଚଳରେ ବୀର ସୁରେନ୍ଦ୍ର ସାଏ, ଅନୁଗୁଳର ରାଜା

ସୋମନାଥ ଜଗଦ୍ଦେବ, ଘୁମସରର ଶ୍ରୀକର ଭଞ୍ଜ, ଗଞ୍ଜାମର ମହୁରୀ ରାଣୀ, ସିଂହଭୂମିର ରାଜା ଅର୍ଜୁନ ସିଂ ପ୍ରମୁଖ ଏହି ସଂଗ୍ରାମର ସାରଥୀ ଥିଲେ ।

ଏହି ଯୋଦ୍ଧାମାନେ ଯେତିକି ବଳ ବିକ୍ରମର ଅଧିକାରୀ ଥିଲେ ସେତିକି ସ୍ୱାଭିମାନୀ ଓ ଦେଶପ୍ରେମୀ ଥିଲେ। ସେମାନଙ୍କର ଯଥାର୍ଥ ଉପଯୋଗ ହୋଇପାରିଥିଲେ ଭାରତ ଇତିହାସରେ ଓଡ଼ିଶାର ଇତିହାସ ଭିନ୍ନ ମୋଡ ନେଇଥା'ନ୍ତା। ଲଗାତାର ବିଶ୍ୱାସଘାତକତା ଏ ବିଦ୍ରୋହକୁ ଧୂଳିସାତ୍ କରିଦେଲା। ରାଜା ମୁକୁନ୍ଦ ଦେବଙ୍କୁ ଗୋହିରା ଟିକିରି ଯୁଦ୍ଧରେ ଶିଖି ମନାଇ ପଛରୁ ଛୁରୀ ଭୂଷି ହତ୍ୟା କରିଥିଲେ। ନାରାୟଣ ପରମ ଗୁରୁ ବାସୁଦେବ ପାଟଯୋଶୀଙ୍କୁ କୁଜଙ୍ଗ ରାଜା ମଧୁସୂଦନ ଷେଣ୍ଢ ଇଂରେଜମାନଙ୍କ ହାତରେ ଧରାଇ ଦେଇଥିଲେ। ନୟାଗଡ଼ର ରାଜା କପଟକରି ବକ୍ସିଜଗବନ୍ଧୁଙ୍କୁ ଇଂରେଜମାନଙ୍କ ହାତରେ ଧରାଇ ଦେଇଥିଲେ। ଦାରୁଠେଙ୍ଗର ଦୁର୍ଦ୍ଦମନୀୟ ବାହୁବଳେନ୍ଦ୍ର ମଧ ଇତିହାସର ଏହି କଳଙ୍କିତ ଚକ୍ରାନ୍ତର ଶିକାର ହୋଇଥିଲେ। ଏହି କାଳଖଣ୍ଡରେ କେତେଜଣ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀଙ୍କର ପ୍ରଲୋଭନ ବିଜଡିତ ହୀନ ମାନସିକତା ବିଶ୍ୱ ଇତିହାସରେ ଓଡ଼ିଶାର ଛବି ଯେପରି ମଳିନ କରିଛି ତାହା ଅନ୍ୟଯୁଗରେ ନଥିଲା।

ପିପିଲି ବିଜୟ ପରେ ଇଂରେଜମାନେ ମୁକୁନ୍ଦ ଦେବଙ୍କ ପାଖକୁ ପଠାଇଥିବା ଚିଠିକୁ ପ୍ରତିବାଦ କରି ରାଜରୋଷର ଶିକାର ହେଲେ ଜୟୀ ରାଜଗୁରୁ। ତାଙ୍କୁ ନିର୍ମମ ଭାବରେ ଫାଶୀ ଦିଆଗଲା। ଏହା ଥିଲା ୧୮୦୫ ଖ୍ରୀଷ୍ଟାବ୍ଦର ଘଟଣା। ଏହାପରେ ଇଂରେଜଙ୍କ ବିରୁଦ୍ଧରେ ଅସନ୍ତୋଷ ବୃଦ୍ଧି ପାଇଲା। ବକ୍ସି ଜଗବନ୍ଧୁ ସ୍ଥାନୀୟ ପାଇକମାନଙ୍କୁ ଏକଜୁଟ କରିଥିଲେ। ପଞ୍ଚପଲ୍ଲୀର ଦୀନବନ୍ଧୁ ବେହେରା, ଅରଙ୍ଗାର ଦଳବେହେରା, ଘୁମସରର ଶାମ ବିଶୋଇ, ବାଣପୁରର ଦାମ ସୁବୁଦ୍ଧି, ଛତ୍ରଗଡର ରଥି ସାମନ୍ତସିଂହାର, ପିପିଲିର ହରି ମାନସିଂ ପ୍ରଭୃତି ବୀର ପାଇକମାନେ ବକ୍ସିଙ୍କର ଥିଲେ ସହଯୋଗୀ। ସେସବୁ ଖବର ଇତିହାସ ରଖିନାହିଁ। ବକ୍ସିଙ୍କୁ ଇଂରେଜମାନେ ବନ୍ଦୀ କରିବା ପର୍ଯ୍ୟନ୍ତ ଭଗବାନ ଦାସ କୃଷ୍ଣଚନ୍ଦ୍ର ଭ୍ରମରବର ରାୟ ଓ ସୋମନାଥ ଦଣ୍ଡସେନା ତାଙ୍କ ପାଖେ ପାଖେ ଥିଲେ। ପିଣ୍ଡିକ ବାହୁବଳେନ୍ଦ୍ର ବକ୍ସିଙ୍କର ଅତି ବିଶ୍ୱସ୍ତ ଥିଲେ। ବିଦ୍ରୋହର ପରିଚାଳନା ଦାୟିତ୍ୱ ବକ୍ସି ତାଙ୍କ ଉପରେ ନ୍ୟସ୍ତ କରିଥିଲେ।

୧୭୬୮ ମସିହାରେ ଜନ୍ମଗ୍ରହଣ କରିଥିବା ବାହୁବଳେନ୍ଦ୍ର ପାଇକ ବିଦ୍ରୋହ କାଳକୁ ଅମିତ ଶକ୍ତି ସଂପନ୍ନ ପୂର୍ଣ୍ଣ ବୟସ୍କ ଯୋଦ୍ଧା । ଗଜପତିଙ୍କଠାରୁ ଦଳେଇ ପଦବୀ ଲାଭକରି ରାଜପ୍ରଦତ୍ତ ନିଷ୍କର ଜମି ଭୋଗ କରୁଥିଲେ। କିନ୍ତୁ ଇଂରେଜମାନେ ଏ ଜମିରେ କର ବସେଇଲେ । ଲୁଣ ମାରିବାପାଇଁ ପ୍ରଜାମାନଙ୍କ ଉପରେ କଟକଣା କଲେ। କର ଆଦାୟ ବେଳେ ପ୍ରଜାମାନଙ୍କ ଉପରେ ଜୁଲମ କଲେ । ସେତେବେଳକୁ ବକ୍ସିଙ୍କ ବିଦ୍ରୋହ ସଂପର୍କରେ ଅବଗତ ଥିଲେ ବାହୁ ବଳେନ୍ଦ୍ର । ସେ ତାଙ୍କୁ ସମର୍ଥନ କଲେ। ସ୍ଥାନୀୟ ଯୁବକଙ୍କୁ ଏକାଠି କରି ସଶସ୍ତ୍ର ବିଦ୍ରୋହ କଲେ। ସରକାରୀ ଅଫିସ ଜଳାଇ ଦେଲେ। ଥାନା ଖଜଣା ଖାନା ଲୁଟିଲେ। ସାଧୁଚରଣ ମଙ୍ଗରାଜ ବିଷ୍ଣୁ ପାଇକରାୟ, ନାରାୟଣ ପରମଗୁରୁ, କରୁଣାକର ପାଟଯୋଷୀ, ସୂର୍ଯ୍ୟନାରାୟଣ ଦାସ ପ୍ରମୁଖ ତାଙ୍କର ସହଯୋଗୀ ଥିଲେ । ମେଣ୍ଟାଶାଳ ନିକଟରେ ଏକ ବରଗଛରେ ସହଯୋଗୀଙ୍କ ସହ ଲୁଚି ରହି ଗ୍ରାଣ୍ଡଟ୍ରଙ୍କ୍ ରୋଡ୍‌ରେ କଟକ ଯାଉଥିବା ଖଜଣାକୁ ଲୁଟି ନେଉଥିଲେ। ତାଙ୍କର ଆତ୍ମାସ୍ଥଳୀ ଥିବା ଏହି ବରଗଛକୁ ବହୁଦିନ ପର୍ଯ୍ୟନ୍ତ ଖଜଣାମାରୁ ବରଗଛ ବୋଲି ଲୋକେ କହୁଥିଲେ । ଇଂରେଜମାନଙ୍କୁ ନାକେଦମ କରି ଦେଉଥିବା ବାହୁବଳେନ୍ଦ୍ରଙ୍କୁ ଗୃହଦାହ, ଚୋରୀ ଡକାୟତି ଆଦି ଅପରାଧରେ ଇଂରେଜମାନେ ଦୀପାନ୍ତର ଦଣ୍ଡାଦେଶ ଦେଇଥିଲେ। କିନ୍ତୁ ରକ୍ଷୀମାନଙ୍କୁ ଚକ୍‌ମା ଦେଇ ସେ ଖସି ଯାଇଥିଲେ ଏବଂ ଆନ୍ଦୋଳନ ଅବ୍ୟାହତ ରଖିଥିଲେ। ବାହୁବଳେନ୍ଦ୍ରଙ୍କ ନେତୃତ୍ୱରେ ୧୮୧୭ ରୁ ୧୮୨୦ ପର୍ଯ୍ୟନ୍ତ କାର୍ଯ୍ୟ କରୁଥିବା ସୈନ୍ୟବାହିନୀ ଇଂରେଜମାନଙ୍କୁ ଥରହର କରିଦେଇଥିଲା । ଷାଠିଏ ଜଣ ଦେହରକ୍ଷୀ ସହ କଟକ କଲେକ୍ଟରଙ୍କୁ ଅତର୍କିତ ଆକ୍ରମଣ କରିଥିଲେ ବାହୁବଳେନ୍ଦ୍ରଙ୍କ ବାହିନୀ। କଟକ ଫେରିଯାଇ କଲେକ୍ଟର ୫୫୦ ଜଣ ସଶସ୍ତ୍ର ସୈନିକ ଆଣି ବାହୁବଳେନ୍ଦ୍ରଙ୍କୁ ଆକ୍ରମଣ କରିଥିଲେ। କିନ୍ତୁ ବାହୁବଳେନ୍ଦ୍ରଙ୍କ ପ୍ରତି ଆକ୍ରମଣରେ ସେମାନେ ଛତ୍ରଭଙ୍ଗ ଦେଇଥିଲେ ।

ଏଥର ଏହି ଦୁର୍ଦ୍ଧର୍ଷ ଯୋଦ୍ଧାଙ୍କୁ କାବୁ କରିବାପାଇଁ ଇଂରେଜମାନେ ଭିନ୍ନ ପନ୍ଥା ଗ୍ରହଣ କଲେ। ବାହୁବଳେନ୍ଦ୍ରଙ୍କ ବାଲ୍ୟବନ୍ଧୁ ମଳିପଡାର ଜାଗିରିଦାର ଧ୍ରୁବଜୟ ହରିଚନ୍ଦନଙ୍କୁ ପ୍ରଲୋଭନ ଦେଖାଇ ବାହୁବଳେନ୍ଦ୍ରଙ୍କୁ ଧରାଇ ଦେବାପାଇଁ କହିଥିଲେ। ଅକୃତଜ୍ଞ ଧ୍ରୁବଜୟ ବନ୍ଧୁଦ୍ରୋହ କଲେ। ମାଣବସା

ଗୁରୁବାର ପିଠା ଖାଇବା ପାଇଁ ବନ୍ଧୁ ବାହୁବଳେନ୍ଦ୍ରଙ୍କୁ ନିମନ୍ତ୍ରଣ କଲେ । ସରଳ ବିଶ୍ୱାସୀ ବାହୁବଳେନ୍ଦ୍ର ବନ୍ଧୁଙ୍କ ନିମନ୍ତ୍ରଣ ରକ୍ଷାକରି ପହଞ୍ଚିଗଲେ ଧ୍ରୁବଜୟଙ୍କ ଘରେ । ପୂର୍ବ ଷଡଯନ୍ତ୍ର ଅନୁସାରେ ଭାଙ୍ଗସହ ଦୁର୍ଦ୍ଦୁରାମଞ୍ଜିର ବିଷ ମିଶାଇ ପିଇବାପାଇଁ ଦେଇଥିଲେ ବିଶ୍ୱାସଘାତକ ଧ୍ରୁବଜୟ । ବିଷ ପ୍ରକ୍ରିୟାରେ ଅଚେତନ ହୋଇ ପଡିଥିବା ବାହୁବଳେନ୍ଦ୍ରଙ୍କୁ ଜଙ୍ଗଲରେ ଲୁଚି ରହିଥିବା ମେଜର ଥୋମାସ୍ ବନ୍ଦୀ କରି ବାରବାଟୀ ଦୁର୍ଗକୁ ଘେନିଯାଇଥିଲେ । ତଥାପି ମନୋବଳ ଭାଙ୍ଗିଯାଇନଥିଲା ତାଙ୍କର । ହସ୍ତ ଓ ପଦର ଶୃଙ୍ଖଳ ଥାଇ ଅସ୍ତ୍ରଶସ୍ତ୍ର ସଫା କରିବାର ସଜା ମିଳିଥିଲା । କୌଶଳ କ୍ରମେ ଗୋଟାଏ ତରବାରୀରେ ହସ୍ତ ପଦର ଶୃଙ୍ଖଳ କାଟି ସେ, କାରାଗାରରୁ ପଳାୟନ କରିଥିଲେ । କିନ୍ତୁ ଦୁର୍ଭାଗ୍ୟ, ଇଂରେଜ ଫଉଜ ଲଞ୍ଚରେ ଆସି ତାଙ୍କୁ ଗୁଳି ଚଳନା କରିଥିଲେ । ସେଇଠି ସେ ଟଳି ପଡିଥିଲେ ।

କହିବା ବାହୁଲ୍ୟ, ସର୍ବଭାରତୀୟ ସ୍ତରରେ ସେ ହେଉଛନ୍ତି ଦ୍ୱିତୀୟ ସହୀଦ୍ । ପ୍ରଥମ ଥିଲେ ଜୟୀ ରାଜଗୁରୁ । କିନ୍ତୁ ଇତିହାସ ତାଙ୍କୁ ଯଥାର୍ଥ ମାନ୍ୟତା ଦେଇନାହିଁ ।

ଇତିହାସ ସର୍ବଦା ବିଜେତାର ଗୁଣଗାନ କରେ । ବିଜିତ ହଜିଯାଆନ୍ତି ଇତିହାସର ଅନ୍ଧାରି ଇଲାକାରେ । ସେମାନଙ୍କ ତ୍ୟାଗ ତିତିକ୍ଷାକୁ ସ୍ୱୀକାର କରି ସେମାନଙ୍କୁ ଯଥାର୍ଥ ସମ୍ମାନ ପ୍ରଦର୍ଶନ କରିବା ଆମ ଉତ୍ତରସୂରୀଙ୍କର ନୈତିକ ଦାୟିତ୍ୱ । ବିଳମ୍ବରେ ହେଉ ପଛେ ୧୯୯୫ ମସିହା ଅଗଷ୍ଟ ୧୬ ତାରିଖରେ ଚନ୍ଦକା ଛକରେ ତାଙ୍କର ବ୍ରୋଞ୍ଜ ମୂର୍ତ୍ତି ନିର୍ମିତ ହୋଇଛି । ଆସନ୍ତୁ ଏହି ଅମର ସହୀଦ୍‌ଙ୍କ ବୀରତ୍ୱ ସାହସିକତା ଓ ଦେଶପ୍ରେମକୁ ପ୍ରଣାମ କରିବା । ଗଭୀର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରି ଆମ ସ୍ୱାର୍ଥ କେନ୍ଦ୍ରିକ ଜୀବନ ପ୍ରବାହରୁ ଉଓ୍ତୁରି ଆସିବା, ତାଙ୍କ ପରି ଦେଶ ଓ ଜାତିପାଇଁ ଟିକେ ଚିନ୍ତା କରିବା । ଏହାହିଁ ହେବ ଆମର ତାଙ୍କ ଅମରଆତ୍ମା ପ୍ରତି ଉଚିତ୍ କୃତଜ୍ଞତା ।



# ମଧୁବାବୁ ଓ ଶ୍ରୀମନ୍ଦିର

ମଧୁବାବୁ ଥିଲେ ସବୁ ବିତର୍କର ଉର୍ଦ୍ଧ୍ୱରେ। ପ୍ରଚଣ୍ଡ ପ୍ରତିଭା ସଂପନ୍ନ ମାନବବାଦ ମନ୍ତ୍ରରେ ଦୀକ୍ଷିତ ମଧୁବାବୁଙ୍କ ଜୀବନର ମୂଲ୍ୟବାନ୍ ସମୟତକ ଅତିବାହିତ ହୋଇଥିଲା କଲିକତା ମହାନଗରୀରେ। ମାତ୍ର ଷୋଳବର୍ଷ ବୟସରୁ ତାଙ୍କର ବିସ୍ତାରିତ କର୍ମମୟ ଜୀବନ ପର୍ଯ୍ୟନ୍ତ କଲିକତାର ମାଟିପାଣି ପବନରେ ପ୍ରଭାବିତ ଥିଲା। ସେଇ ଛାତ୍ର ଜୀବନରୁ ସେ ଖ୍ରୀଷ୍ଟଧର୍ମ ଦର୍ଶନର ତତ୍ତ୍ୱକୁ ନିବିଡ ଭାବରେ ଅନୁଭବ କରିବାର ସୁଯୋଗ ପାଇଥିଲେ। କଲିକତାରେ ୟଙ୍ଗ୍ ବେଙ୍ଗଲ୍ ଗୋଷ୍ଠୀର ଆଲେକ୍‌ଜାଣ୍ଡାର୍ ଡଫ୍‌ଙ୍କ ଐନ୍ଦ୍ରଜାଲିକ ବ୍ୟକ୍ତିତ୍ୱରେ ମଧୁବାବୁ ସମ୍ମୋହିତ ହୋଇଥିଲେ। ସେଇ କଞ୍ଚାବୟସରେ ସେ ଖ୍ରୀଷ୍ଟିୟାନ ଧର୍ମରେ ଦୀକ୍ଷିତ ହୋଇଥିଲେ ସିନା, ହିନ୍ଦୁଧର୍ମ ପ୍ରତି ତାଙ୍କର ସମ୍ମାନ ଓ ମମତ୍ୱବୋଧର ଅନ୍ତ ନଥିଲା। ସେ ଥିଲେ ଧର୍ମୋତ୍ତର। କୌଣସି ଧର୍ମର ସଂକୀର୍ଣ୍ଣ ଗଣ୍ଡି ଭିତରେ ସେ ବାନ୍ଧି ହୋଇ ରହିନଥିଲେ। ଧର୍ମର ଅର୍ଥ ସେ ବୁଝିଥିଲେ, ମାନବ ଜାତିର ସମ୍ମାନ। ଯେଉଁଠି ମାନବତ୍ୱର ଅବମାନନା ହେଉଥିଲା, ସେ ତାହାର ତୀବ୍ର ପ୍ରତିବାଦ କରୁଥିଲେ। ସେଇଥିପାଇଁ ତ ଖିଦିର୍‌ପୁରର ଗାର୍ଡେନ୍‌ରିଚ୍ ଚର୍ଚ୍ଚର ପ୍ରାର୍ଥନା ସଭାକୁ ଜଣେ କର୍ତ୍ତବ୍ୟ ପରାୟଣ ଆଙ୍ଗ୍ଲୋଇଣ୍ଡିୟାନ୍ ଖ୍ରୀଷ୍ଟିୟାନଙ୍କୁ ମଦ୍ୟପାନ ଓ ମଇଳା ମକଦ୍ଦରା ହୋଇଯିବାରୁ ତାଙ୍କୁ ବିତାଡିତ କରିଦେବା ଅତ୍ୟନ୍ତ କଷ୍ଟଦେଇଥିଲା ମଧୁବାବୁଙ୍କୁ। ସେ ଏହାର ଦୃଢ଼ ପ୍ରତିବାଦ କରିଥିଲେ। କର୍ତ୍ତୃପକ୍ଷ ତାଙ୍କ କଥା ନ ଶୁଣିବାରୁ

ସେହିଦିନ ଠାରୁ ସେ ଚର୍ଚ୍ଚଯିବା ଛାଡିଦେଇଥିଲେ । କିନ୍ତୁ ଧର୍ମଦର୍ଶନକୁ ପୂର୍ବପରି ସମ୍ମାନ ଦେଉଥିଲେ ।

ବହୁଦିନ କଲିକତାରେ ରହିବା ଫଳରେ ବଙ୍ଗଳା ଭାଷାରେ ସେ ଖୁବ୍ ଭଲ ଭାବରେ କଥାବାର୍ତ୍ତା କରୁଥିଲେ । ଏ ଭାଷା ପ୍ରତି ତାଙ୍କର ଦୁର୍ବଳତା ବଢ଼ିଯାଇଥିଲା । ଓଡ଼ିଶାକୁ ଆସିବା ପରେ ସୁଦ୍ଧା ସେ ଓଡ଼ିଆମାନଙ୍କ ସହ ବଙ୍ଗଳାରେ କଥାବାର୍ତ୍ତା ହେଉଥିଲେ, କିନ୍ତୁ କେହି ଓଡ଼ିଆ ଯଦି ତାଙ୍କୁ ବଙ୍ଗାଳୀ ଭାଷାରେ ଉତ୍ତର ଦେଉଥିଲା ସେ ଖୁବ୍ ରାଗିଯାଉଥିଲେ । ଓଡ଼ିଆ ଭାଷାର ସୁରକ୍ଷା ପାଇଁ ସାରାଜୀବନ ସଂଘର୍ଷ କରିଥିଲେ । ଏ ସଂଗ୍ରାମ ତାଙ୍କର ସେଇ ଛାତ୍ରଜୀବନରୁ ହିଁ ଆରମ୍ଭ ହୋଇଯାଇଥିଲା । ସେତେବେଳେ ବିଶ୍ୱବିଦ୍ୟାଳୟମାନଙ୍କରେ ସଂସ୍କୃତ ଭାଷାରେ ଆସୁଥିବା ପ୍ରଶ୍ନର ଉତ୍ତର ହିନ୍ଦୀ, ବଙ୍ଗାଳୀ ଓ ଅସମୀୟା ଭାଷାରେ ଦିଆଯାଉଥିବାବେଳେ ଓଡ଼ିଆ ଭାଷା ପାଇଁ କିଛି ବ୍ୟବସ୍ଥା ନଥିଲା । ସ୍ନାତକ ଶ୍ରେଣୀରେ ତାଙ୍କର ଗୋଟାଏ ପେପର୍ ଥିଲା ସଂସ୍କୃତ । ସେ ପରୀକ୍ଷାରେ ବସିବେ ତ ଓଡ଼ିଆରେ ହିଁ ଲେଖିବେ ବୋଲି ଅଡିବସିଲେ । ବହୁ ବାଦାନୁବାଦ ପରେ ଶେଷରେ କର୍ତ୍ତୃପକ୍ଷ ହାର ମାନିଲେ ଓ ସେ ଓଡ଼ିଆ ଭାଷାରେ ପ୍ରଶ୍ନର ଜବାବ ଦେବାପାଇଁ ଅନୁମତି ପାଇଲେ । ତା'ପରଠାରୁ ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଭାଷାରେ ଲେଖିବାପାଇଁ ଅନ୍ୟ ଆଗ୍ରହୀ ପରୀକ୍ଷାର୍ଥୀଙ୍କ ପାଇଁ ନିୟମ ପ୍ରଣୟନ ହେଲା ।

ସେ ବଙ୍ଗୀୟ ଲଳନା ବିବାହ କରିଥିଲେ । ଉଦ୍ଦେଶ୍ୟ ଥିଲା ଓଡ଼ିଶାର କୁଳରମଣୀମାନଙ୍କୁ ସୁଶିକ୍ଷିତା ସଂସ୍କାରଶୀଳା କରାଇ ମୁଖ୍ୟ ସ୍ରୋତରେ ସାମିଲ ହେବାପାଇଁ ଅନୁପ୍ରେରିତ କରିବା । କିନ୍ତୁ ଭାଗ୍ୟ ତାଙ୍କ ସପକ୍ଷରେ ନଥିଲା । ମାତ୍ର ଦଶବାରବର୍ଷର ଦାମ୍ପତ୍ୟ ଜୀବନ ପରେ ସେ ଇହଲୀଳା ସମ୍ବରଣ କରିଥିଲେ । ମାତ୍ର ତାଙ୍କର ଦୁଇ ପାଳିତା କନ୍ୟା ସୁଧା ଶୈଳବାଳାଙ୍କୁ ଓଡ଼ିଶାର ପାଣି ପବନରେ ବଢ଼ାଇଥିଲେ ଓ ସେମାନଙ୍କ ଦ୍ୱାରା ଓଡ଼ିଆ ନାରୀମାନଙ୍କର ଉତ୍‌ଥାନପାଇଁ ଅନେକ ଗଠନମୂଳକ କାର୍ଯ୍ୟ ସଂପନ୍ନ କରାଇଥିଲେ । ପ୍ରଥମ ଓଡ଼ିଆ ବାଳିକା ବିଦ୍ୟାଳୟ ଓ ପ୍ରଥମ ମହିଳା ମହାବିଦ୍ୟାଳୟ ତାଙ୍କରି ବାସଭବନ ଓ ତାଙ୍କରି ଝିଅଙ୍କ ନାମରେ ନାମିତ ହୋଇଛି ଶୈଳବାଳା ମହାବିଦ୍ୟାଳୟ ।

ଓଡ଼ିଆ ଜାତିର ପ୍ରାଣସ୍ପନ୍ଦନ ଓଡ଼ିଆର ଅସ୍ମିତା ଶ୍ରୀମନ୍ଦିର ଉପରେ ଇଂରେଜମାନଙ୍କର ଲଗାତାର ଷଡଯନ୍ତ୍ରକୁ ପ୍ରତିହତ କରିବାରେ ମଧୁବାବୁ ସମର୍ଥ ହୋଇଥିଲେ। ନିଜେ ଖ୍ରୀଷ୍ଟିୟାନ ହୋଇଥିବା ହେତୁ ମନ୍ଦିର ପ୍ରବେଶ ତାଙ୍କ ପାଇଁ ନିଷେଧ ଥିଲା। ଅରୁଣ ସ୍ତମ୍ଭ ନିକଟରେ ଠିଆହୋଇ ଜଗନ୍ନାଥଙ୍କ ପାଖରୁ ଏହି ପ୍ରେରଣା ପାଇଥିଲେ ବୋଲି ସେ ନିଜେ ସ୍ୱୀକାର କରିଛନ୍ତି। ଏପରି ଏକ ଦୁରୂହ କାମରେ ହାତଦେବା ମଧୁବାବୁଙ୍କ ଓକିଲାତି ବୃତ୍ତିପାଇଁ ଥିଲା ଏକ ଆହ୍ୱାନ।

ଠାକୁର ରାଜା ଦିବ୍ୟସିଂହ ଦେବ ଥିଲେ ଅନମନୀୟ ବ୍ୟକ୍ତିତ୍ୱ। ଓଡ଼ିଶାର ରାଜାମାନଙ୍କର ମଉଡ ମଣି। ସବୁ ରାଜାମାନଙ୍କ ମଧ୍ୟରେ ତାଙ୍କର ମର୍ଯ୍ୟାଦା ସ୍ୱତନ୍ତ୍ର। ଠାକୁରାଜାଙ୍କ ମର୍ଯ୍ୟାଦାହାନୀ ହେବାପରି ମନ୍ଦିରର କୌଣସି କାର୍ଯ୍ୟରେ ମରହଟ୍ଟାମାନେ ହସ୍ତକ୍ଷେପ କରିନଥିଲେ। ବରଂ ଜଗନ୍ନାଥ ଓ ଶ୍ରୀକ୍ଷେତ୍ର ପୁରୀର ପବିତ୍ରତା ସୁରକ୍ଷାପାଇଁ ମରହଟ୍ଟାମାନେ କଳାପାହାଡର ଧ୍ୱଂସକ୍ରିୟାକୁ ସମର୍ଥନ କରୁଥିବା କଟକର ନାଏବ ନାଦୀମ୍‌ଙ୍କ ବିରୁଦ୍ଧରେ ପ୍ରବଳ ସଂଗ୍ରାମ ଜାରି ରଖିଥିଲେ। ଇଂରେଜମାନେ ଓଡ଼ିଶା ଆକ୍ରମଣ ପରେ ଗଭର୍ଣ୍ଣର ଜେନେରାଲ୍ ଆଦେଶ ଦେଇଥିଲେ ଯେ, ଓଡ଼ିଆର ଆରାଧ୍ୟ ଦେବତା ଜଗନ୍ନାଥଙ୍କ ସେବାପୂଜା, ମନ୍ଦିରର ପାରମ୍ପରିକ ନୀତିକାନ୍ତି ଉପରେ ହସ୍ତକ୍ଷେପ କରିବେ ନାହିଁ। କିନ୍ତୁ କମ୍ପାନୀ ସବୁ ନିୟମ କାନୁନ୍ ଲଙ୍ଘନ କଲା। ପାଇକ ବିଦ୍ରୋହ ବେଳେ ରାଜା ପ୍ରଥମ ମୁକୁନ୍ଦ ଦେବ ଜୟୀ ରାଜଗୁରୁ ଆଦି ବୀରମାନେ ଇଂରେଜଙ୍କୁ ଦୃଢ଼ ପ୍ରତିରୋଧ କରି ସହୀଦ୍ ହୋଇଥିଲେ। ଇଂରେଜମାନେ ସେତିକିବେଳୁ ପୁରୀ ରାଜାଙ୍କ ଉପରେ ପ୍ରତିହିଂସା ପରାୟଣ ଥିଲେ। ୧୯୧୪ ଖ୍ରୀଷ୍ଟାବ୍ଦରେ ବଙ୍ଗଳାର ଲେଫ୍ଟନାଣ୍ଟ ଗଭର୍ଣ୍ଣର ସାର୍ ରିଚର୍ଡ ଟେମ୍ପଲ୍ ଓଡ଼ିଶା ଆସିବା ସମୟରେ ରାଜା ଦିବ୍ୟସିଂହ ଦେବ ତାଙ୍କୁ ଅପମାନିତ କରିଥିଲେ। ପୁରୀରାଜାଙ୍କୁ ଲକ୍ଷେ ରାଜାଙ୍କ ମଉଡ ମଣି କୁହାଯାଏ। ଅନ୍ୟ ରାଜାମାନଙ୍କ ଅପେକ୍ଷା ତାଙ୍କୁ ସ୍ୱତନ୍ତ୍ର ସମ୍ମାନ ଦିଆଯାଇଥାଏ। କିନ୍ତୁ ଲେଫ୍ଟନାଣ୍ଟ ଗଭର୍ଣ୍ଣରଙ୍କ ଆଗମନୀ ଉଦ୍ଦେଶ୍ୟରେ ଯେଉଁ ସଭା ହୋଇଥିଲା ସେଥିରେ ଦିବ୍ୟସିଂହଙ୍କ ପାଇଁ ସ୍ୱତନ୍ତ୍ର ସ୍ଥାନ ବଦଳରେ ଗଡଜାତ ରାଜାଙ୍କ ପଛରେ ଓ ଜମିଦାରମାନଙ୍କ ଆଗରେ ବସିବାପାଇଁ ବ୍ୟବସ୍ଥା ହୋଇଥିଲା। ରାଜା ଏଥିରେ ଅପମାନିତ

ହୋଇ ସଭା ତ୍ୟାଗ କରି ଚାଲିଯାଇଥିଲେ । ଇଂରେଜମାନେ ଦିବ୍ୟସିଂହ ଦେବଙ୍କ ଏହି ଔଦ୍ଧତ୍ୟ ଆଚରଣକୁ ବରଦାସ୍ତ କରିପାରିନଥିଲେ ।

ଏହାଛଡା ଆଉ ଗୋଟାଏ ଘଟଣାର ମଧ୍ୟ ଦବ୍ୟିସିଂହ ଦେବ ଇଂରେଜମାନଙ୍କ ରୋଷର ଶିକାର ହୋଇଥିଲେ । ଇଂରେଜମାନେ ପୂର୍ବ ରାଗକୁ ସୁଝାଇବା ପାଇଁ ସୁଯୋଗ ଖୋଜୁଥିଲେ । ଉପରୋକ୍ତ ଘଟଣା ଘଟିବାର ଅଳ୍ପ ଦିନ ପରେ ବନାରସ୍‌ର ପଣ୍ଡିତମାନେ ଗଣାପୋଛା କରି ପଞ୍ଜାଙ୍ଗରେ ପ୍ରକାଶ କଲେ ସେବର୍ଷ ଗୋବିନ୍ଦ ଦ୍ୱାଦଶୀ ଯୋଗ ପଡିଛି ଯାହା କି ବହୁବର୍ଷ ପରେ ଏହି ଯୋଗ । ତେଣୁ ଜଗନ୍ନାଥଙ୍କ ପାଖକୁ ସାରା ଭାରତରୁ ବହୁତ ଭକ୍ତ ଓ ଯାତ୍ରୀମାନେ ଆସିବାର ସମ୍ଭାବନା ରହିଛି । ଶାନ୍ତିଶୃଙ୍ଖଳା ରକ୍ଷା କରିବା ପାଇଁ ତାଙ୍କୁ ବଙ୍ଗଳା ସରକାରଙ୍କ ପାଖରୁ ନିର୍ଦ୍ଦେଶ ଆସିଲା । କିନ୍ତୁ ଦିବ୍ୟସିଂହ ଦେବ ଏହି ନିର୍ଦ୍ଦେଶନାମାକୁ ଚିରି ଫିଙ୍ଗିଦେଲେ । ତାଙ୍କର ଯୁକ୍ତି ଥିଲା, ମୁକ୍ତିମଣ୍ଡପଙ୍କ ଆଦେଶରେ ଶ୍ରୀଜଗନ୍ନାଥଙ୍କର ସକଳ ନୀତିକାନ୍ତି ହୁଏ, କୌଣସି ବାହ୍ୟ ଶକ୍ତିଙ୍କର ଏ ସଂପର୍କରେ କୌଣସି ମୁଣ୍ଡ ଖେଳାଇବାର ଆବଶ୍ୟକତା ନାହିଁ । ତେଣୁ ସେ କିଛି କରିପାରିବେ ନାହିଁ । ରାଜା ନିରବ ରହିଲେ ।

କିନ୍ତୁ ଘଟଣା ଦିନ ବଡଦାଣ୍ଡରେ ପ୍ରବଳ ଭିଡ ହେଲା । ସାରା ଭାରତରୁ ଆସିଥିଲେ ଯାତ୍ରୀ । ସେମାନଙ୍କୁ ନିୟନ୍ତ୍ରଣ କରିବା ଇଂରେଜଙ୍କ ପକ୍ଷରେ କାଠିକର ପାଠ ହେଲା । ବଡଦାଣ୍ଡରେ ନିଜେ କଲେକ୍ଟର ଆର୍ମିଷ୍ଟ୍ରଙ୍ଗ ଘୋଡା ପିଠିରେ ବସି ଭିଡ ନିୟନ୍ତ୍ରଣ କରିବାକୁ ଚେଷ୍ଟା କଲେ । ସେତିକିବେଳକୁ ପହଡ ପଡିଥିବାରୁ ସିଂହଦ୍ୱାର ବନ୍ଦ ଥିଲା । ଭିଡ ଅସମ୍ଭାଳ ହୋଇ ସିଂହଦ୍ୱାର ପାଖରେ ଠେଲାପେଲା ହେବାରୁ ସିଂହଦ୍ୱାର ଖୋଲିଗଲା । ଭକ୍ତମାନେ ମନ୍ଦିରଭିତରକୁ ପାଣି ସୁଅପରି ଛୁଟି ଚାଲିଲେ । ସେଇ ସୁଅ ଭିତରେ ଦଳାଚକଟା ହୋଇ ଅନେକ ମୃତାହତ ହେଲେ । ଜନ୍ ବୀମ୍‌ସ୍‌ଙ୍କ ବିବରଣୀ ଅନୁସାରେ ଆଠଜଣ ମୃତ୍ୟୁବରଣ କରିଥିବାର ସୂଚନା ଥିଲେ ସୁଦ୍ଧା ଏଥିରେ ଆହୁରି ଅଧିକ ଭକ୍ତ ମୃତ୍ୟୁ ବରଣ କରିଥିଲେ । ରାଜାଙ୍କ ପ୍ରତି ଭକ୍ତମାନଙ୍କର ସମ୍ମାନ ବୋଧ ରହିଛି, ସେ ଆସିଲେ ହୁଏତ ସ୍ଥିତି ଆୟତ୍ତକୁ ଆସିବ, ଏକଥା ଚିନ୍ତାକରି କଲେକ୍ଟର ରାଜାଙ୍କୁ ଆସିବାକୁ ଅନୁରୋଧ କଲେ । ରାଜା କିନ୍ତୁ ସିଧାସଳଖ ନାସ୍ତିବାଣୀ ଶୁଣେଇ କହିଲେ, ମନ୍ଦିର ବାହାରେ ଶାନ୍ତି ଶୃଙ୍ଖଳା ରକ୍ଷା କରିବା

ଦାୟିତ୍ୱ ସରକାରଙ୍କର, ରାଜାଙ୍କର ନୁହେଁ। ମନ୍ଦିର ଭିତରର ଶାନ୍ତିଶୃଙ୍ଖଳା ରକ୍ଷା ରାଜାଙ୍କ ଦାୟିତ୍ୱ। ସେତେବେଳକୁ ମନ୍ଦିର ଭିତରେ ରକ୍ତପାତ ହୋଇଥିବାରୁ, ମନ୍ଦିର ଶୋଧ କରିବାପାଇଁ ପୁଣିଥରେ ସିଂହଦ୍ୱାର ବନ୍ଦ ହୋଇ ସାରିଥିଲା।

ଏହି ଘଟଣା ପରେ ସରକାର ସାରା ଭାରତରେ ବହୁତ ବଦନାମ ହୋଇପଡିଥିଲା। ଦିବ୍ୟସିଂହ ଦେବଙ୍କୁ ଦୋଷୀ ସାବ୍ୟସ୍ତ କରିବାପାଇଁ ଇଂରେଜମାନଙ୍କ ପାଖରେ କୌଣସି ଯୁକ୍ତି ନଥିଲା।

ଦିବ୍ୟସିଂହ ଦେବଙ୍କ ଔଦ୍ଧତ୍ୟକୁ ଚୂର୍ଣ୍ଣ ବିଚୂର୍ଣ୍ଣିତ କରିବାପାଇଁ ସେମାନେ ସୁଯୋଗ ଉଣ୍ଟୁଥିଲେ। ଏଥି ପୂର୍ବରୁ ପାଇକବିଦ୍ରୋହ ପରେ ଓଡ଼ିଆ ପାଇକଙ୍କ ଦୁର୍ଦ୍ଦମନୀୟତାରେ ଅତିଷ୍ଠ ହୋଇ ଖୋର୍ଦ୍ଧା ରାଜ୍ୟକୁ ନିଲାମ ଡାକି ୧୦ ବର୍ଷ ପର୍ଯ୍ୟନ୍ତ ପଟ୍ଟା ଦେଇଦେବାକୁ ବିଜ୍ଞାପନ ଦେଇଥିଲେ ଇଂରେଜମାନେ। କିନ୍ତୁ କେହି ଗ୍ରାହକ ଏଥିପାଇଁ ସାହସ ନକରିବାରୁ ସେମାନଙ୍କ କୁଅଭିସନ୍ଧି ଚରିତାର୍ଥ ହୋଇପାରିନଥିଲା। ଏବେ ପୁଣି ଦିବ୍ୟସିଂହ ଦେବଙ୍କ ଉପରେ ଇଂରେଜମାନଙ୍କ କ୍ରୋଧ।

କଲେକ୍ଟର ଆର୍ମିଷ୍ଟ୍ରଙ୍ଗ୍ ଦିବ୍ୟସିଂହ ଦେବଙ୍କ ଉପରେ ପ୍ରତିଶୋଧ ନେବାପାଇଁ ସୁଯୋଗ ଖୋଜୁଥିଲେ। ଜଣେ ସନ୍ନ୍ୟାସୀଙ୍କର ସନ୍ଦେହ ଜନକ ମୃତ୍ୟୁରେ ଏକ ତରଫା ଭାବେ ରାଜାଙ୍କୁ ଦୋଷୀ ସାବ୍ୟସ୍ତ କରାଗଲା। ନରହତ୍ୟା ଅପରାଧରେ ତାଙ୍କୁ ରାତାରାତି ଗୋପନରେ କଳାପାଣି ବା ଇଣ୍ଡୋନେସିଆ ପଠେଇ ଦିଆଗଲା। ତାଙ୍କୁ ନିର୍ବାସନ କରିବା ପରେ ରାଜାଙ୍କ ନାମରେ 'ଅଙ୍କ'ର ପ୍ରଚଳନ ବନ୍ଦ କରିଦେଲେ ଇଂରେଜମାନେ। କଲେକ୍ଟରଙ୍କ ଆଦେଶ ବଳରେ ତାଙ୍କର ରାଜପଦବୀ ରଦ୍ଦ ହେଲା ଏବଂ ଶ୍ରୀମନ୍ଦିର ଉପରୁ ତାଙ୍କର କର୍ତ୍ତୃତ୍ୱ ମଧ୍ୟ ଲୋପ ହୋଇଗଲା।

ଇତ୍ୟବସରରେ ଦିବ୍ୟସିଂହ ଦେବଙ୍କ ମାତା ସୂର୍ଯ୍ୟମଣି ପାଟ ମହାଦେଈ ବ୍ରାହ୍ମଣ ପୁରୋହିତ ଓ ପାତ୍ରମନ୍ତ୍ରୀଙ୍କ ଗହଣରେ ଦିବ୍ୟସିଂହ ଦେବଙ୍କ ପାଞ୍ଚବର୍ଷର ନାବାଳକ ପୁତ୍ର ଜେନାମଣି ଜଗନ୍ନାଥଦେବଙ୍କୁ ଅଭିଷେକ କରାଇ ପୁରୀ ରାଜଗାଦୀରେ ବସାଇଲେ ଓ ନିଜେ ମନ୍ଦିରର ପରିଚାଳନା ଭାର ହାତକୁ ନେଲେ।

ଇଂରେଜମାନେ ଏଥିରେ ଆହୁରି ଉତ୍ତ୍ୟକ୍ତ ହୋଇଉଠିଲେ। ସେମାନେ ରାଣୀଙ୍କ ହାତରୁ ମନ୍ଦିର ପରିଚଳନା ଦାୟିତ୍ୱ କାଢ଼ିନେବା ସହ, ପୂର୍ବ ଚୁକ୍ତି ଅନୁସାରେ ରାଜପ୍ରାସାଦର ପରିଚାଳନା ପାଇଁ ଯେଉଁ ୨୧୩।୩।୧/୪ ପାହୁଲା ପାଉଥିଲେ ତାହା ବନ୍ଦ କରିଦେଲେ। ରାଜାଙ୍କର ଭୂସଂପତ୍ତିରୁ ଯାହା ଆୟ ହେଉଥିଲା କୋର୍ଟ ଆଦେଶ ବଳରେ ତାହା ମଧ୍ୟ ଇଂରେଜମାନେ ବ୍ୟାଜ୍ୟାପ୍ତି କରିନେଲେ।

ସୂର୍ଯ୍ୟମଣି ପାଟମହାଦେଈ ଇଂରେଜମାନଙ୍କର ଏପ୍ରକାର ଅନ୍ୟାୟ ଆଚରଣରେ ବ୍ୟତିବ୍ୟସ୍ତ ହୋଇ ଫୋର୍ଟ ଉଇଲିୟମ୍‌ର ଶାସନ ମୁଖ୍ୟଙ୍କୁ ଜଣାଇଲେ। ରାଜପ୍ରାସାଦର ଆର୍ଥିକ ସ୍ଥିତି ଦିନକୁ ଦିନ ଖରାପ ହୋଇଗଲା। ଋଣବାଡି କରି ଠାକୁରଙ୍କ ନୀତିକାନ୍ତି କରିବାକୁ ପଡିଲା। କିନ୍ତୁ ଇଂରେଜମାନେ କିଛି ଶୁଣିଲେ ନାହିଁ। ଅପରପକ୍ଷେ ରାଣୀଙ୍କ ହାତରୁ ମନ୍ଦିର ପରିଚାଳନା ଦାୟିତ୍ୱ କାଢ଼ି ନେଇ ଜଣେ ରିସିଭର୍ ନିଯୁକ୍ତି କରିବାପାଇଁ ସ୍ଥାନୀୟ ପ୍ରଶାସକ କୋର୍ଟରେ ଅପିଲ୍ କଲେ। କୋର୍ଟ ମଧ୍ୟ ତାଙ୍କ ଆବେଦନକୁ ଗ୍ରହଣ କରି ରିସିଭର୍ ନିଯୁକ୍ତି ପାଇଁ ରାୟ ଦେଇଦେଲେ। ଏ ଅନ୍ୟାୟକୁ ବରଦାସ୍ତ କରିପାରିଲେ ନାହିଁ ସୂର୍ଯ୍ୟମଣି ପାଟ ମହାଦେଈ। କିନ୍ତୁ କଲିକତା କୋର୍ଟରେ ଲଢ଼ିବାପାଇଁ ତାଙ୍କ ପାଖରେ ଆର୍ଥିକ ସମ୍ବଳ ନଥିଲା। ପ୍ରଜାମାନେ ମଧ୍ୟ ଠାକୁର ରାଜା ପରିବାରଙ୍କ ପ୍ରତି ଏପରି ଅପମାନଜନକ କାର୍ଯ୍ୟପନ୍ଥାରେ ଅସନ୍ତୁଷ୍ଟ ହେଲେ। ବିକ୍ଷୋଭ ମଧ୍ୟ ପ୍ରଦର୍ଶନ କଲେ। କିନ୍ତୁ କିଛି ଫଳ ହେଲାନାହିଁ। ଏହି ସମୟରେ ମଧୁବାବୁ କଲିକତାରେ ଥାଇ ସୁଦ୍ଧା ମନ୍ଦିର ଓ ରାଜପରିବାରର ଏହି ଦୂରବସ୍ଥା ସଂପର୍କରେ ଖବର ରଖୁଥିଲେ। ଇଂରେଜମାନଙ୍କର ଅନ୍ୟାୟର ପ୍ରତିବାଦ ସ୍ୱରୂପ କର୍ତ୍ତୃପକ୍ଷ ଓ ଜନସାଧାରଣଙ୍କ ମଧ୍ୟରେ ସଚେତନତା ସୃଷ୍ଟିପାଇଁ ଦୁଇଖଣ୍ଡ ଚିଠି ଉତ୍କଳଦୀପିକାର ସଂପାଦକଙ୍କୁ ସେ ପଠାଇଥିଲେ। ଯଦିଓ ଏଥିରେ ପାଗଳ ଛଦ୍ମନାମଥିଲା, ଏହା ଯେ ମଧୁବାବୁଙ୍କ ଲେଖା, ତାହା ଜାଣିବାପାଇଁ ବେଶି କଷ୍ଟହେଉ ନଥିଲା। ଚିଠିଟିରେ ସେ ନିଜ ସ୍ୱପ୍ନ ବୃତ୍ତାନ୍ତ ଓ ଚିଠିର ଚିରିକୁଟିମାନ ସଂଗ୍ରହ କରି ଯାହା ପାଇଥିଲେ ତାହା କହୁଛନ୍ତି ଛଳରେ ଗୁଡାଏ ମୌଳିକ ଓ ବୈଧାନିକ ତଥ୍ୟ ବିଚାର ବିମର୍ଶ ପାଇଁ ଜନସାଧାରଣଙ୍କ ଉପରେ ଛାଡି ଦେଇଥିଲେ।

ମନ୍ଦିର ମାମଲା ସହ ମଧୁବାବୁ ପ୍ରତ୍ୟକ୍ଷ ଭାବରେ ଜଡିତ ହୋଇଗଲେ ମହାରାଣୀ ସୂର୍ଯ୍ୟମଣି ପାଟମହାଦେଈ ତାଙ୍କୁ ଆହ୍ୱାନ କରିବାପରେ। ଏକେ ତ ମହାରାଣୀ କପର୍ଦ୍ଦକଶୂନ୍ୟ ଥିଲେ, ପୁଣି ଇଂରେଜମାନଙ୍କ ବିରୁଦ୍ଧରେ ଲଢ଼ି ଜିତିବା ଥିଲା କାଠିକର ପାଠ। କିନ୍ତୁ ମହାରାଣୀଙ୍କର ଭରସା ଥିଲା ମଧୁବାବୁଙ୍କ ଉପରେ। ମଧୁବାବୁ ମଧ୍ୟ ଏଇପରି ଏକ ସୁଯୋଗକୁ ସୌଭାଗ୍ୟ ବୋଲି ମଣିଲେ।

ମଧୁବାବୁ ଅକ୍ଲାନ୍ତ ପରିଶ୍ରମ କରି କେସ୍ ଲଢ଼ିଲେ। ଇଂରେଜମାନେ ମୁକୁନ୍ଦଦେବଙ୍କ ରାଜ ଅଭିଷେକକୁ ଅବୈଧ ବୋଲି ଦର୍ଶାଉଥିଲେ। କାରଣ ଦିବ୍ୟସିଂହ ଦେବ ବଞ୍ଚିଥାଉ ଥାଉ ସେ ରାଜା ହୋଇପାରିବେ ନାହିଁ, ତେଣୁ ଜଣେ ରିସିଭର ନିଯୁକ୍ତିର ଯଥାର୍ଥତା ରହିଛି ବୋଲି ସେମାନେ ଦାବୀ କରୁଥିଲେ। ନୀଳାଦ୍ରି ମହୋତ୍ସବ ଶାସ୍ତ୍ର, ମୁକ୍ତିମଣ୍ଡପର ପଣ୍ଡିତମାନଙ୍କ ବାକ୍ୟସମୂହ ଦରିଆପାରି ହୋଇ ଆସିଥିବା ଜଗନ୍ନାଥ ମନ୍ଦିରର ପରମ୍ପରା ସହ ପରିଚିତ ନଥିବା ଇଂରେଜମାନଙ୍କ ନିକଟରେ ମୂଲ୍ୟହୀନ ବୋଲି ସେ ଜାଣିଥିଲେ। ତେଣୁ ଖୋର୍ଦ୍ଧା ରାଜବଂଶର ବଂଶାବଳୀ, ମାଦଳାପାଞ୍ଜି, ଶ୍ରୀମନ୍ଦିରର ଇତିହାସ ଆଦି ଅନୁଧ୍ୟାନ କରି ଶେଷରେ ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟ ରାମଚନ୍ଦ୍ର ଦେବଙ୍କ ପ୍ରସଙ୍ଗ ତାଙ୍କ ତର୍କ ଅନ୍ତର୍ଭୁକ୍ତ କଲେ। ଯିଏ କି ଠାକୁର ରାଜା ହୋଇ ସୁଦ୍ଧା ତକୀ ଖାଁର ଭଉଣୀ ରେଜିଆଙ୍କୁ ବିବାହ କରିଥିବାରୁ ମୁସଲମାନ ହୋଇଥିଲେ ଓ ଠାକୁରଙ୍କ ସେବା ପୂଜାରୁ ବଞ୍ଚିତ ହୋଇଥିଲେ। ତେଣୁ ଦିବ୍ୟସିଂହ ଦେବ କଳାପାଣିରୁ ଫେରିଆସିଲେ ସୁଦ୍ଧା ସେ ଯେହେତୁ କଳାପାଣି ଯାଇଛନ୍ତି ତେଣୁ ତାଙ୍କୁ ଶ୍ରୀମନ୍ଦିର ସେବାପୂଜାରୁ ମୁକ୍ତିମଣ୍ଡପ ବଞ୍ଚିତ କରିବ। ଜଗନ୍ନାଥଙ୍କ ନୀତିକାନ୍ତି ପାଇଁ ରାଜାଙ୍କର ଆବଶ୍ୟକତା ନିହାତି ଜରୁରୀ ଥିବାରୁ ଜଗନ୍ନାଥ ଜେନାମଣିଙ୍କ ଓରଫ୍ ମୁକୁନ୍ଦ ଦେବଙ୍କ ରାଜାଭିଷେକ ଯେ ବୈଧ ତାହା ବୁଝାଇବା ପାଇଁ ବେଶି କଷ୍ଟ ସ୍ୱୀକାର କରିବାକୁ ପଡିଲା ନାହିଁ ମଧୁବାବୁଙ୍କୁ। ଏହାଛଡା ମହାରାଣୀଙ୍କ ମନ୍ଦିର ପରିଚାଳନାରେ କୌଣସି ତ୍ରୁଟି ନଦର୍ଶାଇ ରିସିଭର୍ ନିଯୁକ୍ତି ପାଇଁ ସ୍ଥାନୀୟ ପ୍ରଶାସକ କରିଥିବା ଆବେଦନକୁ ମଧ୍ୟ ସେ ଅବୈଧ ବୋଲି ଯୁକ୍ତି ଦର୍ଶାଇଥିଲେ।

ଏଥିପାଇଁ ତାଙ୍କୁ ପୁରୀଠାରୁ କଲିକତା ହାଇକୋର୍ଟ ପର୍ଯ୍ୟନ୍ତ ଲଢ଼ି ଲଢ଼ି

ଯିବାକୁ ହୋଇଥିଲା। ତାହା ପୁଣି ବିନା ପଇସାରେ। ମଧୁବାବୁଙ୍କର ଏହି ସଂଗ୍ରାମ ଓ ବିଜୟ କିପରି ସ୍ୱାର୍ଥଶୂନ୍ୟ ଥିଲା ତାହା ଇଂରେଜଙ୍କ ଅଣ୍ଡର ସେକ୍ରେଟାରୀ ମିଃ ବ୍ଲାଇଡ୍‌ଙ୍କ ସହ ତାଙ୍କ କଥୋପକଥନରୁ ସ୍ପଷ୍ଟ ହୋଇପାରିବ। ପ୍ରଖ୍ୟାତ ସାହିତ୍ୟିକ ସୁରେନ୍ଦ୍ର ମହାନ୍ତି ତାଙ୍କ ଶତାବ୍ଦୀର ସୂର୍ଯ୍ୟ ପୁସ୍ତକରେ ଯେପରି ଏ ପ୍ରସଙ୍ଗକୁ ନାଟକୀୟ ଶୈଳୀରେ ଉପସ୍ଥାପନ କରିଛନ୍ତି, ତାହାର ଉଦ୍ଧୃତି କରିବାର ଲୋଭକୁ ସମ୍ବରଣ କରିପାରୁନାହିଁ।

"ବ୍ଲାଇଡ ମଧୁସୂଦନଙ୍କ ଉପରେ ଗୋଟାଏ ବିଦ୍ରୂପପୂର୍ଣ୍ଣ ଦୃଷ୍ଟି ହାଣି ରୁମାଲରେ ପିନ୍‌ସନେଜ୍ ଚଷମା ପଟକ ପୋଛି ପୋଛି କହିଲେ- 'ମିଷ୍ଟର ଦାସ୍। ମୁଁ ଶୁଣିଛି ଆପଣ ଜଣେ ନୈଷ୍ଠିକ ଖ୍ରୀଷ୍ଟିୟାନ୍। ଏହା ସତ୍ତ୍ୱେ ହିନ୍ଦୁମାନଙ୍କର ମନ୍ଦିର ଓ ସେମାନଙ୍କ ସେବାପୂଜା ବ୍ୟାପାରରେ ଓକିଲାତି କରି ରାଣୀଙ୍କଠାରୁ ଆପଣଙ୍କ ମୋଟା ଫିଜ୍ ଉପାର୍ଜନରେ ତ ବାଧା ପଡୁନାହିଁ।"

ବ୍ଲାଇଡ୍‌ଙ୍କ ଦୁଇ ପିଙ୍ଗଳ ଆଖି ଭିତରକୁ ଚାହିଁ ମଧୁସୂଦନ ଉତ୍ତରଦେଲେ - "ହିନ୍ଦୁମାନଙ୍କ ମନ୍ଦିରରୁ ରାଜସ୍ୱ ଆଦାୟ କରି ଯଦି ଖ୍ରୀଷ୍ଟିୟାନ ଗବର୍ଣ୍ଣମେଣ୍ଟକୁ ସ୍ପର୍ଶ ଦୋଷ ଲାଗୁନାହିଁ, ତାହେଲେ ମୋର ଓକିଲ ଫିଜ୍ ନେବାରେ ବାଧା କେଉଁଠି ? କିନ୍ତୁ ଆପଣଙ୍କ ଅବଗତ ପାଇଁ ମୁଁ ଆପଣଙ୍କୁ କହିପାରେ ମିଷ୍ଟର ବ୍ଲାଇଡ୍, ରାଣୀ ସୂର୍ଯ୍ୟମଣି ପାଟମହାଦେଈ ଗବର୍ଣ୍ଣମେଣ୍ଟକୁ ପନ୍ଦର ଶହ ଟଙ୍କା ସୁଦ୍ଧା ଦେବାପାଇଁ ହେଲେ ମୋତେ ମୋର ଫିଜ୍‌ରୁ ବଞ୍ଚିତ ହେବାପାଇଁ ପଡିବ। କାରଣ ରାଣୀ ବର୍ତ୍ତମାନ କପର୍ଦ୍ଦକ ଶୂନ୍ୟ।

ମଧୁବାବୁ ଓଡ଼ିଆଙ୍କ ସ୍ୱାଭିମାନ ସୁରକ୍ଷା ପାଇଁ ସତତ ଚେଷ୍ଟିତ ଥିଲେ। ପୁରୀ ମନ୍ଦିର ଓ ଶ୍ରୀଜଗନ୍ନାଥ ତ ସହଜେ ଓଡ଼ିଆଙ୍କ ଅସ୍ମିତାର ପରିଚାୟକ। ତେଣୁ ନିଜେ ଖ୍ରୀଷ୍ଟିୟାନ ଧର୍ମରେ ଦୀକ୍ଷିତ ହେଲେ ସୁଦ୍ଧା ତାହା ତାଙ୍କ ପାଇଁ କିଛି ଫରକ୍ ପଡିନଥିଲା। ସୂର୍ଯ୍ୟମଣି ପାଟମହାଦେଈଙ୍କୁ ନ୍ୟାୟ ପ୍ରାପ୍ତିରେ ସେ ସହାୟକ ହୋଇଥିଲେ। ପୁରୀମନ୍ଦିର ପରିଚାଳନା କୁଚକ୍ରୀ ବିଧର୍ମୀଙ୍କ ଠାରୁ ମୁକ୍ତି ପାଇଥିଲା।



# ଅନନ୍ୟ ବ୍ୟକ୍ତିତ୍ୱ ଗୋପବନ୍ଧୁ

ଉତ୍କଳମଣି ଗୋପବନ୍ଧୁଙ୍କ ବହୁମୁଖୀ ଓ ସଂପ୍ରସାରିତ ବ୍ୟକ୍ତିତ୍ୱକୁ ଆକଳନ କରିବା ଏତେ ସହଜ ସାଧ ନୁହେଁ। ଓଡ଼ିଶାର ଦୁଃଖ, ଦାରିଦ୍ର୍ୟ, ଶୋଷଣ, କଷଣ, ଆଶା, ଆକାଂକ୍ଷା, ଉତ୍‌ଥାନ, ପତନ, ଗୌରବ ଓ ଅପମାନ ସହ ଜାତୀୟ ଦୁର୍ଗତିକୁ ଅତି ପାଖରୁ ସେ ନିବିଡ଼ ଭାବରେ ଅନୁଭବ କରିଥିଲେ। ସ୍ୱାଧୀନତା ସଂଗ୍ରାମରେ ସକ୍ରିୟ ଯୋଦ୍ଧା ଥିଲେ। ଓଡ଼ିଆମାନଙ୍କର ସ୍ୱାଭିମାନ ସୁରକ୍ଷାପାଇଁ ମୁଖ୍ୟସ୍ରୋତରେ ଓଡ଼ିଆମାନଙ୍କୁ ସାମିଲ କରିବାପାଇଁ ସେ ଯତ୍‌ପରୋନାସ୍ତି ଚେଷ୍ଟା କରୁଥିଲେ। ତାଙ୍କର ଯେମିତି ପରମ୍ପରା ପ୍ରୀତି ଥିଲା, ସେହିପରି ପ୍ରଖର ଦୂରଦୃଷ୍ଟି ଥିଲା। ଓଡ଼ିଆ ଓ ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି କଳ୍ପେ ଯେଉଁ ଉତ୍କଳ ସମ୍ମିଳନୀ ଗଠନ କରାଯାଇଥଲା ତା' ସଂପର୍କରେ ମଧୁବାବୁ କହୁଥିଲେ -

ଏହି ସମ୍ମିଳନୀ ଜାତି ପ୍ରାଣ ସିନ୍ଧୁ
କୋଟି ପ୍ରାଣ ବିନ୍ଦୁ ଧରେ
ତୋର ପ୍ରାଣବିନ୍ଦୁ ମିଶାଇ ଦେ ଭାଇ
ଡେଇଁ ପଡି ସିନ୍ଧୁ ନୀରେ।

ଏହି ସମ୍ମିଳନୀ ଥିଲା ଓଡ଼ିଆମାନଙ୍କର ଦମ୍ଭ, ଶକ୍ତି ଓ ସାମର୍ଥ୍ୟର ଉତ୍ସ। ସ୍ୱାଭିମାନର ପ୍ରତୀକ। ଆଶା ଆକାଙ୍‌କ୍ଷା ଚରିତାର୍ଥ ପାଇଁ ପ୍ରକୃଷ୍ଟ ମାଧ୍ୟମ। ଏହି ସମ୍ମିଳନୀ ସଂପର୍କରେ ଗୋପବନ୍ଧୁ କହୁଥିଲେ "ଏହି ସମ୍ମିଳନୀକୁ ଗୋଟାଏ ଗାଡିଆ ପରି ପକାଇ ରଖିବା ଉଚିତ୍ ନୁହେଁ। ଭାରତର ଜାତୀୟ ଆନ୍ଦୋଳନ

ସମୁଦ୍ର ସଙ୍ଗେ ସଂପର୍କ ନରହିଲେ ଏହାର କଦାପି ବଳ ତେଜ ଆସିବ ନାହିଁ।

ଚିନ୍ତା ଚେତନା, ବିଚାର ବୋଧରେ ଉତ୍କଳମଣି ଥିଲେ ତତ୍‌କାଳୀନ କାଳଖଣ୍ଡର ଅନେକ ଚିନ୍ତାନାୟକ ଓ ପ୍ରତିଭାଧାରଙ୍କ ଠାରୁ ବେଶ୍ ଉର୍ଦ୍ଧ୍ୱରେ। ଓଡ଼ିଆ ସାହିତ୍ୟରେ ଆଧୁନିକ ଯୁଗର ସୂତ୍ରଧର ରୂପେ ରାଧାନାଥ ରାୟଙ୍କୁ ସ୍ୱୀକାର କରାଯାଏ। ଓଡ଼ିଆ ସାହିତ୍ୟକୁ ଗଡ୍ଡାଳିକା ପ୍ରବାହରୁ ମୁକ୍ତି କରିବାରେ ଅବଶ୍ୟ ରାଧାନାଥ ରାୟଙ୍କ ଭୂମିକା ଅନସ୍ୱୀକାର୍ଯ୍ୟ। ବୈଦେଶିକ କଥାବସ୍ତୁକୁ ଆଣି ଓଡ଼ିଆ କାବ୍ୟ ଜଗତକୁ ଯେଉଁ ମୋଡ ଦେଲେ, ସାହିତ୍ୟର ଯେଉଁ ଆଙ୍ଗିକ ପରିବର୍ତ୍ତନ କଲେ ସେ ଦୃଷ୍ଟିରୁ ରାଧାନାଥଙ୍କୁ ଶ୍ରେୟତା ଦିଆଯାଇପାରେ। ମାତ୍ର ଭାବବସ୍ତୁରେ ରାଧାନାଥୀୟ ସାହିତ୍ୟ ରୀତିଯୁଗୀୟ ସାହିତ୍ୟଠାରୁ ବେଶି ଦୂରବର୍ତ୍ତୀ ନୁହେଁ। ସେହି ଆଭିଜାତ୍ୟ ବର୍ଗର ପ୍ରେମ ପ୍ରଣୟ ବିରହ ମିଳନ ସର୍ବସ୍ୱ ଥିଲା ତାଙ୍କର କାବ୍ୟ ସମୂହ। କିନ୍ତୁ ଗୋପବନ୍ଧୁଙ୍କ ସାହିତ୍ୟ ସର୍ଜନାରେ ପ୍ରଥମଥର ପାଇଁ ଅନେକ ନୂତନ ପ୍ରସଙ୍ଗ ଆସିଥିଲା। ତାହାହିଁ ସାହିତ୍ୟରେ ଆଧୁନିକତା ଅଥବା ଆଧୁନିକ ଚେତନା। ଇଂରେଜ ଶାସକମାନଙ୍କୁ ଆମ ଦେଶରୁ ବିତାଡିତ କରିବାପାଇଁ ସ୍ୱଦେଶୀ ମଣିଷଙ୍କ ମଧ୍ୟରେ ଜାତୀୟ ଚେତନା ଜାଗ୍ରତ କରିବାର ଆବଶ୍ୟକତା ଥିଲା ଅତ୍ୟନ୍ତ ଜରୁରୀ। ମଧୁବାବୁ, ଫକୀରମୋହନ, ମଧୁସୂଦନ ରାଓ ଆଦି ସାହିତ୍ୟ ସ୍ରଷ୍ଟାଙ୍କ ସାହିତ୍ୟରେ ଦେଶପ୍ରେମର ଯେଉଁ ବାର୍ତ୍ତା ଥିଲା ତାହା ପ୍ରାୟତଃ ଓଡ଼ିଶାଭିମୁଖୀ, କିନ୍ତୁ ଗୋପବନ୍ଧୁଙ୍କର କାବ୍ୟ କବିତାରେ ଥିଲା ସର୍ବଭାରତୀୟ ଚେତନାକୁ ଉଜ୍ଜୀବିତ କରିବାର ପ୍ରାଣଶକ୍ତି। ଏହି ଜାତୀୟ ଚେତନା ହିଁ ପ୍ରଥମକରି ଓଡ଼ିଆ ସାହିତ୍ୟକୁ ଆଣିଥିଲେ ଉତ୍କଳମଣି ଗୋପବନ୍ଧୁ। ସେ ବିଳାସରେ ଲେଖୁନଥିଲେ, ପରାଧୀନ ଓ ପୀଡ଼ନକ୍ଲିଷ୍ଟ ଜନତାର ଦୁଃଖ ଯନ୍ତ୍ରଣାରେ ଅଭିଭୂତ ହୋଇ ଯାଉଥିଲେ। ସେହି ଚର୍ମଭେଦୀ ଅନୁଭବ ଥିଲା ତା'ଙ୍କ ଲେଖନୀର ପୁଞ୍ଜି। ଓଡ଼ିଶାର ବୁଦ୍ଧିଜୀବୀ ଓ ରାଜାରାଜୁଡାମାନେ ଦେଶରେ ଇଂରେଜଶାସନକୁ ଚାହୁଁ ନଥିଲେ ସତ କିନ୍ତୁ ସେପର୍ଯ୍ୟନ୍ତ ଜାତୀୟ ଆନ୍ଦୋଳନରେ ଯୋଗଦେଇ ବନ୍ଦୀ ହୋଇନଥିଲେ। ସେ ସମୟରେ ସମଗ୍ର ଭାରତ ବର୍ଷରେ ବୁଦ୍ଧିଜୀବୀ ଓ ସମାଜସେବୀମାନଙ୍କ ମଧ୍ୟରେ ଦୁଇ ପ୍ରକାର କାର୍ଯ୍ୟଧାରା ପରିଲକ୍ଷିତ ହୋଇଥିଲା। ପ୍ରଥମ ବର୍ଗର ସମାଜସେବୀ ନିଜ ନିଜ ସ୍ଥାନୀୟ ସମସ୍ୟା ନେଇ ବ୍ୟସ୍ତ ଥିଲେ।

ଇଂରେଜମାନଙ୍କ ଶୋଷଣ ମୁଖୀ ଶାସନରେ ଆକ୍ରାନ୍ତ ହୋଇ ବିପର୍ଯ୍ୟସ୍ତ ହୋଇଥିବା ପ୍ରଦେଶଗୁଡିକ ନିଜର ଭୌଗୋଳିକ ସୀମା ସୁରକ୍ଷା ସହ ଅର୍ଥନୈତିକ ଶିକ୍ଷା ଓ ସାମାଜିକ ସଙ୍କଟ ଗୁଡିକୁ ସୁଧାରିବା ଦିଗରେ ଗୁରୁତ୍ୱ ଦେଉଥିଲେ। ଦ୍ୱିତୀୟ ବର୍ଗର ବୁଦ୍ଧିଜୀବୀ ଦୂରଦୃଷ୍ଟି ସଂପନ୍ନମାନଙ୍କ ଯୁକ୍ତିଥିଲା, ଇଂରେଜମାନେ ଦେଶରୁ ବିତାଡିତ ହୋଇଗଲେ ସ୍ଥାନୀୟ ସମସ୍ୟା ସବୁ ଆପେ ଆପେ ସମାଧାନ ହୋଇଯିବ। ଇଂରେଜମାନଙ୍କ ଉପରେ ଚାପଦେଇ ଏସବୁ ହାସଲ କରିବା ପରିବର୍ତ୍ତେ ଦେଶରୁ ଇଂରେଜମାନଙ୍କୁ ତଡିବା ପାଇଁ ସଂଗ୍ରାମ କରିବା ଉଚିତ୍। ଗୋପବନ୍ଧୁ ଉଭୟ କ୍ଷେତ୍ରପାଇଁ କାର୍ଯ୍ୟ କରୁଥିଲେ। ପ୍ରାରମ୍ଭିକ ପର୍ଯ୍ୟାୟରେ ସେ ବାରିଷ୍ଟରୀ ପାସ୍ କରି ଓକିଲାତି ଆରମ୍ଭ କରିଦେଇଥିଲେ। କିନ୍ତୁ ଏଥିରେ ସନ୍ତୁଷ୍ଟ ନହୋଇ ସେ ଶିକ୍ଷକତା ପାଇଁ ନିଷ୍ପତ୍ତି ନେଲେ। ସତ୍ୟବାଦୀ ବନ ବିଦ୍ୟାଳୟ ପ୍ରତିଷ୍ଠା ଥିଲା ତାଙ୍କରି ପରିକଳ୍ପନା। ଏହାକୁ କୁହାଯାଉଥିଲା ମଣିଷ ଗଢ଼ା କାରଖାନା। ଛାତ୍ରମାନଙ୍କୁ ଦେଶ ପ୍ରେମରେ ଉଦ୍‌ବୃଦ୍ଧ କରି ଆଗାମୀ ଦିନ ପାଇଁ ଗୋଟାଏ ଗୋଟାଏ  ଯୋଦ୍ଧା ରୂପେ ପ୍ରସ୍ତୁତ କରାଯାଉଥିଲା।

ସ୍ଥାନୀୟ ସମସ୍ୟା ପ୍ରତି ସଚେତନ ରହି ସେ ଲଢୁଥିଲେ ସ୍ୱରାଜପାଇଁ। କନିକା ରାଜାଙ୍କ ଶୋଷଣ ପୀଡନକୁ ସମାଲୋଚନା କରି ଖବରକାଗଜରେ ସମ୍ବାଦ ବାହାରକରି ସେ ରାଜଦୋଷର ଶିକାର ହୋଇଥିଲେ। ମହାତ୍ମାଗାନ୍ଧୀଙ୍କ ଅସହଯୋଗ ଆନ୍ଦୋଳନରେ ଝାସ ଦେଇଥିବାରୁ ଇଂରେଜମାନଙ୍କର କୋପ ଦୃଷ୍ଟି ତାଙ୍କ ଉପରେ ପଡିଲା। କନିକା ପ୍ରଜା ଆନ୍ଦୋଳନକୁ ଉତ୍ସାହିତ କରୁଥିବାରୁ ତାଙ୍କୁ ଜେଲ ଭୋଗିବାକୁ ପଡିଥିଲା। ଅବଶ୍ୟ ଏଥିରୁ ଶୀଘ୍ର ମୁକୁଳି ଆସିଥିଲେ। କିନ୍ତୁ ମହାତ୍ମାଗାନ୍ଧିଙ୍କ ଅସହଯୋଗ ଆନ୍ଦୋଳନରେ ଯୋଗଦେଇଥିବାରୁ ତାଙ୍କୁ ହଜାରିବାଗ୍ ଜେଲ୍‌ରେ ଦୁଇବର୍ଷ ରହିବାକୁ ପଡ଼ିଥିଲା। ସେ ଥିଲେ ଓଡ଼ିଶାର ପ୍ରଥମ ରାଜନୈତିକ ବନ୍ଦୀ। ସେହି ଜେଲ୍‌ରେ ଥିବା ସମୟରେ ସେ ଲେଖିଥିଲେ 'ବନ୍ଦୀର ଆତ୍ମକଥା' ଓ 'କାରା କବିତା'। ସେ କବିତା ସବୁ ସେତେବେଳେ ସମାଜରେ ଧାରାବାହିକ ଭାବେ ପ୍ରକାଶିତ ହେଉଥିଲା। ଏହି ବନ୍ଦୀ ଜୀବନରେ ହିଁ ସେ ଲେଖିଥିଲେ – 'ଧର୍ମପଦ', 'ନଚିକେତା ଉପାଖ୍ୟାନ' ଓ 'ଗୋ ମହାତ୍ମ୍ୟ' ଆଦି ପୁସ୍ତକ। ଏହି ସବୁ ସୃଷ୍ଟିରେ ଥିଲା ବିଶ୍ୱଜନତା ସହ ଏକାତ୍ମ ହେବାର ବାର୍ତ୍ତା। ମାନବ ଜାତିର କଥା ସେ କହୁଥିଲେ –

ନିଜ ସ୍ୱାର୍ଥ ଲାଗି ଜାତନୁହେଁ ହିନ୍ଦୁ
ବିଶ୍ୱେହିତେ ତାର ପ୍ରତି ରକ୍ତ ବିନ୍ଦୁ ।

ତାଙ୍କ ସୃଷ୍ଟି କେବଳ ପ୍ରେମ ପ୍ରଣୟ ବିରହ ମିଳନ କଥା କହିନାହିଁ, ଦେଶ ଓ ଜାତି ପାଇଁ ନିଜକୁ ଉତ୍ସର୍ଗ କରିବାର ଯେପରି ବ୍ୟାକୁଳତା ପ୍ରକାଶ ପାଇଛି ତାଙ୍କ କାବ୍ୟକବିତାରେ ତାହା ଅନ୍ୟତ୍ର ପରିଲକ୍ଷିତ ହୁଏନାହିଁ । କେବଳ ଲେଖିବାପାଇଁ ସେ ଏହା ଲେଖିନାହାନ୍ତି । ବାସ୍ତବ କ୍ଷେତ୍ରରେ ସୁଦ୍ଧା ସେ ନିଜକୁ ଦୁଃଖୀ, ଦରିଦ୍ର, ପୀଡ଼ିତ ଜନତାର ମୁହଁରେ ହସ ଫୁଟେଇବା ପାଇଁ ତିଳ ତିଳ କରି ଦଗ୍ଧ କରିଛନ୍ତି । ସେମାନଙ୍କ ଦୁର୍ଦ୍ଦଶା ଦୁର୍ଗତିରେ ଭୋଭୋ ହୋଇ କାନ୍ଦିଛନ୍ତି । ଦେଶରେ ସ୍ୱରାଜ ଆଣିବାପାଇଁ ଦିନରାତି ଏକାକାର କରି ଦେଇଛନ୍ତି । ସେ କହୁଥିଲେ -

ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ
ଦେଶର ସ୍ୱରାଜ ପଥେ ଯେତେ ଗାଡ଼
ପୁରୁ ତହିଁ ପଡି ମୋର ମାଂସ ହାଡ଼
ସ୍ୱାଧୀନତା ପଥେ ତିଳେ ହେଲେ ନର
ମୋ ଜୀବନ ଦାନେ ହେଉ ଅଗ୍ରସର ।

ସେ କହୁଥିଲେ ମନେ ରଖିବାକୁ ହେବ ଆମେମାନେ ପ୍ରଥମେ ମନୁଷ୍ୟ । ପରେ ଭାରତୀୟ ଓ ସର୍ବଶେଷରେ ଓଡ଼ିଆ ଏହି ଭାବ ମନରେ ନରଖିଲେ ଜାତୀୟ ବିକାଶ ଅସମ୍ଭବ । ପ୍ରତ୍ୟେକ ବ୍ୟକ୍ତିର ସ୍ୱାତନ୍ତ୍ର୍ୟ ଅଛି । ମାତ୍ର ସାମାଜିକ ଭିତ୍ତିଭୂମି ବିନା ସେ ସ୍ୱାତନ୍ତ୍ର୍ୟ ପ୍ରକଟିତ ହୁଏନାହିଁ ।

ଗୋପବନ୍ଧୁଙ୍କ ଜୀବନ ଦର୍ଶନ ତାଙ୍କ ସାହିତ୍ୟ ସୃଷ୍ଟିରେ ପ୍ରତିଫଳିତ ହୋଇଛି । ବ୍ୟକ୍ତିଗତ ଜୀବନରେ ମଧ୍ୟ ସାମୁହିକ ଜୀବନ ବଞ୍ଚିବାର ଶୈଳୀକୁ ସେ ଏଡି ଦେଇପାରିନାହାନ୍ତି । ପ୍ରସଙ୍ଗ କ୍ରମେ 'ଚିଲିକା'କୁ ନେଇ କାବ୍ୟ ରଚନା କରିଥିବା ରାଧାନାଥ ରାୟ ଓ ଗୋପବନ୍ଧୁଙ୍କର ରେଳ ଉପରେ ଚିଲିକା ଦର୍ଶନରୁ କିଞ୍ଚିତ୍ ଉଦ୍ଧୃତି ଏଠାରେ ଅପ୍ରସାଙ୍ଗିକ ହେବ ନାହିଁ । ରାଧାନାଥରାୟ ତାଙ୍କ ଶେଷ ଜୀବନ ଚିଲିକାର ପଶ୍ଚିମ ତୀରରେ କାଟିବାପାଇଁ ଇଚ୍ଛା କରି ଲେଖିଛନ୍ତି -

ସଂସାରେ ଥାଇ ମୁଁ ସଦା ଉଦାସୀନ
ଉଦାସୀନ ପ୍ରାୟେ କଟାଇଲି ଦିନ,
ସଂସାରୀ ସଂଗତେ ସଂଗୀ ହେବାପାଇଁ
କେବେ ହେଁ ମୋହର ମନ ବଳେ ନାହିଁ।

ଗୋପବନ୍ଧୁ ମଧ୍ୟ ନିଜ ବ୍ୟକ୍ତିଗତ ଜୀବନଦର୍ଶନ ସଂପର୍କରେ ସ୍ୱୀକାର କରି କହିଛନ୍ତି -

ଦେଖିବି ତୋ ଶୋଭା ଦିନେ ନିକାଞ୍ଚନେ
କର୍ମବନ୍ଧେ ଥିଲା ମନ କଥା ମନେ
ଏତେ କାଳ ଅନ୍ତେ ପଡିଥିଲା ଯୋଗ
ଆହା ସେ ସୁଯୋଗ ହେଲା ନାହିଁ ଭୋଗ
ରହିଣ ଜଞ୍ଜାଳ ବିଷମ ଜଗତେ
ସଂସାରୀ ସୋଦର ବାନ୍ଧବ ସଂଗତେ
ଇଚ୍ଛାମତେ କାହୁଁ ଚଳିବ ବା ଜନ
ସମାଜେ ନିଜର ନୁହେଁ ନିଜମନ।

ବ୍ୟକ୍ତିଗତ ଜୀବନର ଆଶା ଅଭୀପ୍‌ସା ତାଙ୍କ ପାଇଁ ବଡ଼ କଥା ନୁହେଁ, ସେ ବନ୍ଧା ପଡ଼ିଯାଇଥିଲେ ସଂସାର ସହ। ଯଦିଓ ସେ ଥିଲେ ସଂପୂର୍ଣ୍ଣ ନିଃସଙ୍ଗ, ଯୌବନରେ ସେ ପୁତ୍ର ହରେଇ ଥିଲେ, ପତ୍ନୀ ହରେଇଥିଲେ, ଶୈଶବରେ ପିତାମାତାଙ୍କୁ ହରାଇଥିଲେ, ତଥାପି ସେ ବନ୍ଧୁବାନ୍ଧବ ଆତ୍ମୀୟ ସ୍ୱଜନଙ୍କ ମେଳରେ ରହିବାକୁ ପସନ୍ଦ କରି ସାମୁହିକ ଜୀବନ ସେ ବଞ୍ଚୁଥିଲେ। ଅଥଚ ଭରପୁର ସଂସାର ଭିତରେ ଥାଇ ସୁଦ୍ଧା ରାଧାନାଥ ସଂପୂର୍ଣ୍ଣ ବ୍ୟକ୍ତିଗତ ଜୀବନଟିଏ ବଞ୍ଚୁଥିଲେ।

ଗୋପବନ୍ଧୁଙ୍କର ଅନ୍ୟ ଏକ କାବ୍ୟ ଧର୍ମପଦ ମଧ୍ୟ ସେଇ ଜୀବନଦର୍ଶନ ଉପରେ ଆଧାରିତ। ପୁଅରେ ଦାୟୀ ନୁହେଁ, ବାରଶହ  ବଢ଼େଇରେ ଦାୟ ହେବାରେ ହିଁ ଜୀବନର ସାର୍ଥକତା ନିହିତ। ଜୀବନକୁ ସଂପୂର୍ଣ୍ଣ ସଂପ୍ରସାରିତ କରିବାରେ ରହିଚି ମହତ୍ ପଣ। ମହତ୍ତର ଚେତନା। ପରମ୍ପରା ସୁରକ୍ଷାରେ ସେ ଯେମିତି ସଦା ସତର୍କ ଥିଲେ ପୁରୋଦୃଷ୍ଟି ପ୍ରୟୋଗରେ ମଧ୍ୟ ସେମିତି ବିପ୍ଲବୀ ଥିଲେ। ସଦାସର୍ବଦା ପ୍ରାକୃତିକ ବିପର୍ଯ୍ୟରେ ପ୍ରପୀଡିତ ଓଡ଼ିଶାବାସୀଙ୍କ

ଦୁଃଖ ଦୁର୍ଗତି ପ୍ରତି ସେ ଯେମିତି ସମ୍ବେଦନଶୀଳ ଥିଲେ, ଉତ୍କଳୀୟଙ୍କୁ ଜାତୀୟ ଚେତନାରେ ଉଦ୍‌ବୁଦ୍ଧ କରିବାପାଇଁ ମଧ୍ୟ ସେମିତି ଯତ୍ନଶୀଳ ଥିଲେ। ଏସବୁ ପ୍ରତିଫଳିତ ହୋଇଥିଲା ତାଙ୍କ ନିରଳସ କାର୍ଯ୍ୟରେ, ଚିନ୍ତା ଚେତନାରେ ଓ ସାହିତ୍ୟ ସର୍ଜନାରେ। କାରାକବିତା, ଗୋ ମହାତ୍ମ୍ୟ, ନଚିକେତା ଉପାଖ୍ୟାନ, ବନ୍ଦୀର ଆତ୍ମକଥା ଆଦି ପୁସ୍ତକ ଗୁଡିକରେ ଏହି ଭାବଧାରା ଉର୍ଜସ୍ୱଳ।

ତାଙ୍କର କ୍ଷୁଦ୍ର କବିତା ଗୁଡିକ ଏକାଦିକ୍ରମେ ବ୍ୟକ୍ତିଗତ ଦୁଃଖ, ନିରାଶା, ଆଶା, ବୈପ୍ଲବିକ ଚେତନା ଓ ବିଭୁପ୍ରେମର ଅମୃତ ଅନୁଭବରେ ରସସିକ୍ତ।

ସାରସ୍ୱତ ବ୍ୟକ୍ତିତ୍ୱ ପରି ତାଙ୍କର ରାଜନୈତିକ ଜୀବନ ମଧ୍ୟ ମହତ୍ତର ଚେତନାକୁ ଉନ୍ନୀତ ହୋଇଥିଲା। ସମୟର କାଳଖଣ୍ଡରେ ଉତ୍କଳର ବରପୁତ୍ର ଉତ୍କଳ ଗୌରବ ମଧୁସୂଦନ ଉତ୍କଳୀୟମାନଙ୍କ ଅସ୍ମିତା ପାଇଁ ଅହରହ ସଂଗ୍ରାମ କରୁଥିଲେ। ସେଥିପାଇଁ ତାଙ୍କର ପ୍ରସ୍ତୁତି ପୀଠ ଥିଲା କଲିକତା। ବ୍ୟକ୍ତିଗତ ଜୀବନରେ ଅନେକ ଉତ୍‌ଥାନ ପତନ ପରେ ସେ ଫେରି ଆସିଲେ ଓଡ଼ିଶା। ଓଡ଼ିଆମାନଙ୍କର ସର୍ବାଙ୍ଗୀନ ଉନ୍ନତି କରିବା ନିଜ ଜୀବନର ବ୍ରତ ରୂପେ ବରିନେଲେ। ସେ ଥିଲେ ଆଭିଜାତ୍ୟ ପରିବାର ସନ୍ତାନ। ଶିକ୍ଷା, ଶିଳ୍ପ, ଅର୍ଥନୀତି, ଧର୍ମ ପ୍ରତିଟି କ୍ଷେତ୍ରରେ ସଂସ୍କାର ଆଣି ଏକ ସମୃଦ୍ଧ ଓଡ଼ିଶାର ସ୍ୱପ୍ନ ଦେଖୁଥିଲେ। ଏଥିପାଇଁ ମାଧ୍ୟମ ଥିଲା ଉତ୍କଳ ସମ୍ମିଳନୀ। ଗୋପବନ୍ଧୁ ଯେତେବେଳେ କଲିକତାରେ ବାରିଷ୍ଟରୀ ଶିକ୍ଷା ସମାପ୍ତ କରି ଓଡ଼ିଶାକୁ ଆସିଲେ ସେତେବେଳକୁ ମଧୁବାବୁ ଓଡ଼ିଶାରେ ଥିଲେ ସବୁଠାରୁ ଲୋକପ୍ରିୟ ନେତା। ତାଙ୍କୁ ସେତେବେଳେ ୫୫ ବର୍ଷ। ଗୋପବନ୍ଧୁଙ୍କ ଠାରୁ ୨୬ ବର୍ଷ ବଡ଼। ଗୋପବନ୍ଧୁଙ୍କୁ ମାତ୍ର ୨୪ ବର୍ଷ ବୟସ। ପୁରୀ ଜିଲ୍ଲାର ଅଖ୍ୟାତ ପଲ୍ଲୀ ସୁଆଣ୍ଡୋ ଗ୍ରାମର ଏକ ଛଲଘରେ ତାଙ୍କର ଜନ୍ମ। ସାଧାରଣ ମଳିମୁଣ୍ଡିଆ ବର୍ଗରୁ ଆସି ସେ ମଧୁବାବୁଙ୍କ ପରି ଜଣେ ଆଭିଜାତ୍ୟ ସଂପନ୍ନ ଓଡ଼ିଶାର ଏକ ବିଶିଷ୍ଟ ବ୍ୟକ୍ତିଙ୍କ ସହ ସମଧର୍ମା ହୋଇ ପାରିଥିଲେ। ଯିଏ ଥିଲେ ଆଦବ କାଇଦାରେ ବେଶ ସଂଭ୍ରାନ୍ତ, ବିଲାତି ଢ଼ଙ୍ଗର। ଗାଡ଼ି ଘୋଡାରେ ବୁଲୁଥିଲେ। ବଡ଼ ବଡ଼ ସାହେବମାନଙ୍କ ସହ ସେ ବସାଉଠା କରୁଥିଲେ। ଦେହରେ ଧୂଳି ଟିକେ ଯାହାର ପଡୁନଥିଲା, ଅଥଚ ଧୋତି ଓ ଚଦର ଖଣ୍ଡେରେ ଶରୀର ଢ଼ାଙ୍କି ଧୂଳି ଧୂସରିତ ରାସ୍ତାରେ ଦୁଃଖୀ ଦୁର୍ଗତ ମଣିଷର ଆଖିରୁ ଲୁହ ପୋଛୁଥିବା ମଣିଷଟା ମଧୁବାବୁଙ୍କର ଅତିପ୍ରିୟ

ମଣିଷ ହୋଇଗଲେ। ତାଙ୍କ ସହ ଶେଷ ନିଃଶ୍ୱାସ ତ୍ୟାଗ କରିବା ପର୍ଯ୍ୟନ୍ତ ରହିଥିଲେ। ମଧୁବାବୁଙ୍କ ପ୍ରତି ତାଙ୍କର ଶ୍ରଦ୍ଧା ସମ୍ମାନ ଥିଲା। ମଧୁବାବୁଙ୍କର ମଧ୍ୟ ତାଙ୍କ ଉପରେ ଭରସା ଥିଲା। ସେ କହୁଥିଲେ ମୋର ଅନ୍ତିମ ଶଯ୍ୟାରେ ଯଦି ମୁଁ କାହା ସହ ପ୍ରାର୍ଥନା କରିବାକୁ ଚାହିଁବି ସେ ହେଉଛନ୍ତି ଗୋପବନ୍ଧୁ। ଏସବୁ ସତ୍ତ୍ୱେ ଗୋପବନ୍ଧୁ ମଧୁବାବୁଙ୍କ ବିଚାର ପାଖରେ ନିଜକୁ ନିଃଶୋଷିତ କରି ଦେଇନଥିଲେ। ଦୁହେଁ ଦୁହିଁଙ୍କ ମୌଳିକ ଚିନ୍ତନ ପାଖରେ ଅଟଳ ରହୁଥିଲେ। ସାମୟିକ ମତ ଭେଦ ହେଉଥିଲା ସିନା କେବେ ମନାନ୍ତର ହେଉ ନଥିଲା।

ଓଡ଼ିଶାକୁ ବଙ୍ଗଳାର ଏକ ଉପପ୍ରଦେଶ କରି ରଖିବାକୁ ମଧୁବାବୁ ଚାହୁଁଥିଲେ। କିନ୍ତୁ ଗୋପବନ୍ଧୁ ଚାହୁଁଥିଲେ ଓଡ଼ିଶା ମଧ୍ୟପ୍ରଦେଶ ସହ ମିଶୁ। ଦୁହିଁଙ୍କ ମତଭେଦ ଏତେ ତୀବ୍ର ହେଲା ଯେ ଶେଷରେ ଗୋପବନ୍ଧୁଙ୍କ ତାଙ୍କ ବନ୍ଧୁମାନଙ୍କ ସହ ଉତ୍କଳ ସମ୍ମିଳନୀ ସଭାରୁ ଥରେ ଚାଲିଯିବାକୁ କହିଥିଲେ ମଧୁବାବୁ। କିନ୍ତୁ ଦୁହେଁ ଦୁହିଁଙ୍କୁ ବେଶ୍ ସମ୍ମାନ ପ୍ରଦର୍ଶନ କରୁଥିଲେ। ପରସ୍ପର ପରସ୍ପର କାର୍ଯ୍ୟ ଧାରାକୁ ପସନ୍ଦ କରୁଥିଲେ। ମୟୂରଭଞ୍ଜ ରାଜ୍ୟ ରାଜାଙ୍କର ସରକାରୀ ଓକିଲ ପଦ ଖାଲି ହେବାରୁ ମଧୁବାବୁ ସେଠାରେ ଗୋପବନ୍ଧୁଙ୍କ ନାମ ସୁପାରିଶ କରିଥିଲେ। ଦୁଇବର୍ଷକାଳ ଗୋପବନ୍ଧୁ ସେଠାରେ ରହିଥିଲେ। ବିହାର ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ କାଉନ୍‌ସିଲର୍ ରୂପେ ଗୋପବନ୍ଧୁଙ୍କୁ ପ୍ରାର୍ଥୀ କରାଇ ତାଙ୍କୁ ଜିତାଇଥିଲେ ମଧୁବାବୁ।

ମଧୁବାବୁ ଓ ଗୋପବନ୍ଧୁଙ୍କ ବିଚାର ପାର୍ଥକ୍ୟର ଆଉ ଏକ ନମୁନା ହେଲା କନିକା ରାଜ୍ୟ। କନିକା ରାଜାଙ୍କ ଠାରୁ ଆର୍ଥିକ ସହାୟତା ପାଇ ମଧୁବାବୁ ବିଲାତ ଯାଇଥିଲେ ପାଠପଢ଼ିବା ପାଇଁ। ସେଠାରୁ ଫେରି ଆସିବାପରେ କନିକା ରାଜାଙ୍କର ଜଣେ ଦୃଢ଼ ସମର୍ଥକ ଓ ଶୁଭେଚ୍ଛୁ ହୋଇ ରହିଲେ। ଅଥଚ କନିକା ରାଜାଙ୍କର ପ୍ରଜାଙ୍କ ପ୍ରତି ଅତ୍ୟାଚାର ଓ ଶୋଷଣ କଷଣର ଚିତ୍ର ସମ୍ବାଦପତ୍ରରେ ପ୍ରଚାର କରି ଗୋପବନ୍ଧୁ ରାଜରୋଷର ଶିକାର ହୋଇଥିଲେ। ସେଥିପାଇଁ ତାଙ୍କୁ ଜେଲ୍ ଯିବାପାଇଁ ପଡିଥିଲା। ଆହୁରି ମଜାକଥା ହେଲା, ଗୋପବନ୍ଧୁଙ୍କୁ ଜେଲରୁ ମୁକୁଳାଇବା ପାଇଁ ବ୍ୟବସ୍ଥାପକ ସଭାରେ ଗୋପବନ୍ଧଙ୍କୁ ପ୍ରିୟବନ୍ଧୁ ବୋଲି କହିଥିଲେ ମଧୁବାବୁ। ତାଙ୍କ ସପକ୍ଷରେ ଯୁକ୍ତିକରି କରିଥିଲେ, ଏହି ଯୁବକର ଜୀବନ ଗଠନ କରିବାରେ ମୁଁ ଅଂଶ ଗ୍ରହଣ କରିଥିବାରୁ ନିଜକୁ ଗୌରାବାନ୍ୱିତ ଓ ସମ୍ମାନିତ ମନେ କରୁଛି।

ମାତ୍ର ବିଖଣ୍ଡିତ ଉତ୍କଳର ଏକତ୍ରୀକରଣ କରିବା ଥିଲା ମଧୁବାବୁଙ୍କର ମୁଖ୍ୟ ଲକ୍ଷ୍ୟ। ବିଛିନ୍ନାଞ୍ଚଳରେ ଥିବା ଓଡ଼ିଶାକୁ ଆଣି ଏକ ସ୍ୱତନ୍ତ୍ର ରାଜ୍ୟ କରିବାପାଇଁ ସେ ଆଜୀବନ ସଂଗ୍ରାମ କରିଥିଲେ। କିନ୍ତୁ ଗୋପବନ୍ଧୁ ସମଗ୍ରଭାରତ ବର୍ଷଙ୍କୁ ଏକ ବୋଲି ଭାବୁଥିଲେ। ମହାଭାରତୀୟତା ଥିଲା ତାଙ୍କ ଚିନ୍ତା ଚେତନାର ଅଂଶ। ସେ ଅବକାଶ ଚିନ୍ତା କବିତା ସଂକଳନର ପ୍ରଥମ କବିତା ପ୍ରାର୍ଥନାରେ କହିଥିଲେ -

ସଂସାର ତୁମୁଳ ରଣ ପ୍ରାଙ୍ଗଣେ
ଉତ୍କଳର ଦୀନ ତନୟ ଗଣେ
ପଛରେ କେବେ ହେଁ ନ ପଡୁ ଦେବ
ଶ୍ରୀ ଛାମୁରୁ ଏହି ଆଦେଶ ହେବ
ଘେନି ଅପୂର୍ବ ଉତ୍ସାହ
ଭାରତର ମହା ଜାତୀୟ ତରଙ୍ଗେ
ମିଶୁ ଉତ୍କଳ ପ୍ରବାହ।

ଆଗଙ୍ଗା ଗୋଦାବରୀ ଜୟ କରିଥିବା ଉତ୍କଳୀୟମାନଙ୍କର ନିଷ୍କ୍ରିୟତାରେ ବ୍ୟସ୍ତ ବିବ୍ରତ ହୋଇ ପଡୁଥିଲେ ମଧୁବାବୁ। ଅତୀତ ଗୌରବରୁ ପ୍ରେରଣା ସଂଗ୍ରହ କରି ନିଷ୍କ୍ରିୟପଣକୁ ଓଡ଼ିଆମାନେ ପୁଣି ସେଇମାନଙ୍କ ପରି ଶୌର୍ଯ୍ୟବୀର୍ଯ୍ୟରେ ବିଶ୍ୱର ମର୍ଯ୍ୟାଦା ପାଆନ୍ତୁ ବୋଲି ସେ ଚାହୁଁଥିଲେ। ସେଥିପାଇଁ ସେ କାତର କଣ୍ଠରେ ଗାଉଥିଲେ -

ଉଠରେ ଉଠରେ ଉତ୍କଳ ସନ୍ତାନ
ଉଠିବୁ ତୁ କେତେ ଦିନେ
ପୂରୁବ ଗୌରବ ପୁରୁବ ମହିମା
ପଡିବ କି ତୋର ମନେ
ତୋ ପୂର୍ବ ପୁରୁଷ ଜୟ କରିଥିଲେ ଗଙ୍ଗାଠାରୁ ଗୋଦାବରୀ
ତାଙ୍କରି ଔରସରେ ଜନ୍ମ ହୋଇ ତୁହି କେଉଁ ଗୁଣେ ତାଙ୍କୁ ସରି।

କିନ୍ତୁ ଗୋପବନ୍ଧୁଙ୍କର ବିଚାର ଥିଲା -

ଜଗତ ସରସେ ଭାରତ କମଳ
ତା ମଧ୍ୟେ କେଶର ପୂଣ୍ୟ ନୀଳାଚଳ

ଥିଲେ ଯହିଁ ତହିଁ ଭାରତ ବକ୍ଷରେ
ମଣିବି ମୁଁ ଅଛି ଆପଣାକକ୍ଷରେ,

ଗୋପବନ୍ଧୁଙ୍କର ଚିନ୍ତାରେ ମୌଳିକତା ଥିଲା। ଅନନ୍ୟ ଥିଲା ତାଙ୍କର ବିଚାରଧାରା, ବିସ୍ଫୋରକ ବ୍ୟକ୍ତିତ୍ୱ ରୂପେ ସେ ତାଙ୍କ କାବ୍ୟ କବିତାରେ ଇଂରେଜ ସରକାରଙ୍କୁ ଆହ୍ୱାନ ଦେଉଥିଲେ। ତଥାପି ତାଙ୍କ ହୃଦୟ ଥିଲା ଅତ୍ୟନ୍ତ ନରମ ଓ କୋମଳ। ସାଧାରଣ ମଣିଷର ଦୁଃଖ ଦୁର୍ଗତି ଦେଖିଲେ ସେ ସମ୍ଭାଳି ପାରୁନଥିଲେ। ତାଙ୍କ ଚକ୍ଷୁରୁ ନିଗିଡ଼ି ପଡୁଥିଲା ଧାର ଧାର ଲୁହ। କାଳିସି ଲାଗିବା ପରି ସେ ଘରଦ୍ୱାର ପରିବାର ଛାଡ଼ି ସେଠାରେ ପହଞ୍ଚି ଯାଉଥିଲେ। ସେମାନଙ୍କୁ ସରକାରୀ ସାହାଯ୍ୟ ପାଇଁ ନିଉଛାଳି ହେଉଥିଲେ। ୧୯୧୮ ଖ୍ରୀଷ୍ଟାବ୍ଦରେ ଓଡ଼ିଶାରେ ଯେଉଁ ଦୁର୍ଭିକ୍ଷ ହୋଇଥିଲା, ଖାଦ୍ୟ ଅଭାବରେ ଲୋକମାନେ କେମିତି ଅଖାଦ୍ୟ ଖାଉଥିଲେ, ତାର ବାସ୍ତବ ଚିତ୍ର ସରକାରଙ୍କୁ ଦେବାପାଇଁ ସେ ଲୋକମାନେ ଖାଉଥିବା କାଣ୍ଡିଆ କୁଣ୍ଡା ଓ ମୁଠି ଶାଗକୁ କାନିରେ ବାନ୍ଧି ବିହାର ଓଡ଼ିଶା ବ୍ୟବସ୍ଥାପକ ସଭାକୁ ନେଇଥିଲେ। ତାଙ୍କର ମୌଳିକ ଚିନ୍ତନ ଥିଲା ଯୁଗାନ୍ତକାରୀ। ତାଙ୍କ ପରିକଳ୍ପିତ ସତ୍ୟବାଦୀ ବନବିଦ୍ୟାଳୟର ଛାୟାରେ ରବୀନ୍ଦ୍ରନାଥ ଶାନ୍ତିନିକେତନରେ ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟ ସ୍ଥାପନ କରିଥିଲେ। ମହାତ୍ମାଗାନ୍ଧୀ ତାଙ୍କରି ଠାରୁ ପ୍ରେରଣା ପାଇ ଅରଟରେ ସୂତା କାଟିବା ପାଇଁ ଦେଶବାସୀଙ୍କୁ ଆହ୍ୱାନ ଦେଇଥିଲେ।

ସେ ଅନନ୍ୟ, ଅବିକଳ୍ପ, ଅନମନୀୟ ବ୍ୟକ୍ତିତ୍ୱ ଥିଲେ, କିନ୍ତୁ ପ୍ରପୀଡିତମାନଙ୍କ ପାଇଁ ତାଙ୍କ ହୃଦୟ ଓଦା ବାଲିପରି ବତୁରି ଯାଉଥିଲା। ବ୍ୟକ୍ତିଗତ ଜୀବନର ଦୁଃଖ ଦୁର୍ଦ୍ଦଶା ତାଙ୍କୁ ବଡ଼ ହୋଇ ଦିଶୁ ନଥିଲା। ବାଲ୍ୟକାଳରେ ପିତୃମାତୃ ବିୟୋଗ, ଯୌବନରେ ପୁତ୍ରର ମରଣ, ପତ୍ନୀ ବିୟୋଗ ଜନିତ ଦାରୁଣ ଦୁଃଖ ତାଙ୍କୁ ବିଚଳିତ କରିଥିଲେ ସୁଦ୍ଧା ଦେଶ ଓ ଜାତିପାଇଁ ନିଜକୁ ଉତ୍ସର୍ଗ କରି ସେ ଯନ୍ତ୍ରଣା ସବୁ ବିସ୍ମୃତ ହୋଇଥିଲେ।

ପ୍ରକୃତରେ ସେ ଥିଲେ ମଣିଷ ପରି ମଣିଷଟିଏ।



# ଓଡ଼ିଶାରେ ଜାଲିଆନାୱାଲାବାଗର ବିଭୀଷିକା
# – ପାପଡାହାଣ୍ଡିର ଗୁଳିକାଣ୍ଡ

ଅବିଭକ୍ତ କୋରାପୁଟ ଜିଲ୍ଲାର ଆଦିବାସୀମାନଙ୍କୁ ଇଂରେଜ ଶାସନ ବିରୁଦ୍ଧରେ ସଂଗ୍ରାମ କରିବା ଶିଖାଇଥିଲେ ରାଧାକୃଷ୍ଣ ବିଶ୍ୱାସରାୟ । କୋରାପୁଟ ଜିଲ୍ଲାର ସେ ପ୍ରଥମ କଂଗ୍ରେସ ସଭାପତି । ୧୯୩୮ ମସିହାବେଳକୁ ଓଡ଼ିଶାର ସରକାରଙ୍କ ପାର୍ଲ୍ଲାମେଣ୍ଟ ସଚିବ ଓ କୋରାପୁଟ ଅଞ୍ଚଳର ନିର୍ବାଚିତ ବିଧାନସଭା ସଦସ୍ୟ ସେ ଥିଲେ । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଘୋଷଣା ହେବାପରେ ସାର୍‌ଜନ୍ ଅଷ୍ଟିନ୍ ହବାକ୍ ଓଡ଼ିଶାର ଗଭର୍ଣ୍ଣର (ଛୋଟଲାଟ) ଦାୟିତ୍ୱ ବହନ କରିଥିଲେ । ସେ କୋରାପୁଟ ଗସ୍ତରେ ଆସି ସ୍ଥାନୀୟ ପଲ୍‌ଟିକାଲ୍ ଏଜେଣ୍ଟଙ୍କ ଦ୍ୱାରା ଲୋକଙ୍କଠୁଁ କର ଆଦାୟ କରିବା ସହ ଜଙ୍ଗଲରେ ଶିକାରର ମଜା ନେଉଥିଲେ । ଏଥିପାଇଁ ତାଙ୍କର ସକଳ ଖର୍ଚ୍ଚ ପ୍ରଜାମାନଙ୍କ ଠାରୁ ଜୋର ଜବରଦସ୍ତ ଆଦାୟ କରାଯାଉଥିଲା । ଏ ସମ୍ବାଦ ପାଇ ରାଧାକୃଷ୍ଣ ବିଶ୍ୱାସ ରାୟ ଗାଁ ଗହଳ ବୁଲି ଏ ସଂପର୍କରେ ତଥ୍ୟ ସଂଗ୍ରହ କରିଥିଲେ ଓ ସେଗୁଡିକୁ ଫେରାଇ ଦେବାର ଦାବୀ କରି ତତ୍‌କାଳୀନ ସମାଜ ସଂପାଦକ ଲିଙ୍ଗରାଜ ମିଶ୍ରଙ୍କ ପାଖକୁ ପତ୍ର ଲେଖିଥିଲେ । ଏ ସମ୍ବାଦ ପ୍ରକାଶିତ ହେବା ପରେ ସରକାର ବଦନାମ ହୋଇପଡିଥିଲେ । ଦେଶୀୟ ରାଜା ଓ ଇଂରେଜମାନେ ପ୍ରଜାମାନଙ୍କ ଠୁଁ ଲୁଣ୍ଠି ନେଇଥିବା ଦ୍ରବ୍ୟ ଫେରାଇ ବାକୁ ବାଧ ହୋଇଥିଲେ । ଏହି କାରଣରୁ ସଭ୍ୟମଣିଷକୁ ଭୟ କରୁଥିବା ଅରଣ୍ୟ ଅଧିବାସୀମାନେ କଂଗ୍ରେସ ଉପରେ ଭରସା କଲେ ।

ଯୁଗ ଯୁଗ ଧରି ଶାସକମାନଙ୍କର ଶୋଷଣ କଷଣରେ ଅତିଷ୍ଠ ହେଉଥିବା ମଣିଷମାନେ ସଂଗଠିତ ହୋଇ କଂଗ୍ରେସକୁ ସାହାଯ୍ୟ ସହାୟତା କଲେ। ଏହାପରେ ବିଭିନ୍ନ ସ୍ଥାନରେ କଂଗ୍ରେସ ଅଫିସମାନ ସ୍ଥାପନ ହେଲା। ବରୀର ସ୍ୱରାଜ ଆଶ୍ରମ ପରି ଜୟପୁର ନିକଟସ୍ଥ ନୂଆପୁଟ ଠାରେ କଂଗ୍ରେସ ତାଲିମ ଆଶ୍ରମ ପ୍ରତିଷ୍ଠା ହେଲା। ଅବିଭକ୍ତ କୋରାପୁଟ ଜିଲ୍ଲାର ନବରଙ୍ଗପୁର ଅରଣ୍ୟ ଅଧିବାସୀମାନେ ଯେପରି ଉତ୍ସାହ ଉଦ୍ଦୀପନାରେ ସ୍ୱାଧୀନତା ସଂଗ୍ରାମ ଲଢ଼ିଥିଲେ ତାହା ସମଗ୍ର ଭାରତବର୍ଷରେ ବିରଳ। ରାଧାକୃଷ୍ଣ ବିଶ୍ୱାସରାୟ, ରାଧାମୋହନ ସାହୁ, ଲକ୍ଷ୍ମୀଚନ୍ଦ୍ର ଦାସ, ରବିସିଂ ମାଝୀ, ବଗା ପୂଜାରୀ, ସଦାଶିବ ତ୍ରିପାଠୀ, ମହମ୍ମଦ ବାଜୀ, ସୀମାଚଳ ବେହେରା, ଶନୁ ମାଝୀ, ଜଗନ୍ନାଥ ତ୍ରିପାଠୀ, ସଦାନନ୍ଦ ମହାନ୍ତି, ମାଧବ ପ୍ରଧାନୀ ଆଦି ଏହି ଆନ୍ଦୋଳନକୁ ତ୍ୱରାନ୍ୱିତ କରିଥିଲେ।

୧୯୪୨ ମସିହା ଅଗଷ୍ଟ ୮ ତାରିଖ ବମ୍ବେ ଅଧିବେଶନରେ ମହାତ୍ମାଗାନ୍ଧିଙ୍କ ଅଧକ୍ଷତାରେ ନିଖିଳ ଉତ୍କଳ କଂଗ୍ରେସ କମିଟି ଭାରତଛାଡ ଓ କର ବା ମର ନିଷ୍ପତ୍ତି ନେଲା। ମହାତ୍ମାଗାନ୍ଧୀଙ୍କ ଏ ଆହ୍ୱାନ ଦୁର୍ଗମ ଅଞ୍ଚଳ ନବରଙ୍ଗପୁରକୁ ଆସିବା ଦୁରୁହ ଥିଲେ ବି ଅସମ୍ଭବ ନଥିଲା। ଯଥା ସମୟରେ ରାଧାକୃଷ୍ଣ ବିଶ୍ୱାସରାୟ ଲକ୍ଷ୍ମୀଚନ୍ଦ୍ର ଦାସଙ୍କ ପାଖକୁ ବାର୍ତ୍ତାର ନକଲଟିଏ ପଠେଇ ଦେଲେ। ମହମ୍ମଦ ବାଜୀଙ୍କ ଘର ଆଟୁ ଉପରେ ପେଟ୍ରୋମ୍ୟାକ୍ସ ଲଗେଇ ଏହାର ସାଇକ୍ଲୋଷ୍ଟାଇଲ୍ କଲେ ଲକ୍ଷ୍ମୀଚନ୍ଦ୍ର ଦାସ। କର୍ମୀମାନେ ଶହ ଶହ ସଂଖ୍ୟାରେ ଆଦିବାସୀ ଅଞ୍ଚଳରେ ବାଣ୍ଟିଲେ। ଏ ଚିଠିରେ ମୁଖ୍ୟ ବାର୍ତ୍ତା ଥିଲା ଇଂରେଜମାନଙ୍କୁ ଅସୁବିଧାରେ ପକାଇବା। ପୋଲ ଭାଙ୍ଗିବା, ଥାନା ପୋଡିବା, ଟେଲିଫୋନ୍ ଖୁଣ୍ଟ ଉପାଡିବା, ବଣକାଟିବା ଓ ପୋଡିବା ଆଦି ବିଭିନ୍ନ କାର୍ଯ୍ୟ କରିବାକୁ କର୍ମୀମାନଙ୍କ ପାଇଁ ନିର୍ଦ୍ଦେଶ ଥିଲା। କାଠପୋଲ ଭାଙ୍ଗିବା ଓ ଥାନା ପୋଡିବାକୁ କର୍ମୀମାନେ ପ୍ରାଧାନ୍ୟ ଦେଇଥିଲେ। ୧୯୪୨ ମସିହା ଅଗଷ୍ଟ ୧୬ ତାରିଖରେ ବାଘସିଉନୀର ମାଧବ ପ୍ରଧାନୀଙ୍କ ନେତୃତ୍ୱରେ ଦୁଇଶହ କଂଗ୍ରେସ କର୍ମୀ ଚିକିଲି ଗୁଣ୍ଡୁଚୁର କାଠପୋଲ ଭାଙ୍ଗିଦେଇଥିଲେ। ଅଗଷ୍ଟ ୨୦ ତାରିଖରେ ଡାବୁଗାଁ ନିକଟସ୍ଥ କୁସୁମବନ୍ଧର ସନୁମାଝୀଙ୍କ ନେତୃତ୍ୱରେ ଅନ୍ୟୁନ ସାତଶହ କର୍ମୀ ଜଟାବାଲ ଓ ସରାଗୁଡା ପୋଲ ଭାଙ୍ଗି ଦେଇଥିଲେ।

୨୩ ତାରିଖ ଦିନ ମାଧବ ପ୍ରଧାନୀଙ୍କ ନେତୃତ୍ୱରେ ତାରାଗାଁର ଗୁମ୍ମାଗୁଡା ଠାରେ ପାଞ୍ଚଶହ କର୍ମୀଙ୍କୁ ନେଇ ଏକ ସଭା ହୋଇଥିଲା। ଏହି ସଭାରେ ପରବର୍ତ୍ତୀ କାର୍ଯ୍ୟପନ୍ଥା ହାତକୁ ନେବା ପାଇଁ ଡାବୁଗାଁ ଠାରେ ଏକ କର୍ମୀ ସମ୍ମିଳନୀ ବସିବାର ନିଷ୍ପତ୍ତି ନିଆଗଲା। ଏହି ନିଷ୍ପତ୍ତି ଅନୁସାରେ ନନ୍ଦାହାଣ୍ଡି, ତଣ୍ଡା, ଉସୁରୀ ପଦର, ତୁରୁଞ୍ଜି, ମୁର୍ଲାବାଇ, କଂଗ୍ରା, ଫୁପୁଗାଁ, ନୂଆଗାଁ, ପାତ୍ରପୁଟ ଆଦି ଅଞ୍ଚଳରୁ ଶହ ଶହ ସଂଖ୍ୟାରେ କର୍ମୀ ୨୪ ତାରିଖ ଦିନ ସକାଳ ଆଠଟାରୁ ଡାବୁଗାଁ ଅଭିମୁଖେ ଯିବାପାଇଁ ପ୍ରସ୍ତାବ ଗ୍ରହଣ କରାଗଲା।

ଡାବୁଗାଁ ଯିବାପାଇଁ ହେଲେ ପାପଡାହାଣ୍ଡି ସୀମାବର୍ତ୍ତୀ ଟୁରୀ ନଦୀକୁ ଅତିକ୍ରମ କରିବାକୁ ପଡେ। ପାପଡାହାଣ୍ଡି ଛକଟିଏ। ନବରଙ୍ଗପୁର ଠାରୁ ଉମରକୋଟ ଆଡେ ଗଲେ ଡାହାଣ ପଟରେ ରାସ୍ତାଟିଏ ମୈଦଲପୁର ଆମପାଣି ଦେଇ ଯାଇଛି ଭବାନୀ ପାଟଣା। ବାମପଟ ରାସ୍ତା କୋଡିଗାଁ କସାଗୁମୁଡା ଆଡେ ଯାଇଛି। ସମ୍ମୁଖ ରାସ୍ତା ଡାବୁଗାଁ। ୨୪ ତାରିଖ ଦିନ ସକାଳୁ ସକାଳୁ ଆଦିବାସୀ ସଂଗ୍ରାମୀମାନେ ସେମାନଙ୍କ ପାରମ୍ପରିକ ବେଶଭୂଷା ହାତରେ ଠେଙ୍ଗା, କାନ୍ଧରେ ଟାଙ୍ଗିଆ ପକାଇ ବାହାରିଲେ। ସମସ୍ତଙ୍କ ହାତରେ ଥିଲା ଚରଖା ଚିହ୍ନଥିବା ପତାକା। ରାମଧୂନ୍ ସହ ମହାତ୍ମାଗାନ୍ଧୀଙ୍କ ଜୟନାଦ ଦେଇ ସେମାନେ ଟୁରୀ ନଦୀ ଉପରେ ଥିବା କାଠପୋଲ ନିକଟରେ ପହଞ୍ଚିଲେ।

କିନ୍ତୁ ତା ପୂର୍ବରୁ ଖଣ୍ଡ ପ୍ରଳୟ ପାଇଁ ସବୁପ୍ରକାର ପ୍ରସ୍ତୁତି ସରିଥିଲା। ବିଭିନ୍ନ ସୂତ୍ରରୁ ଖବର ପାଇ ପାପଡା ହାଣ୍ଡି ଫାଣ୍ଡିର ସୁରକ୍ଷା ପାଇଁ ନବରଙ୍ଗପୁର ଥାନା ସର୍କଲ ଇନ୍‌ସ୍ପେକ୍ଟର ରାମକୃଷ୍ଣ ରାଓ ମୈଦଲପୁରକୁ ଖବର ପଠାଇଲେ। ନିଜେ ନବରଙ୍ଗପୁର ଓ ଜୟପୁରରୁ ରିଜର୍ଭ ପୋଲିସ୍ ଫୋର୍ସ ଜଙ୍ଗଲ ସୁରକ୍ଷା କର୍ମଚାରୀ, ରାଜାଙ୍କ ସମର୍ଥନକାରୀ ଓ କଂଗ୍ରେସ ବିରୋଧୀମାନଙ୍କୁ ଏକତ୍ରିତ କରି ତୁରୀ ନଦୀର କାଠପୋଲକୁ ସଂପୂର୍ଣ୍ଣ ଅକ୍ତିଆରକୁ ଆଣିଥିଲେ। ପୋଲ ମଝିରେ ରହିଥିଲା ତୋପଟିଏ। ସଂଗ୍ରାମୀମାନେ କିଛି ମାନିଲେ ନାହିଁ। ମାଡି ଚାଲିଲେ ଆଗକୁ। ପୋଲ ସେ ମୁଣ୍ଡରେ ଗୁଳିଗୁଳା ଧରି ପୋଲିସ୍ ଉଗାଳି ଥିଲେ। ପଛରେ ଥିଲେ ରିଜର୍ଭ ପୋଲିସ୍। ଠେଙ୍ଗା ବାଡି ଧରି ରାଜାଙ୍କ ଲୋକ ଅନ୍ୟ ବିରୋଧୀ। ପ୍ରଥମେ ଦୁଇ ଗୋଷ୍ଠୀଙ୍କ ମଧ୍ୟରେ ବାକ୍‌ଯୁଦ୍ଧ ଚାଲିଲା। ତା'ପରେ ଠେଲାପେଲା ଓ ଧସ୍ତାଧସ୍ତି। ଶହ ଶହ ସଂଖ୍ୟାରେ ସଂଗ୍ରାମୀ ଓ

ମୁଷ୍ଟିମେୟ ପୋଲିସ୍। ସଂଗ୍ରାମୀମାନେ ପଛକୁ ହଟିବାକୁ ପ୍ରସ୍ତୁତ ନୁହଁନ୍ତି। ପୋଲିସ୍ ଆଗକୁ ବଢ଼ିବାକୁ ଦେଉନାହାନ୍ତି। ନାଗର ପୋଲିସ୍ ଶେଷକୁ ଲାଠି ଚାର୍ଯ୍ୟ କଲେ। ସେହି ଧସ୍ତା ଧସ୍ତି ଭିତରେ ଜଣେ ସଂଗ୍ରାମୀଙ୍କ ଟାଙ୍ଗିଆ ଧାରରେ ସିପାହୀ ଏ ମୃତ୍ୟୁାଲଗୁର ଡାହାଣ କାନରୁ ଫାଳେ ଉଡିଗଲା। ସେ ପଡିଗଲା ତଳେ। ସଂଗ୍ରାମୀମାନେ ଆକ୍ରମଣ କରୁଛନ୍ତି ବୋଲି ଭାବି, ନବୁଝି ନ ବିଚାରି ପୋଲିସ ଡି.ଏସ୍.ଆଇ କେ. ଗୌଡ ଗୁଳି ଚଳେଇବାକୁ ଆଦେଶ ଦେଲେ। ଆଗରେ ପୋଲିସ୍, ପଛରେ ପୋଲିସ୍। ଦୁଇପଟେ ଶ୍ରାବଣ ମାସର ଉଛୁଳା ନଦୀସ୍ରୋତ। ମଝିରେ ପୋଲିସ୍‌ର ଢ଼ୋ ଢ଼ା ଗୁଳି ସାଙ୍ଗକୁ ଆଖିବୁଜା ଲାଠି ପ୍ରହାର। ଜାଲିଆନାୱାଲାବାଗ୍‌ର ବିଭୀଷିକା ସୃଷ୍ଟି ହୋଇଗଲା। ପୋଲିସ୍‌ର ଲାଠି ଓ ଗୁଳିରେ କ୍ଷତାହତ ହେଲେ ଲୋକେ। ଚାରିଆଡେ ରକ୍ତର ସୁଅ। ୧୧ଟି ଶବ ଗଡିପଡିଲା ତଳେ। ଗୁଳିମାଡ, କ୍ଷତାକ୍ତ ମଣିଷ, ଭୂଲୁଣ୍ଠିତ ଶବ ଦେଖି ଅନେକ ପ୍ରାଣ ବିକଳରେ ଡେଇଁ ପଡିଲେ ଉଛୁଳା ନଦୀ ଗର୍ଭକୁ। ରକ୍ତାକ୍ତ ଦିଶିଲା ଟୁରୀ ନଦୀର ଜଳରାଶି। ପହଁରା ଶିଖିଥିବା ଲୋକେ ରକ୍ଷା ପାଇଲେ ତ ଅନ୍ୟମାନେ ନଈ ସୁଅରେ କିଏ କୁଆଡେ ଭାସିଗଲେ ତାର ପତ୍ତା ମିଳିଲା ନାହିଁ। ୮ ଜଣ ଗୁରୁତର ଅବସ୍ଥାରେ ନବରଙ୍ଗପୁର ଡାକ୍ତରଖାନାରେ ଚିକିତ୍ସିତ ହେଉଥିବା ସମୟରେ ଶହୀଦ୍ ହୋଇଗଲେ। ନଦୀ ଗର୍ଭରେ ଯେଉଁମାନେ ହଜିଗଲେ ସେମାନଙ୍କ ଖୋଜ ଖବର ରହିଲା ନାହିଁ। ୧୦୦ ସରିକି ଲୋକ କ୍ଷତାକ୍ତ ହୋଇଥିଲେ। ୧୪୦ ଜଣ ଲୋକଙ୍କୁ ଗିରଫ୍ କରି ପୋଲିସ୍ ରାସ୍ତାରେ ଚଲାଇ ଚଲାଇ ପାପଡାହାଣ୍ଡିରୁ ନବରଙ୍ଗପୁର ପର୍ଯ୍ୟନ୍ତ ନେଲେ।

ଏହି ବିଭୀଷିକାରେ ଯେଉଁ ୧୯ ଜଣ ଶହୀଦ୍ ହୋଇଗଲେ ସେମାନେ ହେଲେ-

୧. ଦଲେଇ ଗୁଡା ଗ୍ରାମର ବସ୍ତରିଆ ଭତ୍ରା, ୨. ନନ୍ଦାହାଣ୍ଡିର ଶନୁ ଭତ୍ରା, ୩.ତଣ୍ଡାର ବଳି ସଉରା, ୪. ଉସୁରି ପଦର ବୁଦ୍ଧୁ ଅମାନାତ୍ୟ, ୫. ତୁରଞ୍ଜିର ରତନ ରନ୍ଧାରି, ୬. ମୁର୍ଲାବାଇର ଶୁକ୍ର ମୁଦୁଲି, ୭. କଂଗ୍ରାର ଖଗପତି ଅମାନାତ୍ୟ, ୮. ଉସୁରୀ ପଦରର ଭରତ ପୁଜାରୀ, ୯. ଫୁପୁଗାଁର ରାମଚନ୍ଦ୍ର ଆମାନାତ୍ୟ, ୧୦.ନୂଆଗାଁର ଘାସି ଜାନୀ ଓ ୧୧. ଦୀନବନ୍ଧୁ ଜାନୀ, ୧୨.

ପାତ୍ରପୁଟରେ ଜଗନ୍ନାଥ ଅମାନାତ୍ୟ, ୧୩. ପଡେଲ୍ ଗୁଡାର ସହଦେବ ପୂଜାରୀ, ୧୪. ଉମୁରୀ ଗାଁର ମଙ୍ଗୁ ଭତ୍ରା, ୧୫. ଦୁଖୁଗୁଡାର ଆନନ୍ଦ ଗୌଡ, ୧୬. ମନ୍ତ୍ରୀଗୁଡାର ପରମାନନ୍ଦ ସଉରା, ୧୭. ମନ୍ତ୍ରୀଗୁଡାର ଭଗବାନ ଭତରା, ୧୮. ସୁରୁଗୁଡାର ଶ୍ୟାମସୁନ୍ଦର ଗୌଡ, ୧୯. ତୁରୁଞ୍ଜର ବୁଦ୍ଧୁ ଅମାନାତ୍ୟ।

ଗୁଳିକାଣ୍ଡ ପରେ ଯେଉଁ ମୋକଦ୍ଦମା ହୋଇଥିଲା, ସେଥିରେ ପାତ୍ରପୁଟ୍‌ର ମହାଦେବ ଅମାନାତ୍ୟ ନାମକ ଜଣେ ସଂଗ୍ରାମୀଙ୍କୁ ପୋଲିସ କର୍ମୀମାନଙ୍କ ବିରୁଦ୍ଧରେ ସାକ୍ଷ୍ୟ ଦେବାପାଇଁ ବାଧ୍ୟ କରିଥିଲା। ସେ ଏଥିରେ ରାଜି ହୋଇନଥିଲେ। ପରେ ପୋଲିସ୍‌ର ଚାପ ହେତୁ ସେ ଆତ୍ମହତ୍ୟା କରିଥିଲେ।

ଗୁଳିକାଣ୍ଡର ବିଚାରଣାରେ ପ୍ରମାଣ ଅଭାବରୁ ଲକ୍ଷ୍ମୀ ଚନ୍ଦ୍ର ଦାସ ଛାଡ ପାଇଥିଲେ। ମାଧବ ପ୍ରଧାନୀଙ୍କୁ ୩ ବର୍ଷ ସଶ୍ରମ କାରାଦଣ୍ଡ ହୋଇଥିଲା। ଅନ୍ୟ ୯୨ ଜଣ ସଂଗ୍ରାମୀଙ୍କୁ ୬ ମାସରୁ ୯ ମାସ ପର୍ଯ୍ୟନ୍ତ ଜେଲ ଦଣ୍ଡ ହୋଇଥିଲା।

୧୯୮୦ ମସିହା ଅଗଷ୍ଟ ୨୪ ତାରିଖରେ ରାଧାକୃଷ୍ଣ ବିଶ୍ୱାସ ରାୟ ଏହି ଶହୀଦ୍‌ମାନଙ୍କ ସ୍ମୃତିରେ ଟୁରୀ ନଦୀର ତୀର ପ୍ରଦେଶରେ ଏକ ଶହୀଦ୍ ମୀନାରର ଭିତ୍ତି ପ୍ରସ୍ତର ସ୍ଥାପନ କରିଥିଲେ। ୧୯୮୪ ମସିହା ମେ ୨୩ ତାରିଖରେ ତତ୍‌କାଳୀନ ରାଜ୍ୟପାଳ ବିଶ୍ୱମ୍ଭର ନାଥ ପାଣ୍ଡେ ଏହି ମୀନାରର ଶୁଭ ଉଦ୍‌ଘାଟନ କରିଥିଲେ। ଏଠାରେ ୧୯ ଜଣ ଶହୀଦ୍‌ଙ୍କ ଆବକ୍ଷ ମୂର୍ତ୍ତି ଶୋଭା ପାଉଛି। ପ୍ରତିବର୍ଷ ଅଗଷ୍ଟ ୨୪ ତାରିଖରେ ଶହୀଦ୍‌ଙ୍କ ଉଦ୍ଦେଶ୍ୟରେ ସ୍ମୃତି ସଭା ହୁଏ।

ସହୀଦ୍‌ମାନଙ୍କୁ ଆମର ବିନମ୍ର ଶ୍ରଦ୍ଧାଞ୍ଜଳି।



# ସାଂପ୍ରତିକ ସମାଜ ଓ ଗାନ୍ଧିଜୀଙ୍କ ଏକାଦଶ ବ୍ରତ

ଆମେ ଏମତି ଏକ କାଳଖଣ୍ଡରେ ବଞ୍ଚିଛୁ ଯେଉଁଠାରେ ପ୍ରମତ୍ତ ହିଂସା ଅସତ୍ୟ ଅସହିଷ୍ଣୁତା ପ୍ରଚୁର ଭୋଗ ବିଳାସ, ଇନ୍ଦ୍ରିୟ ତୃପ୍ତିପାଇଁ ଦୁର୍ବାର ପ୍ରଚେଷ୍ଟା, ଦୁଷ୍କର୍ମ, ପରସ୍ୱ ଅପହରଣର ତୀବ୍ରମାନସିକତା ପ୍ରତି ମୁହୂର୍ତ୍ତରେ ଆମପାଇଁ ସନ୍ତ୍ରାସ ସୃଷ୍ଟି କରୁଛି। ଆମ ସୁଖ ଶାନ୍ତି ଓ ମହତ୍‌ପଣକୁ ଗ୍ରାସ କରିଗଲିଛି। ଏ ସବୁ ମଣିଷ ପ୍ରବୃତ୍ତିର ନକରାତ୍ମକ ଦିଗ। ଏହି ଆସୁରିକ ପ୍ରବୃତ୍ତିମାନଙ୍କ ଉପରେ ନିୟନ୍ତ୍ରଣ କରି ସକରାତ୍ମକ ଓ ଗଠନମୂଳକ ଜୀବନ ବଞ୍ଚିବା ଆଦୌ ଦୁରୂହ ବ୍ୟାପର ନୁହେଁ। ମହାତ୍ମାଗାନ୍ଧୀଙ୍କର ମଣିଷ ଉପରେ ଭରସା ଥିଲା। ମଣିଷ ଚାହିଁଲେ ସବୁ ଅସମ୍ଭବ ସମ୍ଭବ କରିପାରିବ। ଶାନ୍ତି ମୈତ୍ରୀ ପ୍ରୀତି ଭ୍ରାତୃତ୍ୱ, ସହଭାଗିତା, ସହାନୁଭବତା ଆଦି ଦିବ୍ୟ ଚେତନାର ବିକଶିତ କରି ରାମରାଜ୍ୟ ଫେରାଇ ଆଣିପାରିବ।

ମାନବ ଚରିତ୍ର ଅତ୍ୟନ୍ତ ଜଟିଳ। ପରସ୍ପର ବିରୋଧୀ ଗୁଡାଏ ପ୍ରବୃତ୍ତି ଭିତରେ ହିଂସା ଏକ ସର୍ବଗ୍ରାସୀ ରୂପ। ହିଂସାର ପରବର୍ତ୍ତୀ କ୍ରିୟା ଆକ୍ରମଣାତ୍ମକ ମାନସିକତା। ମଣିଷ ଥରେ ହିଂସା ରାକ୍ଷସ ଦ୍ୱାରା କବଳିତ ହୋଇଗଲେ ଆନୁସଙ୍ଗିକ ଭାବେ ଅନ୍ୟାନ୍ୟ ଧ୍ୱଂସମୁଖୀ ପ୍ରବୃତ୍ତି ତା ମସ୍ତିଷ୍କ ଭିତରେ ବସାବାନ୍ଧି ରହିଯାଆନ୍ତି। ଇତର ପ୍ରାଣୀ ହିଂସା ଆଚରଣ କରନ୍ତି ଜୈବିକ ଆବଶ୍ୟକତା

ପାଇଁ। କିନ୍ତୁ ମଣିଷର ହିଂସା ଆଚରଣ କେବଳ ଶାରୀରିକ ଆକ୍ରମଣ ଭିତରେ ସୀମିତ ନଥାଏ। ତାର କ୍ଷମତା ଲିପ୍‌ସା ସାମାଜିକ ବ୍ୟବସ୍ଥା ପ୍ରତି ଅସନ୍ତୋଷ, ପରିପାର୍ଶ୍ୱର ମଣିଷ ପ୍ରତି ଈର୍ଷା ଅସୂୟା ଭାବରୁ ଅପରରକ୍ଷତି କରିବା ଭାବନାରୁ ହିଂସା ରାକ୍ଷସ ତାର ଅବଚେତନରେ ମୁଣ୍ଡଟେକେ। ମଣିଷର ଶାନ୍ତି ନଷ୍ଟ ହୁଏ। ସକଳ ମାନବୀୟ ମୂଲ୍ୟବୋଧର ଅବକ୍ଷୟ ହୁଏ। ଏସବୁ କେବଳ ସାଂପ୍ରତିକ ସମସ୍ୟା ନୁହେଁ, ଆବହମାନ କାଳରୁ ମଣିଷର ହିଂସାତ୍ମକ ଆଚରଣ ଅନେକ ହତ୍ୟା ରକ୍ତପାତକୁ ସ୍ୱାଗତ କରିଆଣିଛି। ନୃତତ୍ତ୍ୱବିତ୍‌ମାନେ କହନ୍ତି ମାନବ ସଭ୍ୟତା ପ୍ରାୟତଃ ପାଞ୍ଚ ହଜାର ଛଅ ଶହ ବର୍ଷର ପୁରୁଣା। ଏ ଭିତରେ ପ୍ରାୟ ୧୪ ହଜାର ଛଅ ଶହ ଯୁଦ୍ଧ ସଂଘଟିତ ହୋଇଛି।

ମନସ୍ତତ୍ତ୍ୱବିତ୍ ଫ୍ରଏଡ୍ କହନ୍ତି, ପ୍ରତ୍ୟେକ ମଣିଷ ଭିତରେ ଏକ ମାରାତ୍ମକ ଶକ୍ତି ରହଛି, ଯାହା ପ୍ରତିମୁହୂର୍ତ୍ତରେ ତାକୁ ମୃତ୍ୟୁର୍ମୁଖୀ କରୁଥାଏ। ଏହି ଶକ୍ତି ଯେତେବେଳେ ବହିର୍ମୁଖୀ ହୁଏ ତାହା ଅନ୍ୟପାଇଁ ପ୍ରାଣ ଘାତକ ସାବ୍ୟସ୍ତ ହୋଇଥାଏ। ଅନ୍ୟମାନଙ୍କ ପ୍ରତି ସେ ହିଂସା ଆଚରଣ କରିଥାଏ। ସେହିପରି କନରାଡ୍ ଲରେଞ୍ଜ କହନ୍ତି ମଣିଷର ଅନ୍ୟାନ୍ୟ ପ୍ରବୃତ୍ତି ଏହି ଆକ୍ରମଣାତ୍ମକ ପ୍ରବୃତ୍ତି ବିବର୍ତ୍ତନ ପ୍ରକ୍ରିୟା ମାଧ୍ୟମରେ ବିକାଶ ଲାଭ କରିଛି। ଆମେ ଏହାକୁ କହୁ ପାଶବିକ ପ୍ରବୃତ୍ତି। ବ୍ୟକ୍ତିଗତ ହେଉ ଅଥବା ଗୋଷ୍ଠୀଗତ ସ୍ତରରେ ହେଉ ସମାଜ ଜୀବନରେ ଏ ହିଂସାଚରଣ ମଣିଷକୁ ସର୍ବଦା ସନ୍ତ୍ରସ୍ତ କରି ରଖିଥାଏ। ଉଦ୍ଦେଶ୍ୟ ସାଧନରେ ପ୍ରତିବନ୍ଧକ ହେଉଥିବା ଶକ୍ତିଗୁଡିକୁ ବିନାଶ କରିବାରେ ଏହି ହିଂସାତ୍ମକ ପ୍ରବୃତ୍ତିକୁ ବିନିଯୋଗ କରିଥାଏ। ମହାତ୍ମାଗାନ୍ଧୀ ମଣିଷର ଏହି ନକରାତ୍ମକ ଶକ୍ତି ଉପରେ ଜୟ ଲାଭ କରିବାର ସାମର୍ଥ୍ୟ ଅର୍ଜନ କରିଥିଲେ। ବିନା ରକ୍ତପାତରେ ସେ ଯେଉଁ ସବୁ ଅସାଧ ସାଧନ କରିଯାଇଥିଲେ ତାହା ସମଗ୍ର ବିଶ୍ୱକୁ ଚମତ୍କୃତ କରିଥିଲା। କେବେ ସୂର୍ଯ୍ୟାସ୍ତ ହେଉ ନଥିବା ଇଂରେଜ ସାମ୍ରାଜ୍ୟର ଶାସକଙ୍କୁ ଅସ୍ତ୍ରବଳରେ ନୁହେଁ ଆତ୍ମବଳରେ ଯେପରି ଦେଶାନ୍ତର କରିପାରିଥିଲେ ତାହା ଚିନ୍ତା କଲେ ଚକିତ ହେବାକୁ ହୋଇଥାଏ। ସେଇଥିପାଇଁ ତ ବିଶ୍ୱବିଖ୍ୟାତ ବୈଜ୍ଞାନିକ ଆଇନ୍‌ଷ୍ଟାଇନ୍ କହିଥିଲେ, "ଆଗାମୀ ପିଢ଼ି ବିଶ୍ୱାସ କରିବ ନାହିଁ ଯେ, ଗାନ୍ଧିଜୀଙ୍କ ପରି ଜଣେ ରକ୍ତମାଂସ ଧାରୀ ମଣିଷ ପୃଥିବୀରେ କେବେ ସମ୍ଭବ ହୋଇଥିଲେ। "ଭାରତ ଭୂଇଁରେ ଆଉଜଣେ ସୁବାଷ ବୋଷ

ସମ୍ଭବ ହୋଇପାରନ୍ତି, ଆଉଜଣେ ବିବେକାନନ୍ଦ ସମ୍ଭବ ହୋଇପାରନ୍ତି କିନ୍ତୁ ଜୀବନକୁ ଏକ ପ୍ରୟୋଗଶାଳା ମାନିଦେଇଥିବା ମହାତ୍ମା ଗାନ୍ଧୀଙ୍କ ପରି ବିରଳ ବ୍ୟକ୍ତିତ୍ୱ ସମ୍ଭବ ହେବା ବିଶ୍ୱାସ କରିହୁଏ ନାହିଁ।

ମହାତ୍ମାଗାନ୍ଧୀଙ୍କ ସାମାଜିକ ଜୀବନ, ରାଜନୈତିକ ଜୀବନ ଆଧାତ୍ମିକ ଜୀବନ ଓ ସୃଜନାତ୍ମକ ଜୀବନ ଏତେ ବ୍ୟାପକ ଥିଲା ଯେ ତାହା ଆକଳନ କରିବା ଆଦୌ ସହଜ ନୁହେଁ। ସତ୍ୟ ଓ ଅହିଂସା ରୂପକ ଦୁଇଟି ସ୍ତମ୍ଭ ଉପରେ ତାଙ୍କର ଜୀବନ ବ୍ୟାପୀ ସାଧନା ଦଣ୍ଡାୟମାନ ଥିଲା। ମୂଲ୍ୟବୋଧ ସମ୍ପନ୍ନ ନୀତିନିଷ୍ଠ ଜୀବନ ବଞ୍ଚିବା ପାଇଁ ସେ ଏକାଦଶ ବ୍ରତ ଦୀକ୍ଷା ନେଇଥିଲେ। ଯାହାକୁ ସେ ନିଜ ଜୀବନରେ ଅକ୍ଷରେ ଅକ୍ଷରେ ପାଳନ କରୁଥିଲେ। ଏମାନେ ତାଙ୍କ ଜୀବନ ପ୍ରୟୋଗ ଶାଳାର ଏକ ଏକ ଉପାଦାନ ରୂପେ ତାଙ୍କ ଜୀବନକୁ ପୂତ ପବିତ୍ର କରିଥିଲେ। ଅନ୍ୟମାନଙ୍କୁ ମଧ୍ୟ ଏହି ବ୍ରତରେ ଅନୁପ୍ରାଣୀତ ହେବାପାଇଁ ଆବେଦନ କରୁଥିଲେ। ଏଗୁଡିକ ହେଲା ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ, ଅସଂଗ୍ରହ, ଶରୀରଶ୍ରମ, ଅସ୍ୱାଦ, ଭୟବର୍ଜନ, ସର୍ବଧର୍ମ ସମାନତ୍ୱ, ସ୍ୱଦେଶୀ ଓ ସ୍ପର୍ଶ ଭାବନା।

ଶ୍ଳୋକ - ଅହିଂସା ସତ୍ୟ ଅସ୍ତେୟ, ବ୍ରହ୍ମଚର୍ଯ୍ୟ ଅସଂଗ୍ରହ।
ଶରୀର ଶ୍ରମ ଅସ୍ୱାଦ ସର୍ବତ୍ର ଭୟ ବର୍ଜନ
ସର୍ବ ଧର୍ମ ସମାନତ୍ୱ ସ୍ୱଦେଶୀ ସ୍ପର୍ଶ ଭାବନା
ବିନମ୍ର ବ୍ରତନିଷ୍ଠା ସେ ଯେ ଏକାଦଶ ସେବ୍ୟ ହେଁ।

ମହାତ୍ମାଗାନ୍ଧୀଙ୍କ ଜୀବନ ଚର୍ଯ୍ୟା ଆମ ପାଇଁ ଜୀବନ୍ତ ଗୀତା। ଆଚରଣ ଓ ଉଚ୍ଚାରଣରେ କୌଣସି ପାର୍ଥକ୍ୟ ନଥିବା ମହାତ୍ମାଗାନ୍ଧୀଙ୍କ ପ୍ରତିଟି କାର୍ଯ୍ୟ ଓ ବାକ୍ୟ ସାଂପ୍ରତିକ ଯୁଗ ଯନ୍ତ୍ରଣା କ୍ଲାନ୍ତ ମାନବ ପାଇଁ ଗାୟତ୍ରୀର ବୀଜମନ୍ତ୍ର। ନିଜ ଜୀବନକୁ କଠୋର ଅନୁଶାସନ ମଧ୍ୟରେ ସେ ଅନୁବନ୍ଧିତ କରିଥିଲେ। ହୋମାନଳ ପରି ନିଜକୁ ଶୁଦ୍ଧ ପୂତ କରିଥିବା ଗାନ୍ଧିଜୀଙ୍କ ସାର୍ଦ୍ଧଶତକ ବର୍ଷ ପୂର୍ତ୍ତି ଉପଲକ୍ଷ୍ୟେ ତାଙ୍କ ପ୍ରବର୍ତ୍ତିତ ଏକାଦଶ ବ୍ରତ ସଂପର୍କରେ ଏକ ସଂକ୍ଷିପ୍ତ ଆଲୋଚନା।

ଅହିଂସାର ସଜ୍ଞା ହେଲା – କାୟମନୋବାକ୍ୟରେ ଅପରକୁ ଶାରୀରିକ ଓ ମାନସିକ ଆଘାତ ନଦେବା। ଅହିଂସା କାପୁରୁଷର ଅସ୍ତ୍ର ନୁହେଁ। ଏହା ଅନନ୍ୟ

ସାହସ ଓ ପୌରୁଷର ଅଳଙ୍କାର। ଭାଗବତରେ କୁହାଯାଇଛି "ଦଣ୍ଡିବା ଶକ୍ତି ଯାର ଥାଇ, ସେ ଯଦି କ୍ଷମା ଆଚରଇ"। ଅସୀମ ଶାରୀରିକ ଶକ୍ତି ଥିବା ସତ୍ତ୍ୱେ ଶତ୍ରୁକୁ ହାନି ନ କରିବା କମ୍ ବଡ କଥା ନୁହେଁ। ଅହିଂସା ଜୀବନ ନେବା କଥା କହେ ନାହିଁ। ଜୀବନ ଦେବା କଥା କହେ। ସମସ୍ତଙ୍କୁ ସ୍ନେହ ପ୍ରେମ ଭଲ ପାଇବା ପ୍ରଦାନ କରିବା, ଅପରର ଅନିଷ୍ଟ ନକରିବା, ଆକ୍ରମଣାତ୍ମକ ନହେବା। ଏ ସବୁ ଅହିଂସା ପଦବାଚ୍ୟ। ଏସବୁ ସାଧାରଣ କଥା। କିନ୍ତୁ ଆମର ଯିଏ ଅନିଷ୍ଟ ସାଧନ କରୁଛି ତା ପ୍ରତି ପ୍ରେମ ଭାବ ପ୍ରଦର୍ଶନ କରିବା କମ୍ ବଡ ସାଧନାର କଥା ନୁହେଁ। ନୈତିକ ଓ ଆଧାତ୍ମିକ ଅଭ୍ୟାସ ବଳରେ ଏହି ଶକ୍ତି ଆହରଣ କରାଯାଇପାରେ। କେବଳ ବ୍ୟକ୍ତିଗତ ଇଛା ଅନିଛା ନୁହେଁ, ସାମାଜିକ ବିପ୍ଳବ ଓ ରାଜନୈତିକ ବିବର୍ତ୍ତନ ବ୍ୟବସ୍ଥା ବିରୁଦ୍ଧରେ ସଂଗ୍ରାମ ମଧ୍ୟ ଅହିଂସା ଉପାୟରେ ସମ୍ଭବ ହୋଇପାରେ, ତାର ନିଦର୍ଶନ ଆମକୁ ଦେଇଗଲେ ମହାତ୍ମାଗାନ୍ଧୀ। ହିଂସା ପ୍ରଣୋଦିତ ତରବାରୀର ଜୟ ଜୟ ନୁହେଁ। ପ୍ରେମପୂର୍ଣ୍ଣ ଉପାୟରେ ଶତ୍ରୁର ହୃଦୟକୁ ଜୟ କରିବା ହିଁ ପ୍ରକୃତ ଜୟ। ମହାତ୍ମାଗାନ୍ଧୀ ଏଥିରେ ସଫଳ ମନୋରଥ ହୋଇଥିଲେ। ଅନଶନ ଧର୍ମଘଟ ଆଇନ୍ ଅମାନ୍ୟ, ଅସହଯୋଗ, ଟିକସ ଫାଙ୍କି, ପିକେଟିଂ ଆଦି ମହାତ୍ମାଗାନ୍ଧିଙ୍କର ଅହିଂସା ଅସ୍ତ୍ର ଥିଲା। ତାଙ୍କ ଆଚରିତ ଅହିଂସା ବିଶ୍ୱବାସୀଙ୍କୁ ଚମତ୍କୃତ କରିଥିଲା। ସାଂପ୍ରତିକ ହିଂସା ପ୍ରମତ୍ତ ସମାଜକୁ ଶୃଙ୍ଖଳିତ କରିବାପାଇଁ ବିଶ୍ୱବାସୀ ଏବେ ବୁଝିପାରିଛନ୍ତି ଅହିଂସାର ମହତ୍ତ୍ୱ। ଅକ୍ଟୋବର ଦୁଇ ତାରିଖ ମହାତ୍ମାଗାନ୍ଧିଙ୍କ ଜନ୍ମ ଦିବସକୁ ଆନ୍ତର୍ଜାତିକ ଅହିଂସା ଦିବସ ରୂପେ ବିଶ୍ୱ ପାଳନ କରୁଛି।

ମହାତ୍ମାଗାନ୍ଧୀଙ୍କ ପାଇଁ ସତ୍ୟ ହିଁ ସୁନ୍ଦର। ସତ୍ୟ ହିଁ ଶକ୍ତି ଓ ସତ୍ୟ ହିଁ ଈଶ୍ୱର। ସତ୍ୟର ଶକ୍ତି ବଳରେ ମଣିଷ ଅସାଧ୍ୟ ସାଧନ କରିପାରେ। ମିଥ୍ୟା ନ କହିବା କେବଳ ସତ୍ୟର ସଜ୍ଞା ଭିତରେ ସୀମିତ ନୁହେଁ। ସତ୍ୟ ବଚନ, ସତ୍‌ଚିନ୍ତା, ସତ୍ ଚେତନା, ସତ୍ ଭାବନା ଆଦି ସତ୍ୟର ପରିସର ଭୁକ୍ତ। ସତ୍ୟକୁ ଉପଲବ୍ଧି କରିଥିବା ମଣିଷର ଜୀବନରେ ପୂର୍ଣ୍ଣତା ପ୍ରାପ୍ତି ହୋଇଥାଏ। ସତ୍ୟ ଓ ଅହିଂସା ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱ। ସତ୍ୟ ଓ ଅହିଂସା ପରସ୍ପର ପରିପୂରକ। ସେ ତାଙ୍କ ଜୀବନ କାଳ ମଧ୍ୟରେ ସତ୍ୟ ପଥରୁ ତିଳେ ମାତ୍ର ଟଳୁ ନଥିଲେ।

ଅସ୍ତେୟ ହେଉଛି ଅଚୌର୍ଯ୍ୟ । ଅର୍ଥାତ୍ ଚୋରି ନ କରିବା, ଚୋରି କରିବା ଏକ ଧର୍ତ୍ତବ୍ୟ ଅପରାଧ । ସାଧାରଣ ଅର୍ଥରେ ଅପରର ଦ୍ରବ୍ୟ ନିଜସ୍ୱ କରିବାର ଅପଚେଷ୍ଟା ହେଉଚି ଚୋରି । ମହାତ୍ମାଗାନ୍ଧୀଙ୍କ ଦର୍ଶନରେ ଏ ଚୋରୀ ଶବ୍ଦ ବ୍ୟାପକ ଅର୍ଥରେ ପ୍ରୟୋଗ ହୋଇଛି । ଏପରିକି ପରିବାରର ଜଣେ ସଦସ୍ୟ ଅନ୍ୟ ସଦସ୍ୟଙ୍କୁ ସୁଖ ସୁବିଧାରୁ ବଞ୍ଚିତ କରି ନିଜେ ଭୋଗ ବିଳାସ କରିବାକୁ ସେ ଚୋରି କହୁଥିଲେ । ସମାଜର ଗୋଟିଏ ବର୍ଗର ଲୋକ ଦୁଃଖ ଦାରିଦ୍ର୍ୟ ଭିତରେ ସଢୁଥିବାବେଳେ ଆଉ ଗୋଟିଏ ବର୍ଗର ଲୋକେ ବିଳାସ ବ୍ୟସନରେ କଳାତିପାତ ବି ତାଙ୍କ ବିଚାରରେ ଚୋରି ଥିଲା । ସେ ଗୋଟିଏ ଶ୍ରେଣୀ ବିହୀନ ସନ୍ତୁଳିତ ସମାଜ ଚାହୁଁଥିଲେ, ଯେଉଁଠାରେ ସହଭାଗିତା ହେବ ସମାଜର ଅନ୍ୟତମ ଲକ୍ଷଣ । ଅସ୍ତେୟ ବ୍ରତ ଅନୁସାରେ ଜୀବନରେ ସର୍ବନିମ୍ନ ଆବଶ୍ୟକତାରେ ମଣିଷ ସନ୍ତୁଷ୍ଟ ରହିଲେ ଅନ୍ୟର ଦ୍ରବ୍ୟପ୍ରତି ପ୍ରଲୋଭନ ରହିବ ନାହିଁ ।

ଆମର ଯେତିକି ଆବଶ୍ୟକ ତା'ଠାରୁ ଅଧିକ ଅର୍ଥ ଠୁଳ କରି ରଖିବା ମଧ ଚୌର୍ଯ୍ୟ ପ୍ରବୃତ୍ତି ବୋଲି ସେ କହୁଥିଲେ । ମହାତ୍ମାଗାନ୍ଧୀ ଏହାକୁ ପାପ ବୋଲି କହୁଥିଲେ । ଜୀବନଟା କେବଳ ଭୋଗ ବିଳାସ ନୁହେଁ, ଆମେ ଅନ୍ୟକୁ କେତେ ଦାନ କରି ପାରୁଛେ, ସେହି ଠାରେ ଜୀବନର ମହତ୍ତ୍ୱ ଫୁଟି ଉଠେ । ଆମ ପାଖରେ ଗଛିତ ସଂପତ୍ତିକୁ ଅକୁଣ୍ଠ ଦାନ କରି ପାରିଲେ ଆମକୁ ଜୀବନରେ ସବୁକିଛି ମିଳିଯିବାର ଆନନ୍ଦ ଆମେ ଅନୁଭବ କରିପାରିବା । ତାହାହିଁ ପ୍ରାପ୍ତିର ପ୍ରଶାନ୍ତି । ସରଳ ଜୀବନ ଯାପନ ଓ ଉଚ୍ଚ ଚିନ୍ତନ ହିଁ ମଣିଷ ଜୀବନର ମୂଲ୍ୟବୋଧ ହେବା ଉଚିତ୍ । ସଂପତ୍ତି ଠୁଳ କରିବାର ତୀବ୍ର ଇଚ୍ଛା ସାଂପ୍ରତିକ ମଣିଷକୁ ଦୁର୍ନୀତିଗ୍ରସ୍ତ ଓ ନୀତିହୀନ କରିଦେଇଛି । ସକଳ ସାମାଜିକ ବିଭ୍ରାଟ ମୂଳରେ ସମ୍ପତ୍ତି ଲାଳସା । ଧନୀ ହେବାର ପ୍ରତିଯୋଗିତା । ସବୁ ଦୁର୍ଭୋଗର ମୂଳ ମଣିଷର ଲୋଭ । କଳା ବଜାରୀ ଟାଉଟରୀ, ଲାଞ୍ଚମିଛ, ପ୍ରତାରଣା ମୂଳରେ ରହିଛି ସେହି ଧନୀ ହେବାର ମୋହ । ମଣିଷକୁ ଏହି ବସ୍ତୁବାଦୀ ଚେତନାରୁ ମୁକ୍ତ ରଖିବାପାଇଁ ମହାତ୍ମାଗାନ୍ଧୀଙ୍କ ଅସ୍ତେୟ ବ୍ରତ ମହୋଷଧି ସ୍ୱରୂପ ।

ଇନ୍ଦ୍ରିୟମାନଙ୍କୁ ନିଜ ନିୟନ୍ତ୍ରଣରେ ରଖି ନିଜ ଇଚ୍ଛାମତେ ସେମାନଙ୍କୁ

ପରିଚାଳିତ କରିବା ବ୍ରହ୍ମଚର୍ଯ୍ୟର ଲକ୍ଷଣ। ମହାତ୍ମାଗାନ୍ଧୀ କହୁଥିଲେ ଗୋଟିଏ ଇନ୍ଦ୍ରିୟକୁ ନିୟନ୍ତ୍ରଣରେ ରଖି ଅନ୍ୟ ଇନ୍ଦ୍ରିୟମାନଙ୍କୁ ସନ୍ତୁଷ୍ଟ କରିବାପାଇଁ ଛାଡିଦେବା ଲୋକ ମିଥ୍ୟାଚାରୀ। କାନକୁ ମଧୁର ଲାଗିବାପାଇଁ କଥା ଶୁଣିବା, ଆଖିକୁ ରୁଚିବା ପରି ଦୃଶ୍ୟ ଦେଖିବା, ଜିହ୍ୱାକୁ ସ୍ୱାଦ ଲାଗିବା ପରି ଭୋଜନ କରିବା ଦ୍ୱାରା ମଣିଷ ଇନ୍ଦ୍ରିୟମାନଙ୍କର ଦାସ ପାଲଟିଯାଏ। ଇନ୍ଦ୍ରିୟମାନେ ଅଶ୍ୱତୁଲ୍ୟ। ଏମାନଙ୍କୁ ଲଗାମ ନଦେଲେ ମଣିଷର ଗତି ଧ୍ୱଂସମୁଖୀ ହେବ। ସଭ୍ୟତାର ବିକାଶ ସଙ୍ଗେ ସଙ୍ଗେ ଆଧୁନିକ ଜ୍ଞାନ କୌଶଳ ମଣିଷ ଆଗରେ ବିଳାସ ସାମଗ୍ରୀକୁ ଏତେ ସହଜ ଲଭ୍ୟ କରି ଯେ ଇନ୍ଦ୍ରିୟ ତୃପ୍ତିପାଇଁ ଆଉ ତାକୁ କଷ୍ଟ କରିବାକୁ ପଡୁନାହିଁ। ସବୁ ମୂଲ୍ୟ ବୋଧ ଜଳାଞ୍ଜଳି ଦେଇ କେବଳ କାମନାର ପରିତୃପ୍ତିକୁ ଜୀବନର ଲକ୍ଷ୍ୟ ବୋଲି ଗ୍ରହଣ କରିନେଇଛି। ଫଳତଃ ସମାଜ ଅବକ୍ଷୟମୁଖୀ ହୋଇ ପଡ଼ିଛି। ଶୃଙ୍ଖଳିତ ସମାଜ ଗଠନ ପାଇଁ ମହାତ୍ମାଗାନ୍ଧୀଙ୍କ ବିଚାର ଧାରାର ଆବଶ୍ୟକତା ମର୍ମେ ମର୍ମେ ଅନୁଭବ କରିହେଉଛି।

ଆଜିର ମଣିଷ ଶରୀର ଶ୍ରମକୁ ହୀନକର୍ମ ବୋଲି ବିଚାର କରୁଛି। ମାନସିକ ଶ୍ରମ ମର୍ଯ୍ୟାଦା ଜନକ ବୋଲି ବିଚାର କରିବା ହେତୁ ସମାଜରେ ଏବେ ନୂତନ ଶ୍ରେଣୀ ବୈଷମ୍ୟ ସୃଷ୍ଟି ହେଉଛି। ଶରୀର ଶ୍ରମ ଅଭାବରୁ ମଣିଷ ବିଭିନ୍ନ ରୋଗ ବୈରାଗ୍ୟର ଶିକାର ହେଉଛି। ଶରୀର ଏକ ଯନ୍ତ୍ର ପରି। ତାହା ଠିକ୍ ଭାବେ ଉପଯୋଗ ହୋଇ ନପାରିଲେ ଅକାମୀ ହୋଇପଡେ। ମହାତ୍ମାଗାନ୍ଧୀ ଶରୀର ଶ୍ରମ ସଂପର୍କରେ କହୁଥିଲେ। ଜଣେ ନିଜର ଖାଦ୍ୟ ସଂଗ୍ରହ କରିବାପାଇଁ ତା ଶରୀରର ଉପଯୋଗ କରିବା ନିହାତି ଆବଶ୍ୟକ। ଅନ୍ୟଥା ତାହା ଚୋରି। କେବଳ ନିଜର ଖାଦ୍ୟ ସଂଗ୍ରହ ପାଇଁ ଶରୀର ଶ୍ରମ ଯଥେଷ୍ଟ ନୁହେଁ। ମାନବ ସେବାପାଇଁ ମଧ୍ୟ ଶରୀର ଶ୍ରମ ଦାନର ଯଥେଷ୍ଟ ଆବଶ୍ୟକତା ରହିଛି।

ଆଜିର ଭୋଜନ ସର୍ବସ୍ୱ ସଭ୍ୟତାରେ ବିଭିନ୍ନ ସ୍ୱାଦଯୁକ୍ତ ଖାଦ୍ୟ ଆସ୍ୱାଦନ କରିବା ଏକ ବିଳାସ ହୋଇପଡିଛି। ସତେଯେମିତି ମଣିଷ ବଞ୍ଚିବା ପାଇଁ ଭୋଜନ କରୁନାହିଁ, ଭୋଜନ କରିବାପାଇଁ ବଞ୍ଚୁଛି। ଯେ କୌଣସି କାର୍ଯ୍ୟକ୍ରମରେ ଭୁରି ଭୋଜନର ବ୍ୟବସ୍ଥା ନଥିଲେ କାର୍ଯ୍ୟ ଆଗକୁ ଯାଉନାହିଁ। ଗୋଟାଏ ବର୍ଗର ଲୋକେ ଅନାହାରରେ ମରୁଥିବାବେଳେ ଆଉ କେତେଜଣ

ଅତ୍ୟାହାରରେ ମରୁଛନ୍ତି । ଚର୍ବ୍ୟ ଚୋଷ୍ୟ ଲେହ୍ୟ ପେୟର ଉତ୍ସବ ଚାଲୁଥିବାବେଳେ ଦିନକୁ ଦୁଇବେଳା ଖାଇବାକୁ ପାଉନଥିବା ଲୋକଙ୍କର ଅଭାବ ନାହିଁ। ଆସୁରିକ ପ୍ରବୃତ୍ତିର ଚରିତାର୍ଥ ପାଇଁ ଆମେ ସୁମିଷ୍ଟ ବ୍ୟଞ୍ଜନ ପ୍ରତି ପ୍ରଲୋଭିତ ହୋଇ ବିଭିନ୍ନ ଉଦର ରୋଗରେ ପୀଡିତ ହେବା ସଙ୍ଗେ ସଙ୍ଗେ ଦୁଃଖୀରଙ୍କିଙ୍କର ଖାଦ୍ୟ ଖାଇ ଦେଉଛୁ। ତେଣୁ ଅତିରିକ୍ତ ସ୍ୱାଦଯୁକ୍ତ ଖାଦ୍ୟ ପରିବର୍ତ୍ତେ ଶରୀର ରକ୍ଷା କରିବାପାଇଁ ଯେତିକି ଖାଦ୍ୟର ଆବଶ୍ୟକତା ରହିଛି ସେତିକି ଭୋଜନ କରିବା ଉଚିତ୍। ଆହାରେ ଭଲମନ୍ଦ ନାହିଁ, ଯେ ସ୍ଥାନେ ଯେମନ୍ତ ମିଳଇ। ଏହାହିଁ ଆମ ଭାରତୀୟ ଚିନ୍ତନ। ଆମେ ତାହା ବିସ୍ମରିଲୁଣି।

ଭୟଶୂନ୍ୟ ଜୀବନ ଉପରେ ମହାତ୍ମାଗାନ୍ଧୀ ଗୁରୁତ୍ୱ ଦେଉଥିଲେ। ଦେବୋଽପି ଦୁର୍ବଳାଃ ଘାତକାଃ। ଦେବତାମାନେ ସୁଦ୍ଧା ଦୁର୍ବଳମାନଙ୍କ ଉପରେ ଆଘାତ କରିଥା'ନ୍ତି। ଯେ ପର୍ଯ୍ୟନ୍ତ ମଣିଷ ମନରୁ ଭୟଦୂର ହୋଇନାହିଁ ତାର ସର୍ବାଙ୍ଗୀନ ବିକାଶ ଅସମ୍ଭବ, ଏ ଭୟ ବିଭିନ୍ନ ପ୍ରକାରରେ ମଣିଷମାନଙ୍କୁ ଗ୍ରାସ କରିଥାଏ। ମୃତ୍ୟୁଭୟ, ଆଘାତର ଭୟ, କ୍ଷୁଧାଭୟ, ଅପମାନର ଭୟ, ଭୂତପ୍ରେତ ଭୟ ଆଦି ବିଭିନ୍ନ ପ୍ରକାର ଭୟ ମଣିଷର ଆତ୍ମବଳକୁ କାବୁକରି ରଖିଥାଏ। ଏ ଭୟମାନଙ୍କରୁ ମୁକ୍ତ ହୋଇ ସେ ନିର୍ଭୀକ ହେବା ଉଚିତ୍। ଭୟଶୂନ୍ୟ ଅର୍ଥ ନୁହେଁ, ଅନ୍ୟମାନଙ୍କ ଭିତରେ ଭୟସୃଷ୍ଟି କରିବା। ନିଜେ ଆକ୍ରମଣାତ୍ମକ ହେବା। ବରଂ ଯେକୌଣସି ପରିସ୍ଥିତିର ସମ୍ମୁଖୀନ ହେବା ବେଳେ ଚିତ୍ତ ଶାନ୍ତ ରଖିବା ଉଚିତ୍। ଏଥିପାଇଁ ଆଧ୍ୟାତ୍ମିକ ଚେତନା ଓ ଭଗବତ୍ ବିଶ୍ୱାସ ହିଁ ମୂଳ ଆଧାର।

ସର୍ବଧର୍ମ ସମାନତ୍ୱ ଗାନ୍ଧି ଦର୍ଶନର ଅନ୍ୟତମ ବିଭବ। ଏକେଶ୍ୱର ବାଦରେ ବିଶ୍ୱାସ କରୁଥିବା ଗାନ୍ଧିଜୀ କହୁଥିଲେ ଯିଏ ଯେଉଁ ନାମରେ ଡାକୁ ନା କାହିଁକି ଭଗବାନ୍ ଏକ୍। ସେ ହିଁ ଆଲ୍ଲା, ସେ ହିଁ ଈଶ୍ୱର, ସେ ହିଁ ଯୀଶୁ ଓ ବୁଦ୍ଧ। ତାଙ୍କ ପ୍ରଣୋଦିତ ସର୍ବଧର୍ମ ପ୍ରାର୍ଥନାରେ ସେ ସମସ୍ତଙ୍କୁ ସମ୍ମାନ ପ୍ରଦର୍ଶନ କରୁଥିଲେ, ତାଙ୍କ ପାଇଁ ଗୀତା ଯାହା ବାଇବେଲ ଓ କୋରାନ୍ ବି ତାହା। କୌଣସିଟି ଉଚ୍ଚ ନୁହେଁ କି ନୀଚ୍ଚ ନୁହେଁ। ସାଂପ୍ରତିକ ଯୁଗରେ ଧର୍ମକୁ ନେଇ ଯେତେ ସବୁ ଅଘଟଣ ଘଟୁଛି ତାକୁ ରୋକିବା ପାଇଁ ମହାତ୍ମାଗାନ୍ଧୀଙ୍କ ସର୍ବଧର୍ମ ସମାନତ୍ୱର

ଆହ୍ୱାନ ମହୌଷଧି ତୁଲ୍ୟ। ସକଳ ଧର୍ମକୁ ଏକ ନଜରରେ ଦେଖିବା, ଅନ୍ୟ ଧର୍ମ ପ୍ରତି ଅସହିଷ୍ଣୁ ନହେବା, ପରସ୍ପର ଧର୍ମ ପ୍ରତି ସମ୍ମାନ ପ୍ରଦର୍ଶନ କରିବା ପାଇଁ ମହାତ୍ମାଗାନ୍ଧୀ ଆହ୍ୱାନ ଦେଉଥିଲେ। ସକଳ ଧର୍ମର ମୂଳତତ୍ତ୍ୱ ସେଇ ଅହିଂସା ଓ ସତ୍ୟ। କିନ୍ତୁ ଅସତ୍ୟ ଓ ହିଂସାର ଅସ୍ତ୍ରରେ ଆମେ ଆମ ଧର୍ମକୁ ରକ୍ଷା କରୁଛୁ ବୋଲି ବାହାସ୍ଫୋଟ ମାରୁଛୁ। ଯାହା ଫଳରେ ଧର୍ମର ମୂଳ ଉଦ୍ଦେଶ୍ୟ ଆଧ୍ୟାତ୍ମିକ ଚେତନା ଆମଠାରୁ ଦୂରୀଭୂତ ହୋଇଯାଉଛି। ଧର୍ମ ନାମରେ ଅସହିଷ୍ଣୁ ଭାବ ସକଳ ସାମାଜିକ ବିଭ୍ରାଟକୁ ସ୍ୱାଗତ କରିଆଣୁଛି।

ଭାରତୀୟମାନେ ସ୍ୱଦେଶୀ ବସ୍ତୁ ବ୍ୟବହାର କରନ୍ତୁ ବୋଲି ମହାତ୍ମାଗାନ୍ଧୀଙ୍କର ଅନ୍ୟତମ ସ୍ୱପ୍ନ ଥିଲା। ଜଣେ ପ୍ରକୃତ ଦେଶପ୍ରେମୀ ନିଜ ମାଟିର ଶ୍ରମିକମାନଙ୍କ ଶ୍ରମକୁ ମର୍ଯ୍ୟାଦା ପ୍ରଦର୍ଶନ କରିବା ଉଚିତ। ସ୍ୱଦେଶୀ ଚେତନାର ଅର୍ଥ କେବଳ ବିଦେଶୀ ବସ୍ତୁ ବର୍ଜନ ଅର୍ଥରେ କହୁନଥିଲେ। ଆମର ନିକଟତମ ପ୍ରତିବେଶୀ ନିର୍ମାଣ କରୁଥିବା ଦ୍ରବ୍ୟକୁ ପରିହାର କରି ଦୂର ଦୂରାନ୍ତର ବସ୍ତୁ ବ୍ୟବହାର କରିବା ମଧ୍ୟ ସ୍ୱଦେଶୀ ଚିନ୍ତନର ପରିପନ୍ଥୀ। ଆମ ନିକଟତମ ଲୋକଙ୍କର ଉତ୍ପାଦିତ ବସ୍ତୁ ଆମେ ବ୍ୟବହାର କଲେ ତାହା ସ୍ଥାନୀୟ ଲୋକଙ୍କର ଆର୍ଥିକ ବିକାଶ ନିମନ୍ତେ ସହାୟକ ହେବ। ସେମାନଙ୍କର ଶ୍ରମର ଯଥାର୍ଥ ବିନିଯୋଗ ହୋଇପାରିବ।

ଜାତିବାଦ ଓ ସେଥିରୁ ଉଦ୍‌ଭବ ସ୍ପୃଶ୍ୟାସ୍ପୃଶ୍ୟ ଭାବନା ଆମ ଭାରତୀୟ ସମାଜର କଳଙ୍କ। ଧର୍ମନାମରେ ମଣିଷକୁ ଅସ୍ପୃଶ୍ୟ ବୋଲି କହିବା ଜଘନ୍ୟ ଅପରାଧ। ଏବେ ସୁଦ୍ଧା ଆମ ସମାଜରୁ ଏହାର ଅନ୍ତ ହୋଇନାହିଁ। ମହାତ୍ମାଗାନ୍ଧୀ ଏଥିପାଇଁ ବେଦନା ବ୍ୟଥିତ ହୋଇପଡୁଥିଲେ। ସେଇଥିପାଇଁ ତ ତଥାକଥିତ ଅଛୁଆଁମାନଙ୍କୁ ସେ ହରିଜନ ବା ଈଶ୍ୱରଙ୍କ ସନ୍ତାନ ଆଖ୍ୟା ଦେଇଥିଲେ।

ସାଂପ୍ରତିକ ଦିଗଭ୍ରଷ୍ଟ ସମାଜକୁ ଯନ୍ତ୍ରଣାକ୍ଳାନ୍ତ ମଣିଷକୁ ଯଥାର୍ଥ ମାର୍ଗ ଦର୍ଶନ କରିବାପାଇଁ ଏକମାତ୍ର ମହାତ୍ମାଗାନ୍ଧୀଙ୍କ ଏକାଦଶବ୍ରତ ଦର୍ଶନ ହିଁ ସମର୍ଥ ହୋଇପାରିବ। ତାଙ୍କର ସାର୍ଦ୍ଧଶତକ ବର୍ଷରେ ଆମେ କ୍ରମବିସ୍ମୃତ ହୋଇପଡୁଥିବା ଗାନ୍ଧୀ ଓ ତାଙ୍କ ଦର୍ଶନକୁ ଜୀବନର ମୂଳମନ୍ତ୍ର କରିବାର ଶପଥ ନେବା। ଏହାହିଁ ହେବ ତାଙ୍କ ପ୍ରତି ସାର୍ଥକ ଶ୍ରଦ୍ଧାଞ୍ଜଳି।



# ବିକ୍ରମଦେବ ବର୍ମାଙ୍କ ନାଟ୍ୟ ପ୍ରତିଭା

ବିକ୍ରମଦେବ ବର୍ମା ନାଟ୍ୟପ୍ରିୟ ମଣିଷଟିଏ ଥିଲେ । ତାଙ୍କର ନାଟ୍ୟ ପ୍ରବଣତା ତାଙ୍କୁ ରଙ୍ଗମଞ୍ଚ ନିର୍ମାଣ ଓ ନାଟକ ରଚନାପାଇଁ ଉତ୍ସାହିତ କରିଥିଲା । ତାଙ୍କ ଜୀବନର ମହତ୍ତ୍ୱପୂର୍ଣ୍ଣ ସମୟ ୧୮୮୫ ଖ୍ରୀଷ୍ଟାବ୍ଦରୁ ୧୯୨୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ସେ ବିଶାଖା ପାଟଣାରେ ଅବସ୍ଥାନ କରିଥିଲେ । ସେ ସମୟରେ ବିଶାଖାପାଟଣାରେ ଜଗନ୍ମିତ୍ର ସମାଜ ନାମରେ ଏକ ସଂଘଥିଲା । ଏହି ସଂଘର ସେ ସଦସ୍ୟତା ଗ୍ରହଣ କରିଥିଲେ ଓ ଏକ ସ୍ଥାୟୀ ରଙ୍ଗମଞ୍ଚ ନିର୍ମାଣ କରିବାପାଇଁ ଦଶହଜାର ଟଙ୍କା ପ୍ରଦାନ କରିଥିଲେ । ଏହି ରଙ୍ଗମଞ୍ଚର ନାମ ଥିଲା ଜଗନ୍ମିତ୍ର ହଲ୍ । ଏଥିରେ ପ୍ରଥମେ କେବଳ ତେଲୁଗୁ ନାଟକ ଅଭିନୀତ ହେଉଥିଲା । ପରେ ତାଙ୍କ ପ୍ରଚେଷ୍ଟାରେ ବିଭିନ୍ନ ଓଡ଼ିଆ ନାଟ୍ୟକାରଙ୍କର ନାଟକ ମଧ୍ୟ ମଞ୍ଚସ୍ଥ ହେଲା । ଏହି ହଲ୍‌ର ନିତ୍ୟନୂତନତା ପାଇଁ ସେ ନିଜେ ଉଭୟ ଓଡ଼ିଆ ଓ ତେଲୁଗୁ ଭାଷାରେ ନାଟକ ରଚନା କରିଥିଲେ । ତାଙ୍କ ରଚିତ ପ୍ରଥମ ନାଟକ ସଂଗୀତ ରାଧାମାଧବ ଏହିଠାରେ ଅଭିନୀତ ହୋଇଥିଲା । ସେ ରଚନାକରିଥିବା ତେଲୁଗୁ ନାଟକମାନଙ୍କ ମଧ୍ୟରେ ମାନବତୀ ଚରିତମ୍, ଶ୍ରୀନିବାସ କଲ୍ୟାଣମ୍ ଆଦି ପ୍ରଧାନ । ବହୁଦିନ ପର୍ଯ୍ୟନ୍ତ ଏହି ନାଟକ ଦୁଇଖଣ୍ଡ ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟ ପାଠ୍ୟକ୍ରମ ଅନ୍ତର୍ଭୁକ୍ତ ଥିଲା । ତାଙ୍କ ରଚିତ ଆଉ

ଦୁଇଖଣ୍ଡ ଓଡ଼ିଆ ନାଟକ ହେଉଛି 'ବୁଦ୍ଧ ଚରିତ' ଓ 'ଉତ୍କଳ କୁନ୍ଦମାଳା'। ଗୋଟିଏ ରଙ୍ଗମଞ୍ଚରେ ତାଙ୍କ ରଚିତ ଓଡ଼ିଆ ଓ ତେଲୁଗୁ ନାଟକ ଅଭିନୀତ ହେବାଦ୍ୱାରା ସେ ଦୁଇଭାଷୀ ଭାଷୀଙ୍କର ପ୍ରିୟ ଓ ପ୍ରଶଂସା ଭାଜନ ହୋଇଥିଲେ। କିନ୍ତୁ ଦୁର୍ଭାଗ୍ୟ ବଶତଃ ୧୯୨୩ ମସିହାରେ ଏକ ପ୍ରାକୃତିକ ବିପର୍ଯ୍ୟୟ ଝଡତୋଫାନର ଶିକାର ହୋଇ ଜଗନ୍ମିତ୍ର ହଲ୍ ଓ ଏଠାକାର ମୂଲ୍ୟବାନ ଉପକରଣ ସବୁ ନଷ୍ଟ ହୋଇଗଲା। ସଂସ୍କୃତ ଓ ସମନ୍ୱୟର ପୀଠ ଜଗନ୍ମିତ୍ର ହଲ୍‌ର କ୍ଷୟକ୍ଷତି ବିକ୍ରମଦେବଙ୍କୁ ଦାରୁଣ ଯନ୍ତ୍ରଣା ଦେଇଥିଲା। ଏହାପରେ ସେ ସେହି ସ୍ଥାନରେ ଶ୍ରୀରାମଲୀଳା ନାମକ ଏକ ରଙ୍ଗମଞ୍ଚ ସ୍ଥାପନ କରିଥିଲେ। ଏଠାରେ କେବଳ ଶ୍ରୀରାମଙ୍କର ଜନ୍ମଠାରୁ ରାବଣର ମୃତ୍ୟୁ ପର୍ଯ୍ୟନ୍ତ ଆଖ୍ୟାନ ଉପାଖ୍ୟାନକୁ ନାଟ୍ୟରୂପ ଦିଆଯାଇ ଅଭିନୀତ ହେଉଥିଲା। ବିକ୍ରମଦେବ ବର୍ମାଙ୍କର କାବ୍ୟ କବିତା, ଗଳ୍ପ ପ୍ରବନ୍ଧ ଅନୁସୃଜନ ଆଦି ଅନ୍ୟାନ୍ୟ ସାହିତ୍ୟିକ ପ୍ରତିଭା ତାଙ୍କୁ ଯେପରି ବୁଦ୍ଧିଜୀବୀ ମହଲରେ ଗୌରବ ପ୍ରଦାନ କରିଥିଲା ତାଙ୍କ ନାଟ୍ୟ ପ୍ରିୟତା ତାଙ୍କୁ ସେହିପରି ସାଧାରଣ ଜନତାଙ୍କ ଶ୍ରଦ୍ଧା ଭାଜନ କରିଥିଲା। ନାଟ୍ୟପ୍ରିୟ ବିକ୍ରମ ଦେବ ବର୍ମାଙ୍କର ବିରଚିତ ଓଡ଼ିଆ ନାଟକ ଉପରେ ଆଲୋକପାତ କରିବା ପୂର୍ବରୁ ତାଙ୍କ ରଚିତ ତେଲୁଗୁ ନାଟକ ଦୁଇଟି ଉପରେ ବିହଙ୍ଗାବଲୋକନର ଆବଶ୍ୟକତା ଅନୁଭବ କରିହୁଏ।

**ଶ୍ରୀନିବାସ କଲ୍ୟାଣ ନାଟକ (୧୮୯୯)**

ଏହା ଏକ ପାଞ୍ଚଅଙ୍କ ବିଶିଷ୍ଟ ନାଟକ। କର୍ଣ୍ଣାଟକ ପ୍ରଦେଶର ମହାରାଷ୍ଟ୍ର ସଂଘ ନାମକ ଏକ କମ୍ପାନୀ ଏହାକୁ ବିଶାଖାପାଟଣାରେ ମଞ୍ଚସ୍ଥ କରିଥିଲେ। ଜଗନ୍ମିତ୍ର ରଙ୍ଗମଞ୍ଚରେ ତେଲୁଗୁ ଭାଷାରେ ଅଭିନୀତ କରିବାପାଇଁ ବିକ୍ରମ ଦେବବର୍ମା ନାଟକଟିକୁ ତେଲୁଗୁରେ ଅନୁବାଦ କରିଥିଲେ। ଶ୍ରୀନିବାସ କଲ୍ୟାଣ ନାଟକ ଲକ୍ଷ୍ମୀ ଓ ବିଷ୍ଣୁଙ୍କର ଲୀଳା ସଂପର୍କୀୟ ଆଖ୍ୟାନ। କୌଣସି କାରଣବଶତଃ ଲକ୍ଷ୍ମୀ ଓ ବିଷ୍ଣୁଙ୍କ ମଧ୍ୟରେ ମନାନ୍ତର ଘଟିଲା। ଦୁହେଁ ଦୁହିଁଙ୍କ ପାଖରୁ ବହୁକାଳ ପର୍ଯ୍ୟନ୍ତ ପୃଥକ୍ ହୋଇ ରହିଲେ। ଏହାପରେ ସେମାନଙ୍କର ବିଭିନ୍ନ ନାମରେ ଜନ୍ମ ହୋଇଛି। ଶେଷରେ ଗୋଟିଏ ସ୍ଥାନରେ ଲକ୍ଷ୍ମୀ ପଦ୍ମାବତୀ ନାମରେ ଓ ବିଷ୍ଣୁ ଶ୍ରୀନିବାସ ରୂପରେ ଜନ୍ମ ହୋଇଛନ୍ତି। ଦୁହିଁଙ୍କର ବିବାହ ସଂପନ୍ନ ହୋଇଛି ଏବଂ ସେମାନଙ୍କର ପୁନର୍ମିଳନ ହୋଇଛି।

ଭାଷା ଓ ଶୈଳୀ ଦୃଷ୍ଟିରୁ ନାଟକଟି ଅତ୍ୟନ୍ତ ଉଚ୍ଚକୋଟୀର। ଶିଷ୍ଟ ଭାଷା ସହ ଗ୍ରାମ୍ୟ ଶବ୍ଦାବଳୀର ଅପୂର୍ବ ସଂଯୋଗ ନାଟକଟିକୁ ରମଣୀୟ କରିଛି। ଜଗନ୍ନିତ୍ର ହଲ୍‌ରେ ପ୍ରଦର୍ଶିତ ହେଉଥିବା ନାଟକମାନଙ୍କ ମଧ୍ୟରେ ଏହି ନାଟକଟି ବେଶ୍ ଲୋକପ୍ରିୟତା ହାସଲ କରିଥିଲା।

**ମାନବତୀ ଚରିତମ୍ (୧୯୦୫)**

କଥାବସ୍ତୁ, ଭାଷାଶୈଳୀ ଓ ରସ ଉପସ୍ଥାପନା ଦୃଷ୍ଟିରୁ ଏହା ଏକ ଉତ୍କୃଷ୍ଟ ମାନର ନାଟକ। କଳିଙ୍ଗ ରାଜା ମାଧବବର୍ମାଙ୍କ ପୁତ୍ର ଗୋପାଳ ବର୍ମା ବିଦୁଷୀ କନ୍ୟାଟିଏ ବିବାହ କରିବାକୁ ଚାହୁଁଥିଲେ। ଭାରତର ବିଭିନ୍ନ ଅଞ୍ଚଳ ପରିଭ୍ରମଣ କରି ସେ କୌଣସି ରାଜକୁମାରୀଙ୍କୁ ନିଜର ପସନ୍ଦ ଉପଯୋଗୀ ପାଇଲେ ନାହିଁ। ତାଙ୍କ ବିବାହର ସର୍ତ୍ତ ଥିଲା ଯେଉଁ ରାଜକୁମାରୀ ତାଙ୍କ ପ୍ରଶ୍ନ ଗୁଡିକର ଉତ୍ତର ଦେବ ତାଙ୍କୁ ସେ ବିବାହ କରିବେ। ସବୁ ରାଜକୁମାରୀ ବିଫଳ ହେବା ପରେ କର୍ଣ୍ଣାଟକ ରାଜକୁମାରୀ ମାନବତୀ ତାଙ୍କ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ ଓ ଗୋପାଳବର୍ମାଙ୍କୁ ବିବାହ କରିଥିଲେ। କିନ୍ତୁ ବିବାହପରେ ସେ ଜଣେ ଦୁଷ୍ଟ ତସ୍କର ଦ୍ୱାରା ଅପହୃତ ହୋଇଥିଲେ। ପରେ ନିଜ ବୁଦ୍ଧି ପ୍ରୟୋଗ ଦ୍ୱାରା ନିଜ ସତୀତ୍ୱ ଅକ୍ଷୁଣ୍ଣ ରଖି ଗୋପାଳ ବର୍ମାଙ୍କପାଖକୁ ଫେରି ଆସିଥିଲେ ଓ ତସ୍କରକୁ ଦଣ୍ଡିତ କରିଥିଲେ। ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟର ଆଇ.ଏ. ପାଠ୍ୟକ୍ରମରେ ବହୁଦିନ ଧରି ଚାଲୁଥିବା ଏହି ପୁସ୍ତକଟି ସାହିତ୍ୟିକ ମୂଲ୍ୟବୋଧ ଦୃଷ୍ଟିରୁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ। ତେଲୁଗୁରେ ନଲେଖି ଏହି ମୌଳିକ ନାଟକକୁ ଓଡ଼ିଆରେ ଲେଖିଥିଲେ ବିକ୍ରମ ଦେବ ବର୍ମା ଓଡ଼ିଆ ସାହିତ୍ୟ ଇତିହାସରେ ନାଟକ ବିଭାଗ ପାଇଁ ଚିର ସ୍ମରଣୀୟ ହୋଇ ରହିଥାନ୍ତେ।

**ବିକ୍ରମଦେବ ବର୍ମାଙ୍କ ଓଡ଼ିଆ ନାଟକ**

ଶ୍ରୀ ସଂଗୀତ ରାଧା ମାଧବ ନାଟକ ବିକ୍ରମଦେବ ବର୍ମାଙ୍କ ପ୍ରଥମ ନାଟକ। ଏହା ୧୮୮୪ ଖ୍ରୀଷ୍ଟାବ୍ଦରେ ରଚିତ ହୋଇଥିଲା ଓ ୧୮୮୭ ଖ୍ରୀଷ୍ଟାବ୍ଦରେ କଟକ ପ୍ରିଂଣ୍ଟିଂ ପ୍ରେସ୍‌ରେ ଛପା ହୋଇଥିଲା। ନାଟକଟି ବିକ୍ରମଦେବ ବର୍ମା ରଚନାଳିରେ ସ୍ଥାନିତ ହୋଇନାହିଁ। ବିକ୍ରମଦେବ ବୈଷ୍ଣବ ଚେତନାରେ ଉଦ୍‌ବୁଦ୍ଧ ଥିଲେ। ଏହି ଚେତନାର ପରିପ୍ରସାର ପାଇଁ ସେ ନାଟକଟି ରଚନା କରିଛନ୍ତି ବୋଲି ପୁସ୍ତକଟିର ଭୂମିକାରେ କହିଛନ୍ତି –

*"ଶାଳଗ୍ରାମ ସ୍ନାନୋଦକ ହେଲେ କୂତା ବାରି*
*ଯଥା ବିବୁଧେ ମସ୍ତକେ ଘେନନ୍ତି ନବାରି*
*ତଥା ମୋର କବିତ୍ୱ ସକଳ ସୁମାନବେ*
*ହରିଲୀଳା ରସ ବର୍ଣ୍ଣି ଆଦରିବେ ।"*

(ବିକ୍ରମଦେବ ବର୍ମା ରଚନାଳି ଭୂମିକା)

ଶ୍ରୀ ସଂଗୀତ ରାଧା ମାଧବ। ଏହି ନାଟକଟି ପାଞ୍ଚଅଙ୍କ ବିଶିଷ୍ଟ। ପାତ୍ରପାତ୍ରୀମାନଙ୍କର ସଂସ୍କୃତ ଭାଷାରେ କଥୋପ କଥନ ନାଟକର ଅନ୍ୟତମ ବିଶେଷତ୍ୱ। ଗଦ୍ୟ ସଂଳାପ ବହୁତ କମ୍। ପଦ୍ୟ ଆକାରରେ ଯେଉଁ ସଂଳାପ ରହିଛି ସେଥିରେ ମଧ୍ୟଯୁଗୀୟ କାବ୍ୟ କବିତାର ସକଳ ସୌନ୍ଦର୍ଯ୍ୟ ସୁରକ୍ଷିତ ହୋଇଛି। ଯମକ ଅନୁପ୍ରାସ ସ୍ୱଭାବୋକ୍ତି ଆଦି ଅଳଙ୍କାର ସହ ବିଭିନ୍ନ ରାଗ ରାଗିଣୀ ନାଟକଟିକୁ ଚମତ୍କାର କରି ତୋଳିଛି। ଶ୍ରୀ ରାଧିକାଙ୍କର ଶ୍ରୀ କୃଷ୍ଣଙ୍କ ପ୍ରତି ମାନ ଅଭିମାନ ସନ୍ଦେହ ଆଦି ସୁନ୍ଦର ଭାବରେ ପ୍ରକାଶିତ ହୋଇଛି। ପରିଶେଷରେ ଶ୍ରୀକୃଷ୍ଣ ରାଧାଙ୍କର ମାନଭଞ୍ଜନ କରିଛନ୍ତି। ଏହି ବିଷୟବସ୍ତୁକୁ ସଂଗୀତ ଆଧାରରେ ଉପସ୍ଥାପନା ହୋଇଥିବାରୁ ନାଟକଟିର ନାମ ସଂଗୀତ ରାଧାମାଧବ ବୋଲି ନାମକରଣ କରିଛନ୍ତି।

ବ୍ୟାସକବି ଫକୀର ମୋହନ ନାଟକଟିକୁ ପଢ଼ି ଉତ୍କଳ ଭ୍ରମଣ କାବ୍ୟରେ ଲେଖିଛନ୍ତି– "ତୁମ୍ଭର କବିତ୍ୱ ରାଧାମାଧବ ନାଟକ, ପଢ଼ିଜ୍ଞାନ କରେ ମୋର ଜୀବନ ସାର୍ଥକ। କବିବର ରାଧାନାଥ ରାୟ ମଧ ନାଟକଟିକୁ ଭୂୟସୀ ପ୍ରଶଂସା କରିଥିଲେ।

**ବୃଦ୍ଧ ଚରିତ**

ଏହା ବିକ୍ରମ ଦେବଙ୍କର ଦ୍ୱିତୀୟ ନାଟକ। ବୁଦ୍ଧ ଦେବଙ୍କର ଆଦ୍ୟ ଜୀବନର ମଧୁର ଦାମ୍ପତ୍ୟ ପ୍ରେମ ପାଖରୁ ଆରମ୍ଭ ହୋଇ ବୈରାଗ୍ୟମୂଳକ ଦୃଶ୍ୟଦର୍ଶନ, ଗୃହତ୍ୟାଗ, କଠୋର ତପସ୍ୟା, ସୁଜାତା ଗୌଡୁଣୀ ଠାରୁ ଖାଦ୍ୟ ଗ୍ରହଣ ସିଦ୍ଧିଲାଭ, ଧର୍ମ ପ୍ରଚାର ଯଶୋଧାରା ଓ ରାହୁଲଙ୍କୁ ସଂଘଭୁକ୍ତ କରିବା, ହିନ୍ଦୁ ପଣ୍ଡିତମାନେ ହିନ୍ଦୁଧର୍ମ ଛାଡି ବୌଦ୍ଧଧର୍ମ ଅବଲମ୍ବନ କରିବାପରି ଘଟଣାମାନ ଅତି କ୍ଷୁଦ୍ର କଳେବର ମଧ୍ୟରେ ଚିତ୍ରାୟିତ କରିଛନ୍ତି। ବିକ୍ରମ ଦେବ ରଚନାଳିର ୪୦୮ ପୃଷ୍ଠାରୁ ୪୩୮ ପୃଷ୍ଠା ମାତ୍ର ୩୦ ପୃଷ୍ଠା ମଧ୍ୟରେ

ସେ ଏ ପୂର୍ଣ୍ଣାଙ୍ଗ ନାଟକଟିରୁ ଯେପରି ସଂପୂର୍ଣ୍ଣ କରିଛନ୍ତି, ତାହା ଉଚ୍ଚତର କଳା କୌଶଳର ଅପେକ୍ଷା ରଖେ। ଆମ ଶାସ୍ତ୍ରୀୟ ନିୟମରେ ନାଟକ ଗୁଡ଼ିକ ଶୃଙ୍ଗାର ବା ବୀରରସ ପୂର୍ଣ୍ଣ ହେବାପାଇଁ ନିର୍ଦ୍ଦେଶ ରହିଥିଲେ ସୁଦ୍ଧା ଏହି ନାଟକଟି ଶାନ୍ତରସ ପ୍ରଧାନ ନାଟକ। ଏହି ବ୍ୟତିକ୍ରମ ଦର୍ଶକଙ୍କ ମନସ୍ତତ୍ତ୍ୱ ଅଧ୍ୟୟନ କରି ଏକ ନୂତନ ସ୍ୱାଦ ବିଶିଷ୍ଟ ନାଟକ ରଚନା କରିବା ତାଙ୍କ ଉଦ୍ଦେଶ୍ୟବୋଲି ସେ ସୂତ୍ରଧର ମୁଖରେ ବ୍ୟକ୍ତ କରିଛନ୍ତି।

ନାଟକଟି ମଞ୍ଚ ଉପଯୋଗୀ ଦୃଶ୍ୟ କାବ୍ୟ ହୋଇଥିବାରୁ ତତ୍‌କାଳୀନ ଦର୍ଶକମାନଙ୍କୁ ଦୃଷ୍ଟି ସମ୍ମୁଖରେ ରଖି ସେ ସଂଳାପ ଗୁଡିକୁ ଉଭୟ ପଦ୍ୟ ଓ ଗଦ୍ୟ ମାଧ୍ୟରେ ଉପସ୍ଥାପନ କରିଛନ୍ତି। କ୍ଷୁଦ୍ର କଳେବର ମଧ୍ୟରେ ବିଭିନ୍ନ ରସର ଅବତାରଣା ବେଶ୍ ଚିତ୍ତାକର୍ଷକ ହୋଇଛି। ଶିଷ୍ଟଭାଷା ସହ ଗ୍ରାମ୍ୟ ଭାଷା ଦକ୍ଷତାର ସହ ଚରିତ୍ରାନୁସାରୀ ହୋଇ ନାଟକଟିର ଗାମ୍ଭୀର୍ଯ୍ୟ ବୃଦ୍ଧି କରିଛି। ଏକ ଐତିହାସିକ ବିଷୟକଙ୍କୁ ନାଟ୍ୟକାରଙ୍କର ଆଧାର ହୋଇଥିବାରୁ ବୌଦ୍ଧଯୁଗୀୟ ପ୍ରାଚୀନ ଶବ୍ଦ ପ୍ରୟୋଗ ଦର୍ଶକ ଓ ପାଠକଙ୍କୁ ଭିନ୍ନ ଜଗତକୁ ଟାଣି ନେବାରେ ସମର୍ଥ ହୁଏ। ସଂଗୀତ ରାଧାମାଧବ ନାଟକ ପରି ଏହି ନାଟକଟି ମଧ୍ୟ ବିଭିନ୍ନ ରାଗ ରାଗିଣୀରେ ସଂଯୋଜିତ ହୋଇ ସଫଳ ମଞ୍ଚ ଉପଯୋଗୀ ହୋଇଛି।

**ଉତ୍କଳ କୁନ୍ଦମାଳା**

ଉତ୍କଳ କୁନ୍ଦମାଳା ନାଟକଟି ମୂଳତଃ ସଂସ୍କୃତ ଭାଷାରେ ଅରାରାଳପୁର ନିବାସୀ ଦିଙ୍‌ନାଗ କବିଙ୍କ ଦ୍ୱାରା ରଚିତ। ବିକ୍ରମ ଦେବ ବର୍ମା ଏହାକୁ ଓଡ଼ିଆରେ ରୂପାନ୍ତର କରିଛନ୍ତି। ଏହାର ବିଷୟବସ୍ତୁ ରାମାୟଣସ୍ଥିତ ଉତ୍ତରାକାଣ୍ଡର ଗୋଟିଏ ଉପାଖ୍ୟାନକୁ ନେଇ ରଚିତ। ଏକଦା ସୀତା ଗୁନ୍ଥିଥିବା ଏକ କୁନ୍ଦ ଫୁଲର ମାଳକୁ ରାମ ଗୋମତୀ ତୀରରୁ ପାଇ ବିରହ ବିଧୁର ହୋଇପଡିଛନ୍ତି। ରାମଚନ୍ଦ୍ରଙ୍କ ଦ୍ୱାରା ନିର୍ବାସିତ ହୋଇ ବାଲ୍ମିକୀଙ୍କ ଆଶ୍ରମରେ କାଳାତିପାତ କରୁଥିବା ଅନ୍ତଃସତ୍ତ୍ୱା ସୀତା ସୁଖପ୍ରସବ ହେଲେ ମା ଗଙ୍ଗାଦେବୀଙ୍କୁ ପ୍ରତିଦିନ କୁନ୍ଦମାଳଟିଏ ଦେବେ ବୋଲି ମାନସିକ କରିଥିଲେ। ଏହି ମାଳ ମାଧ୍ୟମରେ ରାମଚନ୍ଦ୍ର ପୁଣି ସୀତାଙ୍କ ସନ୍ଧାନ ପାଇଥିବାରୁ ନାଟକଟିର ନାମ କୁନ୍ଦମାଳା। ବିକ୍ରମଙ୍କ ଦ୍ୱାରା ଦିଙନାଗ କବିଙ୍କ କୁନ୍ଦମାଳା ଉତ୍କଳୀୟ ଭାଷାରେ

ରୂପାନ୍ତରିତ ହୋଇଥିବାରୁ ଏହାର ନାମ ଉତ୍କଳ କୁନ୍ଦମାଳା ନାମ ଧାରଣ କରିଛି ବୋଲି ନାଟ୍ୟକାର ମତବ୍ୟକ୍ତ କରିଛନ୍ତି।

ବିଷୟ ବସ୍ତୁ ଦୃଷ୍ଟିରୁ ସଂପୂର୍ଣ୍ଣ ନୂତନ ପ୍ରସଙ୍ଗଟିଏ ଏଥିରେ ଉପସ୍ଥାପନ କରାଯାଇଛି। ଯାହା ମୂଳ ବାଲ୍ମିକୀ ରାମାୟଣ କିମ୍ବା ଅନ୍ୟ ପ୍ରାଦେଶିକ ରାମାୟଣରେ ନାହିଁ। ଏଥିରେ ମୂଳ ନାଟ୍ୟକାର ଦିଙ୍‌ନାଗଙ୍କର କଳ୍ପନା ବିଳାସ ଓ ଏହାକୁ ସ୍ୱୀକୃତି ଦେଇ ବିକ୍ରମ ଦେବଙ୍କର ଉଦାର ଚେତନା ପ୍ରତିଫଳିତ ହୋଇଛି। ମୂଳ ସଂସ୍କୃତ ରାମାୟଣରେ ସୀତାଙ୍କୁ ଦ୍ୱିତୀୟ ବାର ଅଗ୍ନିପରୀକ୍ଷା ଦେବାକୁ ପଡିଥିବାବେଳେ ସେ ଲଜ୍ଜା ଅପମାନ ଓ ଅଭିମାନରେ ଫାଟିପଡିଛନ୍ତି। ତାଙ୍କ ସତୀତ୍ୱ ବଳରେ ସେ ଭୂଦେବୀଙ୍କୁ ଆହ୍ୱାନ କରିଛନ୍ତି ଓ ଭୂଦେବୀ ତାଙ୍କୁ କୋଳରୁ ନେଇ ପାତାଳ ଗମନ କରିଛନ୍ତି। କିନ୍ତୁ ଏହି ନାଟକରେ ସୀତା ନିଜ ସତୀତ୍ୱର ପ୍ରମାଣ ଦେବାପାଇଁ ଭୂଦେବୀଙ୍କୁ ଆବାହନ କରିଛନ୍ତି। ଭୂଦେବୀ ଆବିର୍ଭୂତା ହୋଇ ସର୍ବସମକ୍ଷରେ ସୀତାଙ୍କ ପବିତ୍ରତା ସଂପର୍କରେ ସୂଚନା ଦେଇ କହିଛନ୍ତି -

*"ଶୁଣ ଦାଶରଥି ରାମକୁ ବରଜି*
*ଅନ୍ୟ ପୁରୁଷରେ ଆପଣା ମରଜି*
*ବଳାଇ ନାହିଁ ଜାନକୀ କେବେ ହେଲେ*
*ଜାଣିଅଛି ତ ଏହା ତୁମ୍ଭେ ନିରୋଳେ।"*

ଏହାପରେ ଆକାଶରୁ ପୁଷ୍ପ ବୃଷ୍ଟ ଓ ଦୁନ୍ଦୁଭି ଧ୍ୱନି ହୋଇଛି ଓ ପୃଥିବୀ ମାଆ ଅନ୍ତର୍ଦ୍ଧାନ ହୋଇଛନ୍ତି। ରାମଚନ୍ଦ୍ର ଓ ସୀତାଙ୍କର ମିଳନ ହୋଇଛି। ଦୁହେଁ ମିଶି କୁଶର ଅନୁମତି ନେଇ ଲବର ଅଭିଷେକ ଉତ୍ସବ ସଂପନ୍ନ କରିଛନ୍ତି। ଦିଙ୍‌ନାଗଙ୍କୁ ବୌଦ୍ଧ ଧର୍ମାବଲମ୍ବୀ ବୋଲି କବି ଅନୁମାନ କରନ୍ତି। ବୋଧହୁଏ ଜୀବନସାରା ଦୁଃଖ ଯନ୍ତ୍ରଣା ଅନ୍ୟାୟ ଅସହାୟ ଶିକାର ହୋଇଥିବା ସୀତାଙ୍କ ଦୁଃଖରେ ମ୍ରିୟମାଣ ଦିଙ୍‌ନାଗଙ୍କ ଦରଦୀ ହୃଦୟ ପୁନର୍ବାର ସୀତାଙ୍କର ପାତାଳ ଗମନକୁ ଅନୁମୋଦନ କରିପାରିନାହିଁ। ତେଣୁ ସେ ଏକ ସୁଖାନ୍ତ ପରିବେଶ ଭିତରେ ନାଟକର ପରିସମାପ୍ତି କରିଛନ୍ତି। ଅପର ଦୁଃଖରେ ବିଗଳିତ ହେଉଥିବା ବିକ୍ରମଦେବ ମଧ୍ୟ ଅନୁରୂପ ଚେତନାର ବଶବର୍ତ୍ତୀ ହୋଇଛନ୍ତି ଓ ରାମାୟଣର ବିଷୟବସ୍ତୁର ଏହି ବ୍ୟତିକ୍ରମତାରେ ପ୍ରଭାବିତ ହୋଇ ଏହାକୁ ଅନୁବାଦ କରିଛନ୍ତି।

ନାଟକଟି ଛଅଟି ଅଙ୍କରେ ବିଭକ୍ତ ହୋଇଛି । ନାନ୍ଦୀ ପାଠ ପରେ ସୂତ୍ରଧର ମାଧ୍ୟମରେ ବିଷୟବସ୍ତୁର ସୂଚନା ଦିଆଯିବା ସହ ରାମଙ୍କ ଆଦେଶରେ ଲକ୍ଷ୍ମଣଙ୍କ ଦ୍ୱାରା ସୀତା ନିର୍ବାସନ ପାଖରୁ ନାଟକଟି ଆରମ୍ଭ ହୋଇଛି । ଦ୍ୱିତୀୟ ଅଙ୍କରେ ଲବକୁଶ ଜନ୍ମ, ତୃତୀୟ ଅଙ୍କରେ ସୀତାଙ୍କ ଦ୍ୱାରା ଗଙ୍ଗାଦେବୀଙ୍କୁ ପ୍ରଦତ୍ତ କୁନ୍ଦମାଳା ପ୍ରାପ୍ତ ହୋଇ ରାମଚନ୍ଦ୍ର ବିରହ ବିଧୂର ହେବା, ଚତୁର୍ଥ ଅଙ୍କରେ ପୁଷ୍କରିଣୀ ଜଳରାଶିରେ ସୀତାଙ୍କ ପ୍ରତିବିମ୍ବ ପ୍ରଦର୍ଶନ କରିବା, ପଞ୍ଚମ ଅଙ୍କରେ ଲବକୁଶଙ୍କ ସହ ରାମଚନ୍ଦ୍ରଙ୍କ ଦର୍ଶନ ହେବା ଓ ଷଷ୍ଠ ଅଙ୍କରେ ଲବକୁଶଙ୍କର ରାମାୟଣ ଗାନ ଓ ପୃଥିବୀ ମାତାଙ୍କର ସୀତାଙ୍କୁ ସତୀସାଧ୍ୱୀ ବୋଲି ସର୍ବସମକ୍ଷରେ ଉଚ୍ଚାରଣ କରିବାପରି ବିଷୟବସ୍ତୁ ରହିଛି । ଯାହା ବାଲ୍ମିକୀକୃତ ରାମାୟଣର କିଞ୍ଚିତ ବ୍ୟତିକ୍ରମ । ଏହା ସଂସ୍କୃତ ନାଟକର ଓଡ଼ିଆ ରୂପାନ୍ତର ହୋଇଥିବାରୁ ଅନେକ ସ୍ଥଳରେ ସଂସ୍କୃତ ମିଶା କ୍ଲିଷ୍ଟ ଓଡ଼ିଆ ସଂଳାପ ଅନଭୂତ ହୁଏ ।

ବିକ୍ରମଦେବ ବର୍ମା ଥିଲେ ନାଟ୍ୟପ୍ରେମୀ । ନିଜେ ନାଟକ ରଚନା କରି ମଞ୍ଚସ୍ଥ କରିବା ସଙ୍ଗେ ସଙ୍ଗେ ଅନ୍ୟ ନାଟ୍ୟକାରମାନଙ୍କ ନାଟକକୁ ମଧ୍ୟ ମଞ୍ଚସ୍ଥ କରାଉଥିଲେ । ବିଶାଖାପାଟଣାରେ ଜଗନ୍ମିତ୍ର ହଲ୍ ବ୍ୟତୀତ ଚଳଚ୍ଚିତ୍ର ଭବନ, ଆନ୍ଧ୍ର ସିନେଟୋନ୍ ଓ ରାଜମହେନ୍ଦ୍ରିରେ ଦି ବିକ୍ରମ ହଲ୍ ଆଦି ନିର୍ମାଣ କରାଇଥିଲେ । ଏଠାରେ ଉଭୟ ତେଲୁଗୁ ଓ ଓଡ଼ିଆ ନାଟକ ଅଭିନୀତ ହେଉଥିଲା । ଏହାଛଡ଼ା ନାଟ୍ୟଦଳ ଗଠନ କରି ବିଭିନ୍ନ ସ୍ଥାନରେ ନାଟକ ଓ ରାମଲୀଳା ଆଦି ପ୍ରଦର୍ଶନ କରିବାରେ ସେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ।

ପ୍ରକୃତରେ ରାଜର୍ଷି ବିକ୍ରମ ଦେବ ବର୍ମା ଉତ୍କଳ ଭାରତୀଙ୍କ ବରପୁତ୍ର । କେବଳ ନାଟକ ନୁହେଁ, କାବ୍ୟକବିତା, କ୍ଷୁଦ୍ରଗଳ୍ପ ଓ ପ୍ରବନ୍ଧ ଓ ଅନୁବାଦ ଆଦି ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରି ସେ ଓଡ଼ିଆ ସାରସ୍ୱତ ଭଣ୍ଡାରକୁ ସମୃଦ୍ଧ କରିଛନ୍ତି । ଉପାନ୍ତ ଅଞ୍ଚଳ ତାଙ୍କର କର୍ମକ୍ଷେତ୍ର ଥିବାରୁ ଭାଷା ସାହିତ୍ୟ ଓ ଉପାନ୍ତ ଅଞ୍ଚଳର ସଂସ୍କୃତି ସୁରକ୍ଷାରେ ତାଙ୍କ ଅବଦାନ ଅତୁଳନୀୟ ।



# ବର୍ଷା ଭାବନା

ବର୍ଷା ଋତୁ ଜୀବନର ଋତୁ । ନୂଆ ସୃଷ୍ଟି ଓ ସମ୍ଭାବନାର ଋତୁ । ପ୍ରାଣ ପ୍ରାଚୂର୍ଯ୍ୟର ଋତୁ । କେବଳ ମାନବ ସମାଜ ନୁହେଁ, ପଶୁପକ୍ଷୀଙ୍କ ଠାରୁ କୀଟ ତରୁଲତାଙ୍କ ପର୍ଯ୍ୟନ୍ତ ସମସ୍ତେ ଅପେକ୍ଷା କରି ରହିଥାନ୍ତି ବର୍ଷା ଋତୁକୁ । ଗ୍ରୀଷ୍ମ ଋତୁରେ ସୂର୍ଯ୍ୟଙ୍କର ପ୍ରଖର ତାପ ପୃଥିବୀକୁ ଅର୍ଦ୍ଧଦଗ୍ଧ କରି ଦେଇଥାଏ । ପ୍ରାଣୀ ସମାଜ ଅତିଷ୍ଠ ହୋଇପଡିଥା'ନ୍ତି । ଚାତକ ଆଁ କରି ଚାହିଁ ରହିଥାଏ ଆକଶକୁ । ଫଟାମାଟିର ଖର ଶ୍ୱାସ ଆକାଶର ବକ୍ଷ ଛୁଉଁଥାଏ । ନଦୀ ପୁଷ୍କରିଣୀ କୂପ ଶୁଷ୍କ ହୋଇ ଯାଇଥା'ନ୍ତି । ଜଳ ବିନ୍ଦୁଏ ପାଇଁ ଚାରିଆଡେ ହା' ହା'କାର ଶୁଭୁଥାଏ । ଠିକ୍ ଏହି ସମୟରେ ଆସେ ବର୍ଷା । ସଭିଏଁ ଆଶ୍ୱସ୍ତ ହୁଅନ୍ତି । ପୁଚ୍ଛ ବିସ୍ତାର କରି ନୃତ୍ୟଛନ୍ଦରେ ମୟୂର ମେଘକୁ ସ୍ୱାଗତ କରେ । ପୃଥିବୀ ଉତ୍‌ଫୁଲ୍ଲିତ ହୋଇଉଠେ । ଥୁଣ୍ଟା ଗଛର ଡାଳରେ ଆଶାର ଝଲକ ବାରିହୋଇପଡେ । ଏଇଭଳି ଏକ ପ୍ରାଣବନ୍ତ ପରିବେଶକୁ ବର୍ଣ୍ଣନା କରି ଭକ୍ତକବି ମଧୁସୂଦନ ରାଓ ଗାଇଛନ୍ତି -

*ଆସଇ ବର୍ଷାକାଳ ନିଦାଘ ଶେଷେ*
*ଘୋଟଇ ମେଘମାଳ ଆକାଶ ଦେଶେ*
*ଚମକଇ ବିଜୁଳି ମେଘ ଦେହରେ*
*କମ୍ପଇ ବଜ୍ରନାଦ ମହୀକାତରେ*

ବର୍ଷା ଆସେ। ଭିଜା ମାଟିର ବାସ୍ନାରେ ପ୍ରକୃତି ବିଭୋର ହୁଏ। କୃଷକର ଆଖିରେ ସ୍ୱପ୍ନ ଜାଗି ଉଠେ। ମାଟି ସଙ୍ଗେ ମାଟି ହୋଇ ସେ ଶସ୍ୟ ଉପୁଜାଇବ। ଦୁନିଆ ମୁହଁରେ ଆହାର ଦେବ। ଭୂଇଁରେ ବର୍ଷାପାତହେଲେ ଅଙ୍କୁରୋଦ୍‌ଗମ ହୁଏ। ଏସବୁ ନୂଆ ପରିବେଶରେ ଲୋକ କବି ଅଧିର ହୋଇ ଗାଇ ଉଠେ -

*ମେଘ ବରଷିଲା ଟୁପୁରୁ ଟୁପୁରୁ*
*କେଶୁର ମାଇଲା ଗଜା*
*କେଉଁ ରାଇଜରେ ରହିଲେ ମୋ ରାଜା*
*ତେଲିଙ୍ଗି ବାଇଦ ବଜା*

ବର୍ଷା ସହ ବେଙ୍ଗମାନଙ୍କର ସଂପର୍କ ଅତି ନିବିଡ। ବେଙ୍ଗ ରଡିଲେ ବର୍ଷା ହୁଏ। ବର୍ଷାର ସମ୍ଭାବନା ଥିଲେ ବେଙ୍ଗ ମୁଣ୍ଡ ସିନ୍ଦୁରିତ ଦିଶେ। ପଲ୍ଲୀ ଶିଶୁ ବର୍ଷାକୁ ସ୍ୱାଗତ କରିବାପାଇଁ ତାଳିମାରି ଗୀତ ଗାଏ,

*ବେଙ୍ଗ ମୁଣ୍ଡରେ ସିନ୍ଦୁର*
*ଗାଳି ପକା ଇନ୍ଦର।*

ଇନ୍ଦ୍ରଦେବତା ବର୍ଷନ୍ତି। ଏହି ବର୍ଷଣମୁଖି ବାଦଲକୁ ଲକ୍ଷ୍ୟ କରି କବିବର ରାଧାନାଥ ରାୟ ତାଙ୍କ ରଚିତ ତୁଳସୀ ସ୍ତବକରେ କହିଛନ୍ତି -

*"ବର୍ଷନ୍ତି ମହୀ ମୁଖେ ନଇଁ ଅମ୍ବୁଦେ*
*ବିଦ୍ୟା ସମ୍ପଦେ ଯଥା ନମନ୍ତି ବୁଧେ"*

ବିଦ୍ୟା ଓ ସଂପଦ ଭାରରେ ପ୍ରକୃତ ଜ୍ଞାନୀ ଲୋକର ଅହଂ ବିନାଶ ହୁଏ। ସେ ନମ୍ର ଓ ବିନୟୀ ଭାବ ପ୍ରଦର୍ଶନ କଲା ଭଳି ଜଳଭାରରେ ଆନତ ବାଦଲ ସବୁ ପୃଥିବୀ ଆଡକୁ ନଇଁ ଆସନ୍ତି ଓ ଅନର୍ଗଳ ଜଳ ଧାରା ଢ଼ାଳି ଦିଅନ୍ତି। ଲଗାଣ ବର୍ଷା ହୁଏ, ଝଡି ହୁଏ, ଧାରାସ୍ରାବୀ ବର୍ଷା ସହଜରେ ଛାଡ଼େ ନାହିଁ। କି ପ୍ରକାର ଲକ୍ଷଣ ଦେଖାଗଲେ ବର୍ଷା ଛାଡେ ତାହା ମଧ ଲୋକ କବିର ଭାଷାରେ ସୁନ୍ଦର ଭାବରେ ପ୍ରକଟିତ ହୋଇଛି-

*ବ୍ରାହ୍ମଣ ବରଷା ବତାସ ବଢ଼ି*
*ଦକ୍ଷିଣା ପାଇଲେ ଯାଆନ୍ତି ଛାଡି*

ବ୍ରାହ୍ମଣ ଦକ୍ଷିଣା ପାଇଲେ ବିଦାୟ ହୁଅନ୍ତି। ବର୍ଷା ଓ ବତାସ ବଢ଼ି ଦକ୍ଷିଣ

ଦିଗରୁ ପବନ ପ୍ରବାହିତ ହେଲେ ଛାଡିଯାଏ। ଲୋକ ସାହିତ୍ୟରେ ବର୍ଷାକୁ ନେଇ ଅନେକ ଢ଼ଗ ଢ଼ମାଳି ପହେଳି ଓ ଗୀତ ରହିଛି ଯେମିତି କି -

*ଯେବେ ବରଷିଛି ମାଘର ଶେଷେ*
*ଘିଅର ଉପରେ ମହୁ ବରଷେ।*

ବର୍ଷା ଋତୁର ବର୍ଷା ଯେ କେବଳ ପୃଥିବୀପାଇଁ ମଙ୍ଗଳମୟୀ ତା ନୁହେଁ ମାଘ ମାସ ଶେଷରେ ଅଦିନମେଘ ବରଷିଲେ ପୃଥିବୀ ଘିଅ ଉପରେ ମହୁ ବର୍ଷିଲା ପରି ପ୍ରାଣ ପ୍ରାଚୁର୍ଯ୍ୟରେ ଭରିଯାଏ। ଆହୁରି ମଧ୍ୟ କି ପ୍ରକାର ଲକ୍ଷଣ ଦେଖିଲେ ବର୍ଷା ହେବାର ସମ୍ଭାବନା ଥାଏ, ତାହା ଲୋକ କବି ଦୃଷ୍ଟିରୁ ବାଦ୍ ପଡେ ନାହିଁ।

*ହସି ପଶେ, ଉଇଁ ନ ଦିଶେ*
*ସଜ ଗୋବରରେ ଅଂସେଇ ବସେ।*

ସକାଳୁ ସକାଳୁ ପୂର୍ବାକାଶରେ ସୂର୍ଯ୍ୟ ସୁନ୍ଦର ଭାବରେ ଉଦୟ ହୁଅନ୍ତି ଏବଂ ଉଦୟ ହେବାପରେ ସେ ବାଦଲରେ ଘୋଡେଇ ହୋଇଯାଆନ୍ତି, ସଜ ଗୋବରରେ ଅଂସେଇ ବସେ, ଏସବୁ ଲକ୍ଷଣ ପରିଲକ୍ଷିତ ହେଲେ ବର୍ଷା ହୁଏ।

ପଲ୍ଲୀକବି ନନ୍ଦ କିଶୋର ବଳଙ୍କ ଲେଖନୀରେ ବର୍ଷାକାଳ ବର୍ଣ୍ଣନା ଅତ୍ୟନ୍ତ ଚମତ୍କାର। ପଲ୍ଲୀ ପ୍ରକୃତିର କ୍ଷୁଦ୍ରାତି କ୍ଷୁଦ୍ର ବସ୍ତୁ ଉପରେ ସୁଦ୍ଧା ବର୍ଷାର ଯେଉଁ ପ୍ରଭାବ ତାହା ତାଙ୍କ ଲେଖନୀକୁ ଚଳ ଚଞ୍ଚଳ କରିଛି -

*ଘଡଘଡି ଶୁଣି କାଙ୍କଡ ହାଣ୍ଡିରୁ*
*କାଙ୍କଡ ମାରଇ ଗଜା*
*ସଳରା ବାଡରୁ ମଡାଏ କୃଷକ*
*ଘରଣୀ ଦେଇଣ ରଞ୍ଜା*

X X X X X

*ପିଢ଼ାବାଟେ ଫୁଟେ ଲେନ୍ଥି ଜହ୍ନି ଫୁଲ*
*ତାର ହଳଦିଆ ବନ*
*ଦିଶଇ ଯେସନ ତାରା ବିମଣ୍ଡିତ*
*ଶାରଦ ନୀଳ ଗଗନ*

ଓଡ଼ିଆ ସାହିତ୍ୟ ବର୍ଷା ଋତୁର ବର୍ଣ୍ଣନାରେ ବେଶ୍ ସମୃଦ୍ଧ। ବର୍ଷାକାଳର ପଲ୍ଲୀ ପଥର ଦୃଶ୍ୟ ବର୍ଣ୍ଣନା କରିବାକୁ ଯାଇ କବି ସଚ୍ଚିରାଉତରାୟ କହନ୍ତି -

*ଗାଁ ଶେଷେ ତେଣେ ଆସେ କେ ବିଦେଶୀ*
*କୁଣିଆ ପଡିବେ କା ଘର।*
*ଗୁଗୁଚିଆ ବଣେ ଲୁଗା ଟେକି ଗୋଡୁ*
*ଚାଲୁଛନ୍ତି ଧୀରେ ମନ୍ଥର।*
*ପୁଣି -*
*ମେଘର ପଣତ ଆକାଶ ଖେଳାଇ*
*ବିଜୁଳି ପ୍ରଦୀପ ହାତେ*
*ବରଷା ସୁନ୍ଦରୀ ଖୋଜଇ କାହାକୁ ରେ*
*ଏକାକୀ ନିର୍ଜନ ରାତେ।*

ଓଡ଼ିଆ ସାହିତ୍ୟ ବର୍ଷା ବର୍ଣ୍ଣନାରେ ସଦା ମୁଖର। କେବଳ ଆଧୁନିକ ସାହିତ୍ୟ ନୁହେଁ ପ୍ରାଚୀନ କାବ୍ୟ ସାହିତ୍ୟରେ ସୁଦ୍ଧା ବର୍ଷାର ଚିତ୍ତ ଉଲ୍ଲାସକାରୀ ବର୍ଣ୍ଣନାସବୁ ରହିଛି। ରହସ୍ୟ ମଞ୍ଜରୀ କାବ୍ୟରେ କବି ଦେବ ଦୁର୍ଲ୍ଲଭ ଦାସ କୁହନ୍ତି -

*ଗ୍ରୀଷମ ସଂପୂର୍ଣ୍ଣେ ସଖି ଆଷାଢ଼ର ଅନ୍ତେ*
*ଶ୍ରାବଣ ପ୍ରବେଶ ଗୋ ଜଳଦ ଋତୁ ହୋ'ନ୍ତେ*
*ଗାଜିଲେ ଗଗନେ ସେହୁ ସାଜିଲେ ବରଷା*
*କି ଜାଣି ନିବିଡ ଘୋର ଅନ୍ଧକାର ନିଶା*
*ଘଡଘଡି ଉପରେ ପଡଇ ଚଡଚଡି*
*ଚଡଚଡି ଉପରେ ନିର୍ଘାତ ପଡେ ମାଡି*
*ବିଜୁଳି ଚମକେ ଗୋ ଚମକି ଉଠେ ହିଆ*
*କେସନ ବଞ୍ଚିବି ମୋର କୋଳେ ନାହିଁ ସାହା*
*ବର୍ଷା କାଳକୁ ମିଳନର ଋତୁ ବୋଲି କୁହାଯାଏ*
*ବିରହୀ ନାରୀ ପୁରୁଷଙ୍କୁ ଅଜସ୍ର ପୀଡା ଦିଏ।*

ରୀତିଯୁଗୀୟ ସାହିତ୍ୟରେ କାବ୍ୟ ଦୃଷ୍ଟିରୁ ଷଡଋତୁ ବର୍ଣ୍ଣନା ବିଧି ରହିଛି। ସେମାନେ ପ୍ରସଙ୍ଗ କ୍ରମେ ନାୟକ ନାୟିକାଙ୍କ ମଧ୍ୟରେ ବିରହ ସୃଷ୍ଟି କରି

ଷଡଋତୁ ବର୍ଣ୍ଣନା କରିଥା'ନ୍ତି। ବୈଦେହୀଶ ବିଳାସ କାବ୍ୟରେ କବି ଉପେନ୍ଦ୍ର ଭଞ୍ଜ କହନ୍ତି -

*"ବିମଳ କୁକୁଭ କଦମ୍ବ କୁକୁଭ କଦମ୍ବ ମଳିନ ଶୁଭସେ*
*ବିଦିତ ଉଡୁପ ପୁଷ୍କରେ ଉଡୁପ ଆର୍ତ୍ତ ଯେ ନଦିଶେ*
*ବନେ କଲେ ଯେ - ବରହୀ ଶିଖା ଟେକି ନୃତ୍ୟେ*
*ବଳେ ହେଲେ ଯେ ବରହି ଶିଖା ତହିଁ ସମସ୍ତ ପରଙ୍ଗରେ ହୃତ"*

ଅର୍ଥାତ୍ - ବର୍ଷାକାଳ ଆସିବାରୁ କଦମ୍ବ ଓ ଅର୍ଜୁନ ଗଛମାନେ ପରିଷ୍କୃତ ଦେଖାଗଲେ। ଦିଗମାନେ ମେଘାଚ୍ଛନ୍ନ ହୋଇ ମଳିନ ଦେଖାଗଲେ। ଜଳରେ ଭେଳା ସବୁ ଭାସିଲେ। ଆକାଶରେ ଚନ୍ଦ୍ର ଆଉ ଦିଶିଲେ ନାହିଁ। ମୟୂରମାନେ ପୁଚ୍ଛଟେକି ବଣରେ ନୃତ୍ୟ କଲେ। ଖରା ସମୟରେ ବଣରେ ବ୍ୟାପ୍ତ ହୋଇ ଜଳୁଥିବା ଅଗ୍ନିଶିଖା ଘରିଆଡୁ ବାଧାପାଇ ସେହି ବଣରେ ସଂପୂର୍ଣ୍ଣ ନଷ୍ଟହେଲା।

ଆଧୁନିକ ଯୁଗରେ କବି ଲେଖନୀରେ ବର୍ଷା ଭିନ୍ନ ରୂପ ନେଇଛି। କେବଳ ପ୍ରକୃତି ବର୍ଣ୍ଣନା କରିବା ଉଦ୍ଦେଶ୍ୟରେ ସେ ବର୍ଷାର ବର୍ଣ୍ଣନା କରିନାହାଁନ୍ତି। ବରଂ ନିଜର ଅନ୍ତର୍ବେଦନା ଆବେଗ ଓ ଅନୁଭବ ପ୍ରକାଶ କରିବା ପାଇଁ ସେ ବର୍ଷାକୁ ପ୍ରତୀକ ଭାବେ ଗ୍ରହଣ କରିଛନ୍ତି।

ଏ ପ୍ରସଙ୍ଗରେ ସୌଭାଗ୍ୟ ମିଶ୍ରଙ୍କର ଏକ କବିତା -

*ବର୍ଷା ଆଜି ଝରାଇଲା ଏ ବିବର୍ଣ୍ଣ କୋଠାର ଦେହରୁ*
*ମୁଠା ମୁଠା ଚୂନର ଆଳସ୍ୟ*
*ନିର୍ଜୀବ ଇଟାର ସବୁ ନିର୍ଲଜ ବ୍ୟକ୍ତିତ୍ୱ*
*ପଦାରେ ପଡିଗଲା ଓ ନିଜର ବେକ*
*ବର୍ଷା ଆଜି ମୋଡି ଦେଲା*
*ବର୍ଷା ଆଜି ତେଜି ଦେଲା ଏ ମନର ସ୍ମୃତିର ସଳିତା।*

ବର୍ଷା ମଣିଷର ହତାଶା ଜର୍ଜରିତ ହୃଦୟରେ ନୂତନ ଆଶା ଓ ଭରସାର ଇନ୍ଦ୍ରଧନୁ ତୋଳେ। ନିରାଶା ପରିବର୍ତ୍ତେ ତା ମନ ମରୁରେ ଉର୍ବରତା ଫେରିଆସେ। ତା ମାନସ ପଟରେ ସ୍ୱପ୍ନର ବାଦଲ ବିଛାଡି ଦିଏ। ଏ

ପରିପ୍ରେକ୍ଷୀରେ କବି ଗୁରୁପ୍ରସାଦ ମହାନ୍ତି ଲେଖନ୍ତି -

*ଆଷାଢ଼ ଆକାଶରେ ମେଘ ଆସେ ବର୍ଷା ଯଦି ଆସେ*
*ପୃଥିବୀ ଦେହରେ ପୁଣି ଫେରି ଯଦି ଆସେ ଉର୍ବରତା ।*
*ମଣିଷର କିଆରୀରେ ଯଦି ପାଚେ ହସର ଫସଲ*
*ପୁଣି ଯଦି ଭଲଲାଗେ କ୍ଷୟକ୍ଷତି ସମୟର ବ୍ୟଥା ।*

କବି ରମାକାନ୍ତ ରଥ ବର୍ଷାକୁ ପ୍ରେୟସୀ ଆଖିର ଲୁହ ରୂପରେ ଦେଖିଛନ୍ତି । ଯେଉଁ ଲୁହ କେବେ ଶୁଖେ ନାହିଁ। ଦୁଃଖର ଅନ୍ତ ହୁଏନାହିଁ ଗୋଟାଏ ଦୁଃଖ ପରେ ପୁଣି ଗୋଟାଏ ଦୁଃଖରେ ଛନ୍ଦିହୋଇ ପଡେ ମଣିଷ। ସେ କହନ୍ତି -

*ବର୍ଷା ଦିଶେ ପାହାଡ ତଳିଆ*
*ଧାନବିଲ ପରି ତାର ଆଖି ଛଳ ଛଳ*
*ପାହାଡ ଉପର ମେଘ ଦେଖି ମନେ ହୁଏ*
*ଏ ଲୁହ ବନ୍ଦ ହେବନି ଥିବ କାଳ କାଳ*

ପୁଣି କବି ଲେଖନୀରେ ବର୍ଷା ଭିନ୍ନ ମୋଡ ନେଇଛି, ତା ବର୍ଣ୍ଣନାରେ ଉପଭୋକ୍ତା ମାନସିକତା ପ୍ରତିପାଦିତ ହୋଇଛି। ସେ ସୌନ୍ଦର୍ଯ୍ୟ ଅପେକ୍ଷା ଆବଶ୍ୟକତା ଉପରେ ଗୁରୁତ୍ୱ ଦେଇ କହୁନ୍ତି କବି ଜୟକୃଷ୍ଣଙ୍କ ଭାଷାରେ -

*ସେ ବରଷା ମୋର ଲୋଡ଼ା ନାହିଁ*
*ଯେଉଁ ବରଷା ମୋ ପାଇଁ ଗଡିଆକୁ*
*ଗୋଳିଆ ପାଣିରେ ଭରେ ନାଇଁ*
*ସେ ବରଷା ମୋର ଲୋଡା ନାଇଁ*

......

*ଅସରା ଅସରା ଆସେ ନାଇଁ*
*ତୁହା ତୁହା କରି ଟିକଇ ନାଇଁ*
*ଝଡ କରି ଯଦି ପଡିଆ ଭୂଇଁରେ*
*ଝରଟେ ଫିଟାଇ ପାରେ ନାଇଁ*

ବର୍ଷା ଋତୁ ମାନବ ସମାଜ ପାଇଁ ପ୍ରକୃତିର ଅପୂର୍ବ ବରଦାନ। ମାତ୍ର ବେଳେବେଳେ ବର୍ଷା ପ୍ରଚଣ୍ଡ ରୂପ ନିଏ। ନଦୀ ପୋଖରୀ ହ୍ରଦ ଆଦି ପୁରି ଉଠନ୍ତି ଜଳ ତାଣ୍ଡବ ରୂପ ନିଏ। ଜୀବଜଗତ ବିନାଶ ହୋଇଯାଆନ୍ତି।

ବର୍ଷାର ଏ ପ୍ରଳୟ ପ୍ରକ୍ରିୟା ପରିଲକ୍ଷଣ କରି ଜଗନ୍ନାଥ ଦାସ କହିଛନ୍ତି -

*ଜଳ ବିହୁନେ ସୃଷ୍ଟି ନାଶ*

*ଜଳ ଗହଳେ ସୃଷ୍ଟି ନାଶ ।*

ଜଗନ୍ନାଥ ଦାସଙ୍କର ଏ ବକ୍ତବ୍ୟ ପ୍ରତିଫଳିତ ହୋଇଛି ରାଧାନାଥ ରାୟଙ୍କ ତୁଳସୀ ସ୍ତବକରେ। ଅତି ସର୍ବତ୍ର ଗର୍ହିତଂ। ବର୍ଷା ଦିନରେ ପଦ୍ମଫୁଲ ନଷ୍ଟ ହୋଇଯାଏ। ତାହା ଲକ୍ଷ୍ୟ କରି ସେ କହନ୍ତି -

*ବରଷା କାଳ ଅଟେ ଉଦ୍ଭିଦ ମିତ୍ର*

*ମାତ୍ର ପଙ୍କଜ ମଳା ନୋହେ ବିଚିତ୍ର ।*



# ଅଶୀପରବର୍ତ୍ତୀ ଓଡ଼ିଆ କବିତାର ଭାବବସ୍ତୁ

ଅଶୀ ପରବର୍ତ୍ତୀ ସୃଜନଶୀଳ ସାହିତ୍ୟକୁ କୁହାଯାଉଛି ଉତ୍ତର ଆଧୁନିକତା। ଆଧୁନିକ ଏକ ଆପେକ୍ଷିକ ଶବ୍ଦ। କେଉଁ କାଳଖଣ୍ଡର ଭାବବସ୍ତୁକୁ ଆଧୁନିକ କୁହାଯିବ ତାହା ସେଇ କାଳଖଣ୍ଡର ସ୍ଥିତାବସ୍ଥା ଉପରେ ନିର୍ଭର କରେ। ଆଜିର ଆଧୁନିକତା ଆସନ୍ତା କାଲିକୁ ପୁରାତନ ହୋଇପାରେ ପୁଣି ଗତକାଲିର ପୁରାତନ ବସ୍ତୁ ନୂତନ ରୂପରେ ଆଧୁନିକ ସଞ୍ଜ୍ଞା ବହନ କରି ଆସିବାରେ କିଛି ଅସ୍ୱାଭାବିକତା ନାହିଁ। ତେଣୁ ଉତ୍ତର ଅଶୀ ସାହିତ୍ୟର ପ୍ରବୃତ୍ତି ଓ ପ୍ରଦୀପ୍ତି ଆଲୋଚନା କରିବା ପୂର୍ବରୁ ଏହି କାଳଖଣ୍ଡର ପୃଷ୍ଠଭୂମିକୁ କିଞ୍ଚିତ୍ ସ୍ପର୍ଶ ନକଲେ ଆଲୋଚନା ଯଥାର୍ଥ ହେବନାହିଁ।

ସ୍ୱାଧୀନତା ପରେ ତିନିଦଶନ୍ଧିରୁ ଊର୍ଦ୍ଧ୍ୱକାଳ ଆମ ସାମାଜିକ ଜୀବନ ବହୁବିଧ ସଂଘର୍ଷ ସଂଘାତ ଓ ପରୀକ୍ଷା ନିରୀକ୍ଷାର କଷଟି ପଥରରେ କଷଟି ହୋଇ ଗତି କରିଛି। ପ୍ରଥମ ସଂଘାତ ଥିଲା ସ୍ୱାଧୀନତାର ମୋହଭଙ୍ଗ। କ୍ଷମତା ଯଜ୍ଞରେ ପ୍ରକୃତ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଆହୁତି ଦିଆଗଲା। ଅନେକ ସ୍ଥଳରେ ଦେଶଦ୍ରୋହୀମାନଙ୍କ ହାତରେ ସ୍ୱାଧୀନ ଭାରତର ଶାସନ ଡୋର ରହିଲା। ରାଜନୈତିକ ଷଡଯନ୍ତ୍ର ଓ ଗଣତନ୍ତ୍ରର ବିଫଳତା ବୁଦ୍ଧିଜୀବୀ ଓ

ସୃଜନଶୀଳ ମଣିଷମାନଙ୍କୁ ଦାରୁଣ ଧକ୍କା ଦେଲା। ତା'ପରେ ଆରମ୍ଭ ହୋଇଗଲା ଭାରତ ଋଢ଼ଇନା ଯୁଦ୍ଧ। ଯୁଦ୍ଧ ବିକ୍ଷୁବ୍ଧ ଦେଶର ଆର୍ଥିକ ବିକାଶ ଓ ସଂସ୍କାର ପାଇଁ ପାଶ୍ଚାତ୍ୟଜ୍ଞାନ କୌଶଳର ପ୍ରୟୋଗ କରାଗଲା। ସ୍ୱାମୀନାଥନ୍‌ଙ୍କ ନେତୃତ୍ୱରେ ଭାରତରେ ସବୁଜ ବିପ୍ଳବର ଆହ୍ୱାନ ଦିଆଗଲା। କୃଷିକ୍ଷେତ୍ରରେ ଆମ ପାରମ୍ପରିକ କୃଷି ପଦ୍ଧତିକୁ ଅକାମୀ କରାଯାଇ ପାଶ୍ଚାତ୍ୟ ପଦ୍ଧତି ପ୍ରୟୋଗ କରାଗଲା। ଭାରତୀୟ ସାମାଜିକ ଜୀବନର ମୂଲ୍ୟବୋଧକୁ ବିପର୍ଯ୍ୟୟ କରିବାପାଇଁ ଏହି ସବୁଜ ବିପ୍ଳବ ହିଁ ପ୍ରାଥମିକ ପଦକ୍ଷେପ ଥିଲା। ଭୂମି ପ୍ରସ୍ତୁତି ଓ ମଞ୍ଜି ରୋପଣ ପାଖରୁ ଫସଲ ଅମଳ ପର୍ଯ୍ୟନ୍ତ ପ୍ରତିକ୍ଷେତ୍ରରେ ଋଷୀମାନଙ୍କର ପାରମ୍ପରିକ ମନୋଭାବ ଉପରେ କୁଠାରଘାତ କରାଗଲା। ଯେକୌଣସି ଉପାୟରେ ମାଟିରୁ ଅଧିକ ପରିମାଣରେ ଶସ୍ୟ ଉତ୍ପାଦନ ହେଲା ଏହି ବିପ୍ଳବର ଲକ୍ଷ୍ୟ। ଶଙ୍କର ଜାତୀୟ ମଞ୍ଜି, ଜମିର କର୍ଷଣ, ବେଉଷଣ ପାଇଁ ଯାନ୍ତ୍ରିକ ଉପାଦାନ, ସାର, କୀଟନାଶକ ଦ୍ରବ୍ୟ ଓ ଏଥିପାଇଁ ଋଷୀଙ୍କୁ ଋଣ ଯୋଗାଇ ଦେବା ବ୍ୟବସ୍ଥା ଆମ ସାମାଜିକ ଜୀବନକୁ ଗଭୀର ଭାବରେ କ୍ଷତ ବିକ୍ଷତ କଲା। ମାଟି ମାଆକୁ କର୍ଷଣ ନୁହେଁ ବରଂ ଧର୍ଷଣ କରି ଅଧିକ ଶସ୍ୟ ଉତ୍ପାଦନ କରାଗଲା। ମାଟି ପାଣି ଆକାଶ ଆଲୋକ ବାୟୁ ଆଉ ଦେବଦେବୀ ହୋଇ ରହିଲେ ନାହିଁ। ଋଷୀ ଋଣ କରିବା ଓ ଋଣ ସୁଝି ନପାରି ଆତ୍ମହତ୍ୟା କରିବା ଉତ୍ତର ଅଶୀ ସାହିତ୍ୟ ଓ ସାମାଜିକ ଜୀବନକୁ ଆକ୍ରାନ୍ତ କରିବା ସବୁଠାରୁ ବଳି ବଡ ଘଟଣା।

ସବୁଜ ବିପ୍ଳବ ପରେ ୧୯୭୦ରେ ଆରମ୍ଭ ହେଲା ଶ୍ୱେତ ବିପ୍ଳବ। ଗୀତ ଗଙ୍ଗା ଗାଭୀ ଗାୟତ୍ରୀର ଚତୁସ୍ତମ୍ଭ ଉପରେ ଠିଆ ହୋଇଥିବା ଭାରତୀୟ ପରଂପରାରେ ଗାଭୀର ସମ୍ମାନ କମି ଆସିଲା। ଶଙ୍କର ଜାତୀୟ ଗାଈ ଓ ଗୁଣ୍ଡକ୍ଷୀରମାନଙ୍କର ବହୁଳ ପ୍ରଚଳନ ହେତୁ, ଶୁଦ୍ଧପୂତ ପବିତ୍ର ଆଦି ଶବ୍ଦ ତାର ପ୍ରାସଙ୍ଗିକତା ହରାଇଲା। ଏହି ସମୟରେ କବି ରବିସିଂଙ୍କର ଏକ ବହୁ ଚର୍ଚ୍ଚିତ କବିତା –

*ଗୋଲାପ ଗଛରେ ପିଆଜ ଫଳିଛି ଯେପାମୟ ଯେପାମୟ*
*କାଗଜ କହୁଛି ଦୁନିଆ ଯାକ ମୋ ବୋପାମୟ ବୋପାମୟ।*

ଏହା ଆମ ଦୋହଲି ଯାଉଥିବା ମୂଲ୍ୟବୋଧ ଆଦର୍ଶ ଜୀବନ ଶୈଳୀରୁ ସ୍ପଷ୍ଟ।

୧୯୭୫ ମସିହାରେ ଜରୁରୀ କାଳୀନ ପରିସ୍ଥିତି ଭାରତୀୟ ଜନ ଜୀବନକୁ ସନ୍ତ୍ରସ୍ତ କରିଦେଇଥିଲା। ତା ପରବର୍ତ୍ତୀ ଆମ ଜୀବନ ଧାରାରେ ହିଂସା, ଦଙ୍ଗା, ଅବିଶ୍ୱାସ, ଅନଶନ, ଧର୍ମଘଟ, ଅପରାଧ ପ୍ରବଣତା ଯେଉଁ ପରିମାଣରେ ସାମାଜିକ ଜୀବନକୁ ବିଶୃଙ୍ଖଳିତ କଲା ତାର ସ୍ୱାଭାବସିଦ୍ଧ ପ୍ରତିଫଳନ ହେଲା ସାହିତ୍ୟରେ। କେନ୍ଦ୍ର ନେତୃତ୍ୱକୁ ଭରସା ନକରି ଗୁଡାଏ ଆଞ୍ଚଳିକ ଦଳ ସୃଷ୍ଟି ହେଲା, ଭାରତୀୟତା ବଦଳରେ ସାହିତ୍ୟର ପୁଣି ଆଞ୍ଚଳିକତା ସ୍ଥାନ ପାଇଲା।

ଏହିସବୁ ଭୂଇଁ ଫୋଡ ସାମାଜିକ ଓ ରାଜନୈତିକ ଭିତ୍ତିଭୂମି ଅଶୀ ପରବର୍ତ୍ତୀ ସାହିତ୍ୟକୁ ଏକ ନିର୍ଣ୍ଣାୟକ ରୂପପାଇଁ ପଥ ପ୍ରସ୍ତୁତ କରୁଥିଲା। ସ୍ୱାଧୀନତାର ୩୩ ବର୍ଷ ପରେ ଯେଉଁ ସାହିତ୍ୟକୁ ଉତ୍ତର ଆଧୁନିକତା ଆଖ୍ୟା ଦିଆଯାଉଛି ତାହା ଦିନକର ସୃଷ୍ଟି ନୁହେଁ, ପୁଣି ଯେଉଁ ସାହିତ୍ୟକମାନେ ଉତ୍ତର ଅଶୀରେ ପ୍ରସିଦ୍ଧି ଲାଭ କରିଥିଲେ ସେମାନେ ୮୦ ପୂର୍ବରୁ ମଧ ଜଣେ ଜଣେ ଶକ୍ତିଶାଳୀ ସ୍ରଷ୍ଟା ଥିଲେ। ୮୦ ପୂର୍ବବର୍ତ୍ତୀ ସାମାଜିକ ଘାତ ପ୍ରତିଘାତ ଓ ଘଟଣା ପ୍ରବାହ ଗୋଟିଏ ନୂତନ ସମ୍ଭାବନା ପାଇଁ ଯେଉଁ ଯେଉଁ ଭାବଭିତ୍ତି ପ୍ରସ୍ତୁତ କରୁଥିଲା ୧୯୮୦ ମସିହାର ଶିଳ୍ପ ବିପ୍ଳବ ଅଗ୍ନିରେ ଘୃତ ଢ଼ାଳିବା ସଦୃଶ ହେଲା। ସ୍ୱାଧୀନତା ପରଠାରୁ ହଜାର ଦିନରେ ହଜାରେ ଶିଳ୍ପ କରାଯିବାର ଯେଉଁ ରାଜନୈତିକ ପ୍ରତିଶ୍ରୁତି ଥିଲା ୧୯୮୦ ପରେ ସଂପୂର୍ଣ୍ଣ ନହେଲେ ବି ଆଂଶିକ ଫଳବତୀ ହେଲା। ୧୯୮୦, ୧୯୮୬, ୧୯୮୯, ୧୯୯୨, ୧୯୯୬ ଓ ୨୦୦୧ ଆଦି ସମୟରେ ସରକାରଙ୍କ ଦ୍ୱାରା ଘୋଷିତ ଶିଳ୍ପନୀତି ଓଡ଼ିଶା ପାଇଁ ସଂପୂର୍ଣ୍ଣ ନୂତନ ବାତାବରଣ ସୃଷ୍ଟି କଲା। ଆମ ଦେଶର ଆର୍ଥିକ ମେରୁଦଣ୍ଡ ବୋଲି ଯେଉଁ କୁଟୀର ଶିଳ୍ପ ଉପରେ ମହାତ୍ମାଗାନ୍ଧୀ ଗୁରୁତ୍ୱ ଦେଉଥିଲେ ତା ସ୍ଥାନରେ ବଡବଡ ଶିଳ୍ପ ଠିଆ ହେଲା। ସେଥିପାଇଁ ଜମି ଅଧିଗ୍ରହଣ, ଭିତ୍ତିଭୂମି ବିକାଶ, ଋଣ ଯୋଗାଣ, କଞ୍ଚାମାଲ ସଂଗ୍ରହ ଓ ଉତ୍ପାଦିତ ବସ୍ତୁ ପାଇଁ ବଜାର ଓ ଲୋକଶକ୍ତି ନିୟୋଜନ ଆଦି ଆମ ସମାଜର ମାନଚିତ୍ର ବଦଳାଇ ଦେଲା। ପ୍ରକୃତି କ୍ଷୟ ହେଲା, ଲଗାତର ପ୍ରାକୃତିକ ବିପର୍ଯ୍ୟୟ ବନ୍ୟା, ବାତ୍ୟା ଆଦି ଲାଗି ରହିଲା। ଛୋଟ ସହରମାନଙ୍କରେ ଶିଳ୍ପ ସଂସ୍ଥା ହେତୁ ଗ୍ରାମ୍ୟ ସଭ୍ୟତା ବିପର୍ଯ୍ୟସ୍ତ ହେଲା। କୃଷି ଶ୍ରମକମାନେ ଗାଁ ଛାଡି ସହରକୁ ଧାଇଁଲେ। ପ୍ରକୃତିକୁ ଧ୍ୱଂସ କରି ଶିଳ୍ପାୟନ ହେଉଥିବାରୁ ବିସ୍ଥାପନ ନାମକ ନୂଆ ସମସ୍ୟା ମୁଣ୍ଡ

ଟେକିଲା । ଶିଳ୍ପକୁ ବିରୋଧ କରି ଧର୍ମଘଟ ହେଲା । ଅଶୀତି ପରବର୍ତ୍ତୀ ସାହିତ୍ୟରେ ଏହା ଅତି ପରିଚିତ ଚିତ୍ର । ଶିଳ୍ପ ସଭ୍ୟତା ସ୍ୱାଗତକଲା ଉପଭୋକ୍ତା ବାଦକୁ । ଶିଳ୍ପରୁ ଆଗତ ଉଦ୍‌ବୃତ୍ତ ଅର୍ଥକୁ ବିଳାସ ବ୍ୟସନରେ ବ୍ୟୟିତ କରିବାର ମାନସିକତା ଭାରତୀୟ ଅର୍ଥନୀତି ଓ ବଜାରୀକରଣକୁ ବେଶ୍ ପ୍ରଭାବିତ କଲା । ୧୯୮୧ ର ଜଗତି କରଣ ସମସ୍ତଙ୍କୁ ଏକାକାର କରିଦେଲା । ଉପଭୋଗପାଇଁ ଆମ ମାଟିର ମଣିଷ ଆମେରିକା ୟୁରୋପ, ଚାଇନା, ଜାପାନର ବସ୍ତୁ ବ୍ୟବହାର କଲା । ୟୁଜ୍ ଆଣ୍ଡ ଥ୍ରୋ ବ୍ୟବହାର କର ଓ ଫିଙ୍ଗିଦିଅ ସଭ୍ୟତା ଜୀବନର ନୀତି, ଆଦର୍ଶ, ମୂଲ୍ୟବୋଧ, ପାପପୂଣ୍ୟ ଭାବନା ଓ ଈଶ୍ୱର ଭୟକୁ ଧ୍ୱଂସ କରିଦେଲା । ପୁରୁଣା ଓ ପରମ୍ପରା ପ୍ରତି ମୋହ ତୁଟିଲା । ମଦ୍ୟ, ମୈଥୁନ ଓ ମନୋରଞ୍ଜନ ହେଲା ୮୦ ପରବର୍ତ୍ତୀ ମଣିଷର ପ୍ରମୁଖ ପ୍ରବୃତ୍ତି । ଅର୍ଥନୀତିର ଉଦାରୀକରଣ ମଣିଷର ଏଇ ପ୍ରବୃତ୍ତିକୁ ବେଶ୍ ଉତ୍ସାହିତ କଲା । ଯେଉଁମାନେ ଧନୀ ପୁଞ୍ଜିପତି ଶିଳ୍ପରୁ ଉଦ୍‌ବୃତ୍ତ ଅର୍ଥରେ ଆହୁରି ଲାଭବାନ୍ ହେଲେ । ଯେଉଁମାନଙ୍କ ଶ୍ରମ ସ୍ୱେଦରେ ଉତ୍ପାଦନ ବଢ଼ିଲା ସେମାନେ କେବଳ ଦିନକୁ ଦୁଇ ବେଳା ଖାଇ ପିଇ ବଞ୍ଚି ରହିଲେ । ପ୍ରକୃତି ଲୁଣ୍ଠିତା ହେଲା ତା ସହ ବ୍ୟଭିଚାର ପଶିଆସିଲା ବହୁରାଷ୍ଟ୍ରୀୟ କମ୍ପାନୀ ପ୍ରଲୋଭନରେ ।

ଲିଙ୍ଗଗତ ସାମ୍ୟତା, ଅଷ୍ଟଦଶକର ସ୍ୱର ହେଲେ ସୁଦ୍ଧା ଉତ୍ତର ଅଶୀପରେ ନାରୀ ସଶକ୍ତି କରଣ ପାଇଁ ସରକାରୀ ଯୋଜନାମାନ ହେଲା । ନାରୀବାଦୀ ଚେତନା ପ୍ରବଳ ଅନୁଭୂତ ହେଲା । ଏରୁଣ୍ଡି ଡେଇଁ ଅର୍ଥ ଉପାର୍ଜନ ପାଇଁ ନାରୀ ବାହାରକୁ ଆସିଲା । ପୁରୁଷକୁ ତାର ତ୍ରାଣକର୍ତ୍ତା, ପାଳନକର୍ତ୍ତା ଓ ହରଣ କର୍ତ୍ତା ଅଥବା ପଥ ପ୍ରଦର୍ଶକ ପରିବର୍ତ୍ତେ ପ୍ରତିଯୋଗୀ ରୂପେ ଗ୍ରହଣ କଲା । ବିବାହର ସଂଜ୍ଞା ବଦଳିଗଲା । ବିବାହ ଆଉ ବନ୍ଧନ ହୋଇ ରହିଲା ନାହିଁ । ଯୌନକାମନା ଚରିତାର୍ଥ ପାଇଁ ଲିଭ୍‌ଇନ୍ ରିଲେସନ୍‌ରେ ରହିଲେ ଯୁବକ ଯୁବତୀ । ପୁଣି ସେମାନଙ୍କ ସୁରକ୍ଷାପାଇଁ ଯୌତୁକ ପ୍ରଥା ଅସିଦ୍ଧ କରାଯିବା ସଙ୍ଗେ ସଙ୍ଗେ ଘରୋଇ ହିଂସା ନିରାକରଣ ଆଇନ୍, କାର୍ଯ୍ୟାଳୟରେ ଯୌନ ସୁରକ୍ଷା ସେଲ୍ ଗଠିତ କରାଗଲା । ସ୍ୱତନ୍ତ୍ର ମହିଳା କମିଶନ ଗଠିତ ହେଲା । ରାଜନୀତିରେ ସ୍ଥାନ ଦିଆଗଲା । ଏପରି ଅନେକ ସୁବିଧା ସୁଯୋଗ ପାଉଥିବା ନାରୀମାନଙ୍କର ଉତ୍ତର ଅଶୀରେ ସ୍ୱର ବେଶ୍ ତୀବ୍ରହେଲା । ତାର ଅସ୍ମିତାର

ସୁରକ୍ଷା ହେଲା । ଅପରପକ୍ଷେ ଶିଳ୍ପ ସଭ୍ୟତା ପ୍ରଭାବରେ ନଗ୍ନ ବେଶ ପୋଷାକ, ଦେହ ବ୍ୟବସାୟ, ଯୁବତୀ ଚାଲାଣ, ଭ୍ରୂଣ ହତ୍ୟା, ଗଣ ଦୁଷ୍କର୍ମ ପରି ଅନେକ ନୂତନ ସମସ୍ୟା ଆସିଲା, ଯାହା ୮୦ ପରବର୍ତ୍ତୀ କାବ୍ୟକବିତାର ମିଶ୍ର ପ୍ରତିକ୍ରିୟା ।

ଦଳିତ ଚେତନା ଉତ୍ତର ଅଶୀ କାବ୍ୟ କବିତାର ଏକ ପ୍ରମୁଖ ବିଭାଗ ପାଲଟିଛି । ସରକାରୀ ସଂରକ୍ଷଣ ହେତୁ ଯୁଗ ଯୁଗ ଧରି ଅବହେଳିତ ହୋଇ ଆସିଥିବା ନିମ୍ନବର୍ଗର ଲୋକେ ମୁଖ୍ୟସ୍ରୋତରେ ମିଶିପାରିଛନ୍ତି । ସବୁଠାରୁ ବଡ କଥା ହେଲା ସେମାନଙ୍କ ଅନୁଭବ ଆଉ ଅନ୍ୟମାନଙ୍କ କଲମରେ ନୁହେଁ ସେଇମାନଙ୍କ କଲମରେ ତୀବ୍ର ହେଲା । ଦଳିତମାନଙ୍କ ଦ୍ୱାରା ଲିଖିତ ସାହିତ୍ୟ ୮୦ ପରବର୍ତ୍ତୀ କାବ୍ୟ କବିତାରେ ବେଶ୍ ଶାଣିତ ହୋଇଛି । ବିଶେଷତଃ ପଶ୍ଚିମ ଓଡ଼ିଶାର କେତେକ ଦଳିତ ଉଦୀୟମାନ ଯୁବସାହିତ୍ୟିକଙ୍କ ଲେଖନୀକୁ ଯେତେ ପ୍ରଶଂସା କଲେବି କମ୍ ହେବ ।

ଶିଳ୍ପୀକରଣ ହେତୁ ଯେଉଁ ବିସ୍ଥାପନ ସମସ୍ୟା ଉପୁଜୁଛି, ସେଥିରେ ଏହି ଉଦୀୟମାନ ଶିଳ୍ପୀମାନେ ବେଶ୍ କାଳଜୟୀ ରଚନା ସୃଷ୍ଟି କରିଛନ୍ତି । ଇନ୍ଦ୍ରାବତୀ, କଳିଙ୍ଗନଗର, ମାଇକଞ୍ଚ, ନିୟମଗିରିକୁ ବିରୋଧ କରି ଅଜସ୍ର କବିତା ସୃଷ୍ଟି ହୋଇଛି । ଜନବାଦୀ ସାହିତ୍ୟର ମୁଖ୍ୟ ସ୍ୱର ହୋଇଛି ବିସ୍ଥାପିତ ସମସ୍ୟା । ଆଦିବାସୀମାନଙ୍କ ସ୍ୱାର୍ଥପାଇଁ ଲଢୁଥିବା ମାଓବାଦୀ ସମର୍ଥକ କିଛି କବିତା ମଧ୍ୟ ସୃଷ୍ଟି ପାଇଁ ଉତ୍ସାହିତ ହୋଇଛନ୍ତି କବିଗଣ ।

୮୦ ପରବର୍ତ୍ତୀ ସାହିତ୍ୟିକ ପୃଷ୍ଠଭୂମିରେ ଆଧ୍ୟାତ୍ମିକତା ଏକ ପ୍ରମୁଖ ଭୂମିକା ଗ୍ରହଣ କରିଥିଲା । କିନ୍ତୁ ଉତ୍ତର ଅଶୀ ବେଳକୁ ଆମ ପାରମ୍ପରିକ ଦେବତା ରାମକୃଷ୍ଣ , ଶିବ, ଦୁର୍ଗା, ଲକ୍ଷ୍ମୀ ଓ ସରସ୍ୱତୀଙ୍କ ସ୍ଥାନ ନେଇଛନ୍ତି ସାଧୁବାବା ମହରାଜ ମାନେ । ଶ୍ରୀମା ଅରବିନ୍ଦ, ବିବେକାନନ୍ଦ, ରାମକୃଷ୍ଣ, ନିଗମାନନ୍ଦ, ଅନୁକୂଳଚନ୍ଦ୍ର, ସାଇବାବାଙ୍କ ସମେତ ସ୍ଥାନୀୟ ବାବାମାନେ ପ୍ରମୁଖ ସ୍ଥାନ ନେଲେ । ଚଳିତ ଶତକର ପ୍ରଥମ ଦଶକ ପର୍ଯ୍ୟନ୍ତ ବହୁ ପ୍ରଭାବଶାଳୀ ଲୋକ ଏମାନଙ୍କ ପ୍ରଦତ୍ତ ଧୂପକାଠି, ବିଭୂତି, ତାବିଜ, ଡେଉଁରିଆ ଆଦିକୁ ବିଶ୍ୱାସ କରି ଭଜନ କୀର୍ତ୍ତନ ଆଦିରେ ମଗ୍ନ ରହୁଥିବାବେଳେ ଆଉ କେତେଜଣ ସଂପୂର୍ଣ୍ଣ ନାସ୍ତିକ ଜୀବନ ବିତାଉଥିଲେ । ପୌରାଣିକ ବିଷୟକୁ ଅବୈଜ୍ଞାନିକ ଅଯୌକ୍ତିକ କହି ଉପହାସ କରୁଥିଲେ । ପୌରାଣିକ ସକରାତ୍ମକ ଚରିତ୍ର ଗୁଡ଼ିକୁ

ନକରାତ୍ମକ ଓ ନକରାତ୍ମକ ଚରିତ୍ର ଗୁଡିକୁ ସକରାତ୍ମକ ଭାବରେ ଚିତ୍ରଣ କରିବା ଏହି ନାସ୍ତିକ ମାନର ସୌଖିନ୍ ବିଳାସ ହୋଇପଡିଲା । ଯୁଧିଷ୍ଠିର ଶ୍ରୀକୃଷ୍ଣ ରାମ ଆଦି ଚରିତ୍ରକୁ ଖଳନାୟକ ଅଥବା ନିନ୍ଦିତ ଚରିତ୍ର ରାବଣ, ଦୁର୍ଯ୍ୟୋଧନ, କୁମ୍ଭକର୍ଣ୍ଣ, ଜରାସନ୍ଧ ପରି ଚରିତ୍ରମାନଙ୍କରେ ନାୟକତ୍ୱ ଆରୋପ କରାଯାଇଛି । ପୁରାଣ ଇତିହାସରେ ସଂପୂର୍ଣ୍ଣ ଅବହେଳିତ ଚରିତ୍ରମାନଙ୍କୁ ଉଦ୍ଧାର କରି ସେମାନଙ୍କୁ ପ୍ରାଧାନ୍ୟ ଦିଆଯାଇଛି ।

ଉତ୍ତର ଅଶୀରୁ ଏଯାବତ୍ ଅନୁଭୂତ ହେଉଥିବା ସାହିତ୍ୟ ବୈଷୟିକ ଜ୍ଞାନକୌଶଳ କମ୍ପ୍ୟୁଟର, ଇ-ମିଡିଆ, ଇ-ଏଜୁକେସନ, ଫେସ୍‌ବୁକ୍, ହ୍ୱାଟସ୍‌ଅପ୍, ଟୁଇଟର ଆଦି ଦ୍ୱାରା ସଂପୂର୍ଣ୍ଣ କବଳିତ ହୋଇସାରିଲେଣି । ମୋବାଇଲ୍‌ରେ ପ୍ରେମ ପରିଣୟ ହେବା ଯେମିତି ସାଧାରଣ କଥା ହୋଇଯାଇଛି, ଅଶ୍ଳୀଳ ଭିଡ଼ିଓ ଓ ସିଡି ଭାଇରାଲ ହେବା ଦ୍ୱାରା ଅନେକ ଯୁବତୀ ଆତ୍ମହତ୍ୟା କରିବା ଘଟଣା ଆମର ନିତ୍ୟ ନୈମିତ୍ତିକ ଘଟଣା । ଯୁବପିଢ଼ି ବହି କମ୍ ପଢୁଛନ୍ତି, ମୋବାଇଲର କ୍ଷୁଦ୍ର କଳେବର ଭିତରେ କ୍ଷୁଦ୍ରକ୍ଷୁଦ୍ର ଗଳ୍ପ କବିତା ପ୍ରବନ୍ଧ ରଚନା ହେଉଛି ଓ ଲାଇକ୍ କମେଣ୍ଟର ଗଣତି ଭିତରେ ବଞ୍ଚି ରହିବାକୁ ଚାହୁଁଛି ଲେଖକ । ଏ ପ୍ରକାର ମାନସିକତା ସାହିତ୍ୟ ପାଇଁ ଅନୁକୂଳ ନହୋଇ ପାରେ କିନ୍ତୁ ଅନେକ ଉତ୍ସାହୀ ସାହିତ୍ୟିକଙ୍କୁ ସକ୍ରୀୟ କରିଛି ସୋସିଆଲ୍ ମିଡିଆ । ନିତ ପ୍ରତିଦିନ କିଛି ନା କିଛି ସେମାନେ ଲେଖିବାପାଇଁ ଉତ୍ସାହିତ ହେଉଛନ୍ତି ।

ଉତ୍ତର ଅଶୀ କବି ଓ କବିତାପାଇଁ ଏହାଥିଲା ଭିତ୍ତିଭୂମି । ଏଥିରୁ ରସ ସଂଗ୍ରହ କରି ଯେଉଁ ବୃକ୍ଷପତ୍ର ପୁଷ୍ପ ଫଳ ସୁଶୋଭିତ ହେବ ତାର ଭାବ ବସ୍ତୁ ଏସବୁ ଆଧାରିତ ହେବ ଏଥିରେ ଦ୍ୱିତମର ଅବକାଶ ନାହିଁ । ଉତ୍ତର ଅଶୀ ପରର ସାହିତ୍ୟ କ୍ଷେତ୍ର କଥାଶିଳ୍ପ ଅପେକ୍ଷା ବେଶି ବେଶି କବିତାଭିମୁଖୀ ହୋଇଛି । ଏ ଧାରା ଏ ପର୍ଯ୍ୟନ୍ତ ବଳବତ୍ତର ରହିଛି । କଥା ସାହିତ୍ୟ ସଂକୁଚିତ ହୋଇଛି । ଅଙ୍ଗୁଳିମେୟ ସ୍ରଷ୍ଟା କଥା ସାହିତ୍ୟରେ ହାତ ଦେଇଛନ୍ତି । ତାଠାରୁ କମ୍ ସୃଜନଶୀଳ ପ୍ରତିଭା ଗଦ୍ୟ ଓ ପଦ୍ୟ ଉଭୟରେ ହସ୍ତଚାଳନା କରିଛନ୍ତି । ୮୦ ପୂର୍ବବର୍ତ୍ତୀ କାବ୍ୟଜଗତର ପ୍ରସିଦ୍ଧ ଲାଭ କରିଥିବା ଓ ଉତ୍ତର ଅଶୀର କାବ୍ୟ ଧାରାରେ ପ୍ରମୁଖ ଭୂମିକା ଗ୍ରହଣ କରିଥିବା କବିମାନଙ୍କ ମଧ୍ୟରେ ସଚ୍ଚି

ରାଉତରାୟ, ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର, ଅମରେଶ ପଟ୍ଟନାୟକ, ସୌଭାଗ୍ୟ ମିଶ୍ର, ଦୀପକ ମିଶ୍ର, ଦିଲ୍ଲୀପ ଦାସ, ପ୍ରସନ୍ନ ମିଶ୍ର, ହରପ୍ରସାଦ ଦାସ, ଜୟନ୍ତ ମହାପାତ୍ର, ରାଜେନ୍ଦ୍ର ପଣ୍ଡା, ଜଗନ୍ନାଥ ପ୍ରସାଦ ଦାସ, ଆଶୁତୋଷ ପରିଡ଼ା, ଅଶ୍ୱିନୀ ମିଶ୍ର, ପ୍ରତିଭା ଶତପଥି, ମମତା ଦାସଙ୍କ ସହ କେତେଜଣ ନବାଗତ ଯୋଗଦେଲେ। ସେମାନଙ୍କ ମଧ୍ୟରେ ହୃଷିକେଶ ମଲ୍ଲିକ, ସରୋଜିନୀ ଷଡଙ୍ଗୀ, ସୌଭାଗ୍ୟବନ୍ତ ମହାରଣା, ଡଃ ରବିନାରାୟଣ ସେନାପତି, ହୁସେନ ରବି ଗାନ୍ଧୀ, ଶତ୍ରୁଘ୍ନ ପାଣ୍ଡବ, ଅପର୍ଣ୍ଣା ମହାନ୍ତି, ବାସୁଦେବ ସୁନାନୀ, ଭାରତ ମାଝୀ, ଅଖିଳ ନାୟକ, ବାସୁଦବେ ଦାସ, ପ୍ରବାସିନୀ ମହାକୁଡ, ହିରଣ୍ମୟୀ ମିଶ୍ର, ଚିରଶ୍ରୀ ଇନ୍ଦ୍ର ସିଂ ଓ ଆହୁରି ଅନେକ।

ସମୟ ଓ ସ୍ଥାନର ସୀମିତତା ହେତୁ ସମସ୍ତଙ୍କର ନାମ ଏଠି ଉଲ୍ଲେଖ କରିବା ସମ୍ଭବ ହେଉନାହିଁ।

ଅଶୀ ପୂର୍ବବର୍ତ୍ତୀ କାବ୍ୟ କବିତାରେ ଅଧିକାଂଶ ଭାବ ବିଦେଶାଗତ ଥିଲା। ଆମ ପାଠକମାନଙ୍କ ପାଇଁ ଯାହା ଅନେକାଂଶରେ ଦୁର୍ବୋଧ ଥିଲା। କିନ୍ତୁ ଅଶୀପରବର୍ତ୍ତୀ କବିତାର ଭାବବସ୍ତୁ ଆମ ମାଟିରୁ ପୁଷ୍ଟହୋଇଥିବା ହେତୁ ଆମପାଇଁ ଦୁର୍ବୋଧ ରହିଲା ନାହିଁ। ଆମ ସାମାଜିକ ଜୀବନର ଜୀବନ୍ତ ଛବିକୁ କବି ପ୍ରସନ୍ନ ମିଶ୍ର କେମିତି ସୁବୋଧ ଭାଷାରେ ଉପସ୍ଥାପନ କରିଛନ୍ତି ଦେଖନ୍ତୁ –

*ଝରକା ଖୋଲିଲେ ଦିଶେ*
*ଖାକି ଗଳେଇ ଦେଶଟା ମାର୍ଚ୍ଚ କରୁଚି*
*ବାଃ ବାଳକବାଳିକାଙ୍କ ପ୍ରାଣଖୋଲା ପଟୁଆର*
*ମୁଁ ଦେଖିପାରେ ମୋ ଦେଶର ଅସଂଖ୍ୟ ପାଦ*
*ମୋପରି ନିମକ୍ ହାରାମ୍ ମାନେ*
*ଦେଶର ଧାର ଧାରନ୍ତିନି*
*କେବଳ ଖୋଜୁଥାନ୍ତି ଟିକେସ ଫାଙ୍କର ବାଟ।*
*ରେଳଯାତ୍ରାରେ ରିହାତି*
*ଋଣ ଓ ଧର୍ତ୍ତବ୍ୟ ଅପରାଧ ପାଇଁ କ୍ଷମା।*

**X X X X**

*ମୋ ଘରେ ଖାଲି ମୋ ଛବି*
*ମୋ ବାପାଙ୍କ ଛବି*
*ପିଲାଙ୍କ କୃତୀତ୍ୱର ଛବି*
*ଦେଶର ଛବି ଗେଟ୍ ବାହାରେ ।*

ଅଶୀତିପରର ସ୍ୱାର୍ଥ ମଣିଷର ମୋହ ଭଙ୍ଗ ହୁଏ । ସେ ମଣିଷ ପାଇଁ ଝୁରି ହୋଇଛି । ମଣିଷ ମୁହଁରେ ଟିକେ ହସ ଫୁଟେଇବା ପାଇଁ ସେ ପ୍ରାଣ ପଣେ ଉଦ୍ୟମ କରିଛି । ସ୍ନେହ, ପ୍ରେମ, ପ୍ରୀତିର ଜୟଗାନ କରି କବି ସୌଭାଗ୍ୟ ମିଶ୍ରଙ୍କ କବିତା କହୁଛି -

*ତମେ ସମସ୍ତେ ହଜେଇ ଦେଇଥିବା*
*ସୁଖର ତାଲିକା କରି ଆଣିଚି ପଢ଼*
*ମୁଁ ତମ କାନ୍ଦୁରା ଛୁଆଙ୍କୁ ଗପକହି ଶୁଆଇ ଦେଉଛି,*
*ତମ ଭଙ୍ଗା ଟିଭି ମରାମତି କରିଦେଉଛି,*
*ବୁଣିଦେଉଚି ଶସ୍ୟ ତମ କ୍ଷେତ ଯାକ*
*ପାଣି ସିଞ୍ଚି ଦେଇ ଯାଉଚି*
*ତମେ ସମସ୍ତେ ବଞ୍ଚିରହ ଆରାମ ଅଯସ କର*
*ତେବେ ଯାଇ ମୁଁ ମରିପାରିବି ଆଉଥରେ ।*

କେବଳ ମଣିଷପାଇଁ ନୁହେଁ, ମାଟିମାଆ ପାଇଁ, ଦେଶପାଇଁ, ଜାତିପାଇଁ ଯେଉଁ ମମତା, ଆବେଗ ଓ ଆନୁଗତ୍ୟ ଥାଏ ତାହା ସୁନ୍ଦର ଶବ୍ଦ ଶିଳ୍ପ ମାଧ୍ୟମରେ ସଞ୍ଚରି ଯାଇଛି ସ୍ରଷ୍ଟାମାନଙ୍କ ସର୍ଜନଶୀଳତାରେ । ଏ ମର୍ମରେ ରାଶି ରାଶି କବିତାମାନଙ୍କ ମଧ୍ୟରୁ ଶତ୍ରୁଘ୍ନ ପାଣ୍ଡବଙ୍କର ଏକ କବିତା - 'ପତାକା ଉତ୍ତୋଳନ'

*ମହାଶୟ*
*ପତାକା ଉତ୍ତୋଳନ କରିବା ଆଗରୁ*
*ଦେଶର ମାନଚିତ୍ରକୁ ହୃଦୟ ଭିତରେ*
*ଆଗେ ତୋଳି ଧର*
*ହୃଦୟ ଭିତରେ ପ୍ରାଣବଳି ଦେଇଥିବା ବୀରପୁରୁଷଙ୍କ*
*ରକ୍ତ ଝକମକ୍ ଫୁଟିବାର ଶବ୍ଦ ଶୁଭୁଚିତ !*

(ପତାକା ଉତ୍ତୋଳନ, (ସାବରମତୀ)

ସବୁକିଛି ସହଜ ସ୍ୱାଭାବିକ ଲାଗୁଥିଲେ ବି ଉତ୍ତର ଅଶୀରେ କବି ମନରେ ସଂଶୟ ସନ୍ଦେହ ଓ ଅବିଶ୍ୱାସପଣ ବନ୍ଧା ପଡ଼ିଛି। ନିଜକୁ ଖୋଜି ହୋଇଛନ୍ତି ଏକ ଅସହାୟ ବୋଧର ଅକୃତ୍ରିମ ପ୍ରତିଫଳନ ଘଟିଛି ସୀତାକାନ୍ତ ମହାପାତ୍ରଙ୍କ 'ଆରଦୃଶ୍ୟ', ସୌଭାଗ୍ୟ ମିଶ୍ରଙ୍କ 'ବଜ୍ରଯାନ', ବିଭୁଦତ୍ତ ମିଶ୍ରଙ୍କ 'ବିସ୍ମୃତିର ସ୍ମୃତି', ଦୀପକ ମିଶ୍ରଙ୍କର 'ଶୂନ୍ୟତାର ଶୋଷ' ଆଦି କବିତା ସଂକଳନରେ। ସୀତାକାନ୍ତ ମହାପାତ୍ରଙ୍କ ଆର ଦୃଶ୍ୟରେ ମାଟି ଖାଇଥିବା କାହ୍ନୁର ମୁଖ ଗହ୍ୱରରେ ଦେଖିଥିବା ଦୃଶ୍ୟର ଅନୁଭବକୁ ଜୀବନ୍ତ ଭାବରେ ବର୍ଣ୍ଣନା କରି କହନ୍ତି -

*କେମିତି ସହିବି ଏହି ନିର୍ଜନ ମାୟା କୁହୁକ*
*ଯେଉଁଥିରେ ଆଉ କେହି ଭାଗୀଦାର ହେବେନାହିଁ*
*ଦେଖେଇ ପାରିବି ନାହିଁ ମୁଁ ଦେଖୁଚି ଦୃଶ୍ୟ*
*ନ ଦେଖେଇ ନ ବୁଝେଇ ପାରିବାର*
*କି ଅଦ୍‌ଭୁତ ସେ ବେଦନା*
*କେତେ ଭାରି ସେ ଅଜଣା ଶୋକ।*

ଆରଦୃଶ୍ୟ - ସୀତାକାନ୍ତ ମହାପାତ୍ର

ଯୁଗ ଯୁଗ ଧରି ନାରୀ ଲିଙ୍ଗଗତ ପ୍ରଭେଦର ଶିକାରରୁ ମୁକ୍ତ ହୋଇପାରି ନାହିଁ। ସମାଜରେ ଦ୍ୱିତୀୟ ଶ୍ରେଣୀର ନାଗରିକ ରୂପେ ତାକୁ ବଞ୍ଚିବାକୁ ହୁଏ। ପୁରୁଷ ଦମିତ ସମାଜରେ ତାର ଲୁହ ଓ ଲହୁକୁ ଏକାକାର କରି ନିଜକୁ ସେ ଭାଗ୍ୟ ଓ ଭବିତବ୍ୟ ହାତରେ ଛାଡ଼ିଦିଏ। କବି ଜଗନ୍ନାଥ ପ୍ରସାଦ ଦାସ ନାରୀର ଦୁଃଖ ଯନ୍ତ୍ରଣା ବ୍ୟଥା ବେଦନା ପ୍ରତି ସହାନୁଭୂତିଶୀଳ ହୋଇ କହନ୍ତି-

ଝିଅଟି ଯାଇ ରନ୍ଧାଘରେ ତିନ୍ତେ
ରୋଗୀର ଶେଜ ପାଖରେ ଅନିଦ୍ରା ରହେ
ଅଫିସ୍‌ରେ କାମ କରୁକରୁ ଭାଗ୍ୟକୁ ନିନ୍ଦେ
ସ୍କୁଲ ଘରେ କଳାପଟାକୁ ଲୁହରେ ପୋଛିଦିଏ
ଦୀର୍ଘଶ୍ୱାସରେ ହାଲ୍‌କା କରିବାକୁ ଚେଷ୍ଟା କରେ
ସାରା ଦିନର କାମର ବୋଝକୁ।

ନାରୀ ପ୍ରତି ସମାଜ ଯେତିକି ସମ୍ବେଦନଶୀଳ ହୋଇଛି, ନାରୀ ତାଠାରୁ

ଆଉ ଦୁଇ ପାଦ ଆଗକୁ ଚାଲିଯାଇଛି । ସେ ନିଜକୁ ସ୍ୱତନ୍ତ୍ର ବିଚାର କରିଛି । ତା'ର ଅସ୍ତିତ୍ୱ, ତା'ର ସ୍ଥିତି, ତା'ର ସୁଖ ସମ୍ଭୋଗ ପାଇଁ ସେ କାହାର ଦୟାଦାକ୍ଷିଣ୍ୟ ଉପରେ ନିର୍ଭର କରିନାହିଁ । ତା'ର ଏ ମାନସିକତାକୁ ଉତ୍ସାହିତ କରିଛି ଉଦାର ବଜାରୀକରଣ । ନିଜ ଶରୀରକୁ ସେ ପଣ୍ୟଦ୍ରବ୍ୟ ବୋଲି ଗ୍ରହଣ କରିଛି । ଅନ୍ତଃକରଣରେ ମଧ ଉପଭୋଗ ସର୍ବସ୍ୱ ହୋଇପଡିଛି । ତାହା ପ୍ରତିଫଳିତ ହୋଇଛି କବି ଅପର୍ଣ୍ଣା ମହାନ୍ତିଙ୍କ କବିତାରେ-

*ସୁଖ ତ ସୁଖ*
*ସୁଖ ପାଇଁ ବୈଧ କ'ଣ*
*ଅବୈଧ କ'ଣ ?*
*କେବଳ ଜଣେ ଉତ୍ତରାଧିକାର*
*ଜାତକ ଚକ୍ର ଭାବରେ ।*
*କ'ଣ ସୁଖରେ*
*ସମାହିତ କରିହୁଏ ଦେହକୁ ?*
*ଦେହ ସୁଖ ।*

ପୂର୍ଣ୍ଣତମା – ଅପର୍ଣ୍ଣା ମହାନ୍ତି ।

ଉତ୍ତର ଅଶୀ କବିତାରେ ମୃତ୍ୟୁ ଚେତନା ହୋଇଛି ଏକ ପ୍ରମୁଖ ଉପାଦାନ । ଏହି ଭାବକୁ ଜୀବନ ଜଞ୍ଜାଳରେ ଅତିଷ୍ଠ କବି ଯୁଗଯନ୍ତ୍ରଣାରୁ ମୁକ୍ତିପାଇବା ପାଇଁ ମହୌଷଧି ରୂପେ ଗ୍ରହଣ କରିଛି । ଶରତ ଚନ୍ଦ୍ର ପ୍ରଧାନଙ୍କ ଯଯାତି କାବ୍ୟରେ ମୃତ୍ୟୁକୁ ଆବାହନୀ କରି କହନ୍ତି –

*ଯୌବନ ବି ଅଭିଶାପ*
*ରୂପର ଏ ଶେଷ ଷଠୀଘର*
*ଉଦ୍‌ବାସ୍ତ ଜୀବନ ପାଇଁ*
*ଅବା ତାହା ପାନ୍ଥଶାଳା ଖରା ବେଳଟାରେ ।*

ଯଯାତି, ଶରତଚନ୍ଦ୍ର ପ୍ରଧାନ ।

ଦୀପକ ମିଶ୍ରଙ୍କର ଏହି ମର୍ମର କବିତାଟିଏ –

*ଯମ ଦୁଆରେ ଯେତେ କଣ୍ଟା ପକାଇଲେ ବି*
*ମୃତ୍ୟୁ ଆସେ ତାର ବାଟ ସଫା କରି ଓ*

*ତାର କରପତ୍ର ଯୋଡ଼ିବା ଭଙ୍ଗୀରେ*
*ଗରୁଡର ଧ୍ୟାନସ୍ଥ ମୂର୍ତ୍ତି କରେ ମହମହ*
*ଅବସାଦର ବିମର୍ଷ ଅରଣ୍ୟରେ ।*

ଏହି ପରିପ୍ରେକ୍ଷୀରେ ଡଃ ରବିନାରାୟଣ ସେନାପତି ମଧ୍ୟ ସଂସାରକୁ ଜତୁଗୃହ ବୋଲି କହିଛନ୍ତି । ଏ ଜତୁଗୃହର ଯନ୍ତ୍ରଣାରୁ କେବଳ ମୃତ୍ୟୁ ହିଁ ଦେଇପାରେ ମୁକ୍ତି । ତେଣୁ ମୃତ୍ୟୁକୁ ସେ କହୁଛନ୍ତି ପ୍ରିୟ ଅତିଥି, ତାଙ୍କ ଭାଷାରେ-

ମୁକ୍ତିର ଦ୍ୱାର ଫିଟାଇ
ତୁମେ ଆସିଥାଅ
ଜୀବନର ଶେଷ ବିନ୍ଦୁ ପରେ
ଜୀବନରୁ ମୁକ୍ତି
ଜଞ୍ଜାଳରୁ ମୁକ୍ତି
ଜତୁଗୃହ ଭଳି ସଂସାରରୁ ମୁକ୍ତି
ମୁକ୍ତିର ସମସ୍ତ ଦ୍ୱାର ଫିଟିଯାଏ
ତୁମେ ଆସିଗଲେ
ଜୀବନ ନୌକା ଲାଗିଯାଏ
ସେ କୂଳରେ ଯେଉଁଠି
ଠିଆ ହୋଇଥାଏ କେହି ଜଣେ
ଯାହା ସହ ଭେଟ ହୋଇନଥାଏ କଦାପି ।

ପ୍ରତିପଦର ଜହ୍ନ (ପୃ-୨୭)

ଦଳିତ ପତିତ ସର୍ବହରାଙ୍କ ପାଇଁ ଯୁଗେ ଯୁଗେ ସାହିତ୍ୟର ନିଆରା ସ୍ୱର ସମାଜ ବ୍ୟବସ୍ଥାକୁ ଆହ୍ୱାନ ଦେଇଛି । ନୂତନ ପିଢ଼ିର କବିମାନଙ୍କ ପାଇଁ କାବ୍ୟ ସତ୍ତା ପାଇଁ ଜଳ, ଜଙ୍ଗଲ ଜମି, ଧାନ, ପାନ, ମୀନ ପରି ପ୍ରସଙ୍ଗମାନ ଉତ୍‌ପ୍ରେରକ ହୋଇଛି । ମାଇକଞ୍ଚ, କଳିଙ୍ଗ ନଗର, ବେଦାନ୍ତ, ନିୟମଗିରିରେ ଶିଳ୍ପାୟନ ଓ ଖଣି ଖନନକୁ ବିରୋଧ କରି କବିତା ଲେଖିଛନ୍ତି କବି ହେମନ୍ତ ରାଉତ -

*ଆମ ଝାଟି ମାଟିର ଘର ସେମିତି ଥାଉ*

*ସେମିତି ଆଉ ଦେଶୀ କୁକୁଡା ଘୁଷୁରୀ ମାଂସ*
*ବଣର ଛତୁ ମାଣ୍ଡିଆ ଜାଉ, ହାଣ୍ଡିଆ ମଦ*
*ଆମ ଗହଳିରେ ଅସନା ଅସନା ମର୍ଦ୍ଦ*
*କାଳି କୁତୁରୀ ଟିର୍ଲା ଲଙ୍ଗଳା ଛୁଆ*
*ଏମିତି ଭଲ ଆମ ସଂସାର ।*

'ବିସ୍ଥାପିତ'- ହେମନ୍ତ ରାଉତ

ଶୋଷଣ କଷଣ ମୁକ୍ତ ଏକ ଶ୍ରେଣୀହୀନ ସମାଜ ଗଠନ ପାଇଁ ପ୍ରଗତିଶୀଳ କବିମାନେ ଯଥାସାଧ ପ୍ରୟାସ କରିଛନ୍ତି । ଉଭୟ ପ୍ରବୀଣ ଓ ନବୀନଙ୍କ ସ୍ୱରରେ ପ୍ରଗତିବାଦୀ ଚେତନାର ସ୍ୱର ଶାଣିତ ହୋଇଛି, ନୂତନ ଗୋଷ୍ଠୀଙ୍କ ମଧ୍ୟରେ ଲେନିନ୍ ପିନାକୀ ସିଂ, ଅମୀୟ ପାଣ୍ଡବ, ଭାରତ ମାଝୀ, ସୁଶିଲ ପାଣିଗ୍ରାହୀ, ସରୋଜ, ହେମନ୍ତ ଦଳଗତି, ବାସୁଦେବ ସୁନାନୀ, କୁମାର ହସନ, ପ୍ରଭାକର ଶତପଥୀ, ବାସୁଦେବ ଦାସ, ହୁସେନ ରବି ଗାନ୍ଧୀ, ପ୍ରେମାନନ୍ଦ ଖଣ୍ଡୁଆଳ ଆଦି ଏହି ଧାରାରେ ଅନେକ କବିତା ଲେଖିଛନ୍ତି । ଅମୀୟ ପାଣ୍ଡବଙ୍କ କବିତା ପଂକ୍ତିଟିଏ -

*ଏବେ ଘରିଆଡ଼େ ଖାଲି ନିଆଁ ?*
*ଆଁ କରି ଗିଳି ସାରିଲାଣି*
*ଆନ୍ଧ୍ରର ରନ୍ଧ୍ର ଦେଇ*
*ଓଡ଼ିଶାର ଓଢ଼ଣି ଟଳୁ*
*ଓଡ଼ିଶାର ଛାତି ଉପରେ*
*ଡାଡି ରୂପରେ ।*

ସାହିତ୍ୟରେ ଜନବାଦୀ ଚେତନା ପୁଷ୍ଟ କରିବାପାଇଁ ଲେନିନ୍‌ଙ୍କ ଦ୍ୱାରା ପ୍ରକାଶିତ ନିଶାନ୍ ପତ୍ରିକା ଓ ସାପ୍ତାହିକ ଜନବାଦୀ ପ୍ରମୁଖ ଭୂମିକା ଗ୍ରହଣ କରିଛି । ବିକାଶ ନାଁରେ ପ୍ରକୃତିର ବିନାଶ, ନକ୍‌ସଲ ନାଁରେ ଆଦିବାସୀଙ୍କ ଉପରେ ହେଉଥିବା ଜୁଲମ୍‌ର ସେମାନେ ମର୍ମସ୍ପର୍ଶୀ ଚିତ୍ର ପ୍ରଦାନ କରିଛନ୍ତି ।

ଉତ୍ତର ଅଶୀରେ ସାଂପ୍ରତିକ ଜୀବନ ଯନ୍ତ୍ରଣା ସହ ପୌରାଣିକ ଚରିତ୍ରମାନେ ଯୋଡି ହୋଇଯାଇଛନ୍ତି । ରମାକାନ୍ତ ରଥଙ୍କର ଶ୍ରୀରାଧା ଅଗ୍ରଗଣ୍ୟା ହୋଇଛି । ତା'ପରେ ପରେ ଚନ୍ଦ୍ରସେଣା, ଯଶୋଦା, ଅହଲ୍ୟା, ଉର୍ମିଳା, ଶର୍ବରୀ,

ଜାରାଶବର, ପିଙ୍ଗଳା, ଯଯାତି, କର୍ଣ୍ଣ, ପରୀକ୍ଷିତ, ବସୁସେଣ ଆଦି ଚରିତ୍ର ମାଧ୍ୟମରେ ସାଂପ୍ରତିକ ଜୀବନର ଜ୍ୱାଳା ଯନ୍ତ୍ରଣାମୟ ଚିତ୍ରକୁ ଅନୁସନ୍ଧାନ କରିଛନ୍ତି। ପ୍ରାଚୀନ କାହାଣୀ କିମ୍ବଦନ୍ତୀ ଲୋକକଥା ଆଦି ମିଥ୍ ଉତ୍ତର ଅଶୀର କବିମାନଙ୍କୁ ବେଶି ଆକର୍ଷିତ କଲା। ଏଗୁଡିକୁ ଭାବ ବସ୍ତୁକରି ଅନେକ କବିତା ରଚିତ ହୋଇଛି। କବି ବଂଶୀଧର ଷଡଙ୍ଗୀଙ୍କର ଶବରୀ ଚର୍ଯ୍ୟା ଏହି ପର୍ଯ୍ୟାୟ ଭୁକ୍ତ କବିତାର ଏକ ଉଦାହରଣ -

*ତୋର ସମସ୍ତ ଔଦ୍ଧତ୍ୟ ପରାହତ*
*ହିରଣ୍ୟକ ତୋର ମାୟାଜାଳକୁ*
*ବିଅର୍ଥ କରିଛି,*
*ଓଲଟ ବୃକ୍ଷରେ ମୋର ବାସ ସହଜ ସୁନ୍ଦରୀ*
*ଚତୁର୍ଥ ଶୂନ୍ୟତାର ଅବଧୂତ ମୁଁ।*

ଚର୍ଯ୍ୟାପଦ - ବଂଶୀଧର ଷଡଙ୍ଗୀ

ଉତ୍ତର ଅଶୀର କାବ୍ୟ କବିତାର ସୀମା ସରହଦ ବହୁମୁଖୀ। ଏଠି ପ୍ରାଚୁର୍ଯ୍ୟ ଯେମିତି ନଭଶ୍ଚୁମ୍ବୀ, ଦାରିଦ୍ର୍ୟ ସେମିତି ପାତାଳ ଫୁଟା। ରାଜନୈତିକ ଷଡଯନ୍ତ୍ର, ପ୍ରଶାସନିକ ବିଫଳତା, ବିପର୍ଯ୍ୟସ୍ତ ଶିକ୍ଷା ବ୍ୟବସ୍ଥା ଓ ପ୍ରାକୃତିକ ବିପର୍ଯ୍ୟୟରେ ଜୀବନ। ତଥାପି ବିପର୍ଯ୍ୟସ୍ତ ଜୀବନବାଦୀ କବି ହାରିନାହିଁ। ନିତି ନିତି ନୂଆ ସ୍ୱପ୍ନ ଦେଖିବାରେ ସେ କ୍ଲାନ୍ତ ହୋଇନାହିଁ କି ସଂଗ୍ରାମ ବନ୍ଦ କରିନାହିଁ। ପ୍ରସନ୍ନ ମିଶ୍ରଙ୍କର 'ଟ୍ରକ୍ ଡାଲାରେ ସନାତନ', ରବି ସିଂଙ୍କର 'ଲୋହିତ ସଂକ୍ରାନ୍ତି', କମଳାକାନ୍ତ ଲେଙ୍କାଙ୍କର 'ଚିରାୟୁତ', ରାଜେନ୍ଦ୍ର ପଣ୍ଡାଙ୍କର 'ବହୁବ୍ରିହୀ', ଫନୀ ମହାନ୍ତିଙ୍କ 'ମାୟା ଦର୍ପଣ', ହୃଷିକେଶ ମଲ୍ଲିକଙ୍କର 'ଉଜୁଡା କ୍ଷେତର ଗୀତ', ବ୍ରଜନାଥ ରଥଙ୍କର 'ହେ ମହାଜୀବନ' ଏହି ଭାବଧାରାରେ ପରିପୁଷ୍ଟ। ଏକ ସାମ୍ୟବାଦୀ ସମାଜ ଗଠନ କରିବାର ସ୍ୱପ୍ନ ଦେଖୁଥିବା କବିସତ୍ତାର ସ୍ୱଭାବ ସିଦ୍ଧ ଉଦ୍‌ଗୀରଣରେ ଉତ୍ତର ଅଶୀର କବିତା ସମୃଦ୍ଧ। ରବି ସିଂଙ୍କ ଉଚ୍ଚାରଣୀ -

*ଲଢ଼ିଛି ହାରିଛି ପୁଣି ମାନବିକ ମୂଲ୍ୟବୋଧ*
*ସାମ୍ୟଶାନ୍ତି ପାଇଁ*
*ଦିନେ ହେଲେ ଭୁଲେ ନାହିଁ।*

(ମା ନିଷାଦ, ଭଙ୍ଗାହାତର କବିତା)

ପ୍ରସନ୍ନ ମିଶ୍ରଙ୍କର ଏହି ମର୍ମର କବିତା 'ଟ୍ରକ ଡାଲାରେ ସନାତନ'। ସାମ୍ୟବାଦୀ ଚେତନାରେ ପରିପୂର୍ଣ୍ଣ କବିତା ହେଲା -

*ଟ୍ରକ ଡାଲାରେ ବସି କୁଆଡେ ଯାଉଚୁରେ ସନାତନ*
*ଥେଉବାଲି ନା ଦାମନ ଯୋଡି*
*ଯୁଆଡେ ଯାଆ, ସବୁଠି ପାହାଡ*
*ସବୁଠି ପାହାଡ ଭାଙ୍ଗି କରିବାକୁ ହେବ ଧୂଳି।*

ତଥାପି ଆଶା ତୁଟି ନାହିଁ। ଏକ ସୁନ୍ଦର ଭବିଷ୍ୟତ ଆଶାରେ ମଣିଷ ବର୍ତ୍ତମାନର  ସ୍ଥିତି ପ୍ରତି ବିତସ୍ପୃହ ନହେଇ ସେ ସ୍ୱପ୍ନ ଦେଖିଚାଲିଛି। କବି ମନୋରମା ବିଶ୍ୱାଳ ମହାପାତ୍ରଙ୍କ କବିତା -

*ଛାଳ ଛପର ଘର ଭିତରେ*
*ପଣିକିଆ ମୁଖସ୍ତ କରୁଥିବା*
*ଖୁଜୁବୁଜୁ ପିଲାଟିଏ ତୁ ଓଡ଼ିଶା*
*ପଖାଳ କଂସାରେ ହାତ ପୁରାଇ*
*ସ୍ୱପ୍ନ ଦେଖୁଥିବା ଚୁଣ୍ଡିଆ ବେହେରାର*
*ଚିରନ୍ତନ ଆଶା।*

'ତୋତେ ମୁଁ ଚିହ୍ନେ ଓଡ଼ିଶା'

ଥରେ ଡାକିଦେଲେ - ମନୋରମା ବିଶ୍ୱାଳ ମହାପାତ୍ର

ଜୀବନ ବୋଧରେ ରସାଣିତ ପ୍ରାପ୍ତି ଓ ଅପ୍ରାପ୍ତି ଉଭୟକୁ ନିର୍ଲିପ୍ତ ଭାବରେ ଆବୋରି ନେଇ ସାରସ୍ୱତ ସାଧକମାନେ ଗୁଡାଏ ପ୍ରୟୋଗ ନିୟୋଗରେ ସମୃଦ୍ଧ କରିଛନ୍ତି ଉତ୍ତର ଅଶୀର କାବ୍ୟ ଜଗତକୁ। ପ୍ରବୀଣମାନଙ୍କର ପରିପକ୍ୱ ଅନୁଭବ ସହ ନୂତନମାନେ ସମତାଳରେ ଗତି କରିଚାଲିଛନ୍ତି। ସ୍ଥଳ ବିଶେଷରେ ତରୁଣମାନେ ପ୍ରବୀଣଙ୍କୁ ଅତିକ୍ରମ କରିଯିବାର ଦୃଷ୍ଟାନ୍ତ ମଧ୍ୟ ରହିଛି। ମଧ୍ୟ ଓଡ଼ିଶା ପରିବର୍ତ୍ତେ ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳ ଓ ପଶ୍ଚିମ ଓଡ଼ିଶା, ଯେଉଁଠି ମଣିଷ ସର୍ବଦା ସଂଘର୍ଷ ସଂଘାତ, ଦୁଃଖ, ଶୋକ ଓ ଯନ୍ତ୍ରଣାର ଜୁଇ ଉପରେ ସମାଧିସ୍ଥ ଜୀବନ ବିସ୍ଥାପନ, ମାନବ ଚାଲାଣ ପ୍ରାକୃତିକ ବିପର୍ଯ୍ୟୟ ପରି ଗମ୍ଭୀର ସମସ୍ୟାରେ ପୀଡିତ, ସେଇ ମାଟିରୁ ଏବେ ବାହାରୁଚି ଉତ୍କୃଷ୍ଟମାନର

କବିତା। ଏମାନେ ଏବେ ସାଂପ୍ରତିକ କାବ୍ୟ ଜଗତକୁ ନୂତନ ଦିଗନ୍ତ ଚୁମ୍ବୀ କରିବାପାଇଁ ଅଙ୍ଗୀକାର ବଦ୍ଧ ପରି ମନେ ହୁଏ, ଏ ଧାରା ଅବ୍ୟାହତ ରହୁ। ଆଲୋଚନାଟି ସଂପୂର୍ଣ୍ଣ ଆଲୋଚନା ନୁହେଁ, ସମୟ ଓ ସ୍ଥାନର ସୀମିତତା ହେତୁ କେବଳ ଅଳ୍ପ କେତେଜଣ ସ୍ରଷ୍ଟାଙ୍କୁ ଏଠି ସ୍ଥାନିତ କରାଯାଇଛି। ଆହୁରି ଅନେକ ପ୍ରତିଷ୍ଠିତ ଓ ପ୍ରତିଶ୍ରୁତ ସ୍ରଷ୍ଟା ଆଲୋଚନା ବାହାରେ ରହିଛନ୍ତି। ସେମାନଙ୍କୁ ସ୍ଥାନିତ କରିପାରିନଥିବାରୁ ବିନମ୍ର କ୍ଷମା ଭିକ୍ଷା କରୁଛି।



# ପୁରୁଣାପୋଥି ଓ
# ମଧୁମାଳତୀର ମହକ
## (ସୁରେନ୍ଦ୍ର ମହାନ୍ତିଙ୍କ ଶେଷସ୍ତମ୍ଭ)

"ସମୃଦ୍ଧ ପ୍ରଭାବଶାଳୀ ସାହିତ୍ୟ ସୃଷ୍ଟି ପାଇଁ ମାନସିକ ବିଳାସ କେବଳ ଯଥେଷ୍ଟ ନୁହେଁ। ସେଥିପାଇଁ ମଧ୍ୟ ରହିଥିବା ପ୍ରୟୋଜନ କିଛି ସଂପୃକ୍ତି ଓ କିଛି ସଂକଳ୍ପର ସ୍ୱାକ୍ଷର। ଆଙ୍ଗୁଠି ନ ପୋଡ଼ି ନିରାପଦ ଦୂରତ୍ୱରେ ରହି ନିଆଁ ଉପରେ ନିବନ୍ଧ ଲେଖିବା ଏକ କଥା ମାତ୍ର ନିଆଁ ଉପରେ କବିତା ଲେଖିବା ଆଉ ଗୋଟିଏ ଭିନ୍ନ କଥା। ଗୋଟିକରେ ଅଛି ଦହନର କଳ୍ପନା ବିଳାସ, ଅନ୍ୟଟିରେ ଅଛି ଦହନର ପ୍ରତ୍ୟକ୍ଷୀଭୂତ ଯନ୍ତ୍ରଣା" (ପଥ ଓ ପୃଥିବୀ, ଉପୋଦ୍‌ଘାତ)

ପ୍ରଚଣ୍ଡ ପ୍ରଜ୍ଞାପ୍ରତିଭାର ଅଧିକାରୀ ଓଡ଼ିଶାର ବାଣୀପୁତ୍ର ସୁରେନ୍ଦ୍ର ମହାନ୍ତିଙ୍କ ସ୍ରଷ୍ଟାମାନସର ଏହାଥିଲା ସାରସ୍ୱତ ସତ୍ୟପାଠ। ଗଳ୍ପ,ଉପନ୍ୟାସ, ଚରିତ ଉପନ୍ୟାସ, ଭ୍ରମଣ କାହାଣୀ, ନାଟକ, ସାହିତ୍ୟ ସମାଲୋଚନା ଆତ୍ମଜୀବନୀ ଆଦି ସାହିତ୍ୟର ବିଭିନ୍ନ ବିଭାଗରେ ତାଙ୍କ ଲେଖନୀ ସଫଳତାର ସହ ଉତ୍ତୁଙ୍ଗ ଶିଖରକୁ ଉନ୍ନୀତ ହୋଇଥିଲା। ଲେଖିବା ତାଙ୍କର ସୌଖୀନ ବିଳାସ ନ ଥିଲା, ଥିଲା ପ୍ରବୃତ୍ତି। କଳ୍ପଜଗତର କଥା ସେ କହନ୍ତି ନାହିଁ, ଦହନର ଧ୍ୱାନ୍ତ ଗନ୍ଧ ତାଙ୍କ ସାରସ୍ୱତ ସୃଷ୍ଟିର ଛତ୍ରେ ଛତ୍ରେ ପ୍ରତିଫଳିତ। ଜୀବନର ଶତଶତ ପ୍ରତିକୂଳ ପରିସ୍ଥିତି ସହ ସଂଗ୍ରାମ କରି ସେ ଯେଉଁ ମର୍ମଭେଦୀ ଅନୁଭୂତି ହାସଲ କରିଥିଲେ

ତା'ର ସ୍ୱର୍ଣ୍ଣିମ ସ୍ୱାକ୍ଷର ତାଙ୍କର ବିଭିନ୍ନ ସାରସ୍ୱତ ସମ୍ପଦ। ତାଙ୍କ ସୃଷ୍ଟିମାନଙ୍କ ମଧ୍ୟରେ ଅଧିକାଂଶ ପ୍ରେରଣା ପ୍ରସୂତ ଥିବାବେଳେ ଆଉ କିଛି, ପ୍ରୟୋଜନୀୟତା ବୋଧରୁ। ଶେଷସ୍ତମ୍ଭ ଶ୍ରୀଯୁକ୍ତ ମହାନ୍ତିଙ୍କ ଜୀବନର ଶେଷ ପର୍ଯ୍ୟାୟର ସୃଷ୍ଟି ଥିଲା। ତାଙ୍କ ଆଦ୍ୟ ଜୀବନର ସୃଷ୍ଟି 'କୃଷ୍ଣଚୂଡ଼ା'ର ଗଳ୍ପ ନାୟକ ସଦାନନ୍ଦ କଳାଘୁମର ମେଘଢ଼ଙ୍କା ଆକାଶ ଆଡ଼େ ଚାହିଁ, ନିଜକୁ ନିଜେ ପଚାରିଥିବା ପ୍ରଶ୍ନ "ଏଇ ପୁଷ୍ପିତ କୃଷ୍ଣଚୂଡ଼ା ଆଜି ଦିନର ସ୍ତମ୍ଭ ନ ହେବ କାହିଁକି ? ର ସାର୍ଥକ ପ୍ରତ୍ୟୁତ୍ତର ଶେଷସ୍ତମ୍ଭ। ଏଥିପାଇଁ ଉତ୍କଳୀୟ ପାଠକମାନଙ୍କୁ ଚାରି ଦଶନ୍ଧି ଧରି ପ୍ରତୀକ୍ଷା କରିବାକୁ ହୋଇଥିଲା। "କଳିଙ୍ଗ" ସମ୍ବାଦପତ୍ର ସମ୍ପାଦନା କଲାବେଳେ ଲେଖକଙ୍କର ଅବଦମିତ ଅଭିଳାଷର ପ୍ରାଣବନ୍ତ ସୃଷ୍ଟି ଥିଲା କୃଷ୍ଣଚୂଡ଼ା। ସେତେବେଳକୁ ସମ୍ବାଦପତ୍ରମାନଙ୍କରେ ସରସ ସାହିତ୍ୟର ସ୍ଥାନ ନ ଥିଲା। ଭାଗବତ ଘରର ପୁରୁଣା ପୋଥିର ମହକ, ଗୋବର ଲିପା ମାଟିପିଣ୍ଡା ଓ ମଧୁମାଳତୀର ବାସ୍ନାରେ ଶୈଶବ ଅତିବାହିତ କରିଥିବା ଶ୍ରୀଯୁକ୍ତ ମହାନ୍ତିଙ୍କୁ ଏସବୁ ଲାଗୁଥିଲା ନିତାନ୍ତ ନିରସ ଓ ଶୁଷ୍କ। ବୌଦ୍ଧିକତା ଓ ବିନୋଦକୁ ଏକାଗ୍ରାସରେ ଅନ୍ତସ୍ଥ କରିବାରେ ଅଭ୍ୟସ୍ତ ଥିଲେ ଶ୍ରୀଯୁକ୍ତ ମହାନ୍ତି। ସାମ୍ବାଦିକତା ରାଜନୀତି ଓ ସାରସ୍ୱତ ସାଧନାର ତ୍ରିବେଣୀ ଘାଟରେ ଅବଗାହୁଥିବା, ଜୀବନରେ ବାରମ୍ବାର ଉତ୍‌ଥାନ ପତନର ତିକ୍ତ ମଧୁର ସ୍ୱାଦ ଅନୁଭବ କରୁଥିବା ସୁରେନ୍ଦ୍ରଙ୍କୁ ଜୀବନର ଶେଷ ପର୍ଯ୍ୟାୟରେ ଦୈନିକ 'ସମ୍ବାଦ' ଖବରକାଗଜର ସମ୍ପାଦନା ନିମନ୍ତେ ଆହ୍ୱାନ ଆସିଥିଲା। ସେ ଆନନ୍ଦରେ ଅଭିଭୂତ ହୋଇଯାଇଥିଲେ। ୧୯୮୪ ମସିହା ଅକ୍ଟୋବର ଚାରି ତାରିଖ ବିଜୟା ଦଶମୀ ଦିନ ସମ୍ବାଦର ପ୍ରଥମ ଉଦ୍‌ବୋଧନୀ ସଂଖ୍ୟାରେ ସେ ଲେଖିଥିଲେ- 'ସୁପ୍ରଭାତ। ମୋ ଜୀବନବୃତ୍ତ ବର୍ତ୍ତମାନ ପୂର୍ଣ୍ଣ ଆବର୍ତ୍ତିତ। ବହୁ ତିକ୍ତ ମଧୁର ସ୍ମୃତି, ବହୁ ଅଭିଜ୍ଞତା ଭିତର ଦେଇ ମୁଁ ଜୀବନ ଆରମ୍ଭ କରିଥିଲି ସାପ୍ତାହିକ 'ଜନତା'ର ପୃଷ୍ଠାରେ। ଆଜି ଜୀବନ ସାୟହ୍ଣରେ ମୁଁ ଗୋଟିଏ ପ୍ରଭାତୀ ଦୈନିକର ସମ୍ପାଦକ ହୋଇପାରିଛି। ଜୀବନ ଯେଉଁ ବିନ୍ଦୁରୁ ଦିନେ ଆରମ୍ଭ କରିଥିଲି, ବହୁ ଘାଟରେ ପାଣି ପିଇପିଇ ମୁଁ ଆଜି ସେହି ବିନ୍ଦୁରେ ପୁଣି ନୂତନ ଭାବରେ ପହଞ୍ଚିଛି। ଇୟେ ମୋ ପକ୍ଷରେ ବହୁ ସାଂସାରିକ ଅସଫଳତା ମଧ୍ୟରେ ଗୋଟିଏ ବିରାଟ ସଫଳତା। କାରଣ ମୋ ଦୃଷ୍ଟିରେ ଏହା ହିଁ ଜୀବନ। ମୁଁ ଆଣ୍ଟି ମେଟେରିଆଲ୍‌ଷ୍ଟିକ୍

ହୋଇଥିବାରୁ କୌଣସି ଦିନ କୌଣସି ସାଂସାରିକ କଥାପାଇଁ ମୋର ହାଇଁପାଇଁ ନଥିଲା। ମୋର ସାହିତ୍ୟ ସୃଷ୍ଟି ଓ ଉଲଙ୍ଗ ତରବାରି ପରି ଅବାଧ ଜୀବନ ମଧ୍ୟରେ ମୁଁ ଅନୁଭବ କରିଆସିଛି ଅନାପେକ୍ଷିକ ପୂର୍ଣ୍ଣତା। ମୋର ଅନ୍ୟ କୌଣସି କାମନା ବା ବ୍ୟାକୁଳତା ନାହିଁ। ଆଂଶିକ ଭାବରେ ମୁଁ ଜୀବନ୍ମୁକ୍ତ (ପଥ ଓ ପୃଥିବୀ ପୃ-୪୯୧)

ସୁରେନ୍ଦ୍ର ମହାନ୍ତିଙ୍କର ଏ ସ୍ୱୀକାରୋକ୍ତିର ଭିତ୍ତିଭୂମି ଉପରେ ଦଣ୍ଡାୟମାନ ଆଲୋଚ୍ୟ ଶେଷସ୍ତମ୍ଭ। ଶେଷସ୍ତମ୍ଭ ସଂରଚନା ହୋଇଥିଲା ଗୋଟାଏ ବିଶେଷ ପ୍ରୟୋଜନ ବୋଧରୁ। ଦୈନିକ ସମ୍ବାଦପତ୍ରରେ ସାପ୍ତାହିକୀ ସାହିତ୍ୟ ପାଇଁ ପୃଷ୍ଠାଟିଏ ପ୍ରକାଶିତ ହେବାର ନିଷ୍ପତ୍ତି ନିଆଯାଇଥିଲା। ସମ୍ପାଦକ ଭାବରେ ଏହି ସାପ୍ତାହିକୀ ସାହିତ୍ୟ ପୃଷ୍ଠାକୁ ସେ ପ୍ରତ୍ୟକ୍ଷ ଭାବରେ ନିୟନ୍ତ୍ରଣ କରୁଥିଲେ। ଏହି ପୃଷ୍ଠାରେ କେବଳ ଗଦ୍ୟ ଛାପା ଯିବାର ନିଷ୍ପତ୍ତି ସେ ନେଇଥିଲେ। କିନ୍ତୁ ସାହିତ୍ୟ ପୃଷ୍ଠା ପ୍ରକାଶର ପ୍ରଥମ ଦିନ ଅର୍ଥାତ୍ ୧/୧୧/୮୪ ଦିନ ଯେଉଁ ସାହିତ୍ୟ ପୃଷ୍ଠାଟି କରାଗଲା ସେଥିପାଇଁ ଆଠଦଶ ଇଞ୍ଚ କଲମ ସ୍ଥାନ ପାଇଁ ଗଦ୍ୟଟିଏ ଆବଶ୍ୟକ ପଡ଼ିଥିଲା। ଏତେ ଛୋଟ ଜାଗା ପାଇଁ ଗଦ୍ୟ ବଦଳରେ ପଦ୍ୟଟିଏ ଦେଇଦେବା ପାଇଁ ସହକାରୀ କହିଥିଲେ। ଏ ସମ୍ପର୍କରେ ଶେଷସ୍ତମ୍ଭର ପ୍ରଥମ ଖଣ୍ଡର ଭୂମିକାରେ ସେ ଲେଖିଛନ୍ତି- "ମୁଁ ତାଙ୍କୁ କହିଲି, ମୋର ନିଷ୍ପତ୍ତି ଅପରିବର୍ତ୍ତନୀୟ। କବିତାଟିଏ ଶୂନ୍ୟସ୍ଥାନ ପୂରଣ କଲାପରି ଛପାଇ ଦେଲେ କବିତାର ଅମର୍ଯ୍ୟାଦା ହେବ। ସହକାରୀ କହିଲେ, ତା'ହେଲେ ଆପଣ ସେହି ସ୍ଥାନ ପାଇଁ ଲେଖାଟିଏ ଦିଅନ୍ତୁ। ଅଗତ୍ୟା ମୋତେ ବହୁ ଶ୍ରମ ସ୍ୱୀକାର କରି ସେତିକି ଶୂନ୍ୟସ୍ଥାନ ପୂରଣ ପାଇଁ ସେହିଠାରେ ଲେଖାଟିଏ ଲେଖିବାପାଇଁ ପଡ଼ିଲା। ସେଥିପାଇଁ ଏହାର ନାମ ଶେଷସ୍ତମ୍ଭ ହୋଇ ରହିଛି। ଏହା ସାହିତ୍ୟ ପୃଷ୍ଠାର ଶେଷ ସ୍ତମ୍ଭ ତଳେ ପ୍ରକାଶ ହୋଇ ଆସୁଅଛି।" (ଭୂମିକା: ଶେଷସ୍ତମ୍ଭ ୧ମ ଖଣ୍ଡ)

ସମ୍ବାଦପତ୍ରରେ ନିର୍ଦ୍ଦିଷ୍ଟ ସମୟ ବ୍ୟବଧାନରେ ଅଥବା ପ୍ରତ୍ୟହ କୌଣସି ଏକ ନିର୍ଦ୍ଦିଷ୍ଟ ବ୍ୟକ୍ତିଙ୍କ ଦ୍ୱାରା ଏକ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟରେ ଲେଖା ଯାଉଥିବା ସଂକ୍ଷିପ୍ତ ରଚନାକୁ କୁହାଯାଏ ସ୍ତମ୍ଭ। ଏହାର ରଚୟିତାଙ୍କୁ କୁହାଯାଏ ସ୍ତମ୍ଭକାର। ଇଂରେଜୀରେ ଏହାକୁ କୁହାଯାଏ କଲମ ଓ ରଚୟିତାଙ୍କୁ କୁହାଯାଏ କଲମିଷ୍ଟ।

ଏହି ସ୍ତମ୍ଭମାନଙ୍କରେ ଥାଏ ସମୟର ଆହ୍ୱାନ। ସଦ୍ୟତମ, ନିତ୍ୟ ନୂତନ ଓ ସର୍ବକାଳିକ ଆବେଦନ ଥିବା ପ୍ରସଙ୍ଗଙ୍କୁ ସ୍ତମ୍ଭକାର ଚୟନ କରିଥାନ୍ତି। ବିଷୟ ଚୟନ ଓ ଉପସ୍ଥାପନ ଉଭୟ ପ୍ରତି ଅତି ସତର୍କ ଦୃଷ୍ଟି ଦେଇଥାନ୍ତି ସ୍ତମ୍ଭକାର। ଶବ୍ଦର ହଟଚମଟ ନୁହେଁ ବରଂ ସ୍ୱଳ୍ପ ଶବ୍ଦର ସୁନିପୁଣ ବିନ୍ୟାସରେ ବିଶ୍ୱବ୍ୟାପୀ ସନ୍ଦେଶ ସଂଗୋପିତ ହୋଇ ରହିଥାଏ ସ୍ତମ୍ଭରେ। ଠିକ୍ ବିନ୍ଦୁରେ ସିନ୍ଧୁ ଦର୍ଶନ ପରି। କ୍ଷୁଦ୍ର ଆଖିର ପରିସୀମା ଭିତରେ ଆକାଶର ବ୍ୟାପ୍ତିକୁ ଉପଲବ୍ଧି କଲାପରି।

ଓଡ଼ିଆ ସାରସ୍ୱତ ଭଣ୍ଡାରକୁ ଶେଷସ୍ତମ୍ଭ ରଚନା ପୂର୍ବରୁ ସମୃଦ୍ଧ କରିଥିବା ସ୍ତମ୍ଭ ସାହିତ୍ୟମାନଙ୍କ ମଧ୍ୟରେ ସର୍ବାଗ୍ରେ ଆସେ ବହୁଦିନ ଧରି ଅଣାକାର ଛଦ୍ମନାମରେ ଦୈନିକ ସମ୍ବାଦପତ୍ର ସମାଜରେ ପ୍ରକାଶିତ ଝିଟିପିଟି କହେ ଶୀର୍ଷକ ସ୍ତମ୍ଭ। ହରେକୃଷ୍ଣ ମହତାବଙ୍କର ପ୍ରଜାତନ୍ତ୍ରରେ ପ୍ରକାଶିତ ଗାଁ ମଜଲିସ୍ ଓ ଧରିତ୍ରୀ ପୃଷ୍ଠାରେ ମନୋଜ ଦାସଙ୍କ କେତେ ଦିଗନ୍ତ ମଧ୍ୟ ବହୁ ପାଠକୀୟ ଶ୍ରଦ୍ଧା ଅର୍ଜନ କରିଥିଲା। ଗାଁ ମଜଲିସ୍ ଓ କେତେ ଦିଗନ୍ତ ରଚନାମାନଙ୍କର ସଂକଳିତ ରୂପ ଉପଲବ୍ଧ ହେଉଥିବା ବେଳେ ଅଣାକାରଙ୍କର ଝିଟିପିଟି କହେ ଏବେ ବି ସାଧାରଣ ପାଠକଙ୍କ ପାଖରେ ରହସ୍ୟାବୃତ ହୋଇ ରହିଛି। ସୁରେନ୍ଦ୍ର ମହାନ୍ତିଙ୍କ ଶେଷସ୍ତମ୍ଭ ରଚନାମାନଙ୍କୁ ନେଇ ଦୁଇଟି ସଂକଳନ ଆମ ଓଡ଼ିଆ ସାହିତ୍ୟ ଭଣ୍ଡାରର ଅନନ୍ୟ ସମ୍ପଦ। ପ୍ରଥମ ଖଣ୍ଡଟି ଇଷ୍ଟର୍ଣ୍ଣ ମିଡ଼ିଆ ଦ୍ୱାରା ପ୍ରକାଶିତ ହୋଇଥିବାବେଳେ ୨ୟ ଖଣ୍ଡର ପ୍ରକାଶକ ବିଦ୍ୟା ପ୍ରକାଶନ, କଟକ।

ସୀମିତ କଳେବରରେ ଅସୀମ ଭାବ ବହନ କରିଥିବା ଏ ଅମୂଲ୍ୟ ସମ୍ପଦକୁ ସୁରେନ୍ଦ୍ର ମହାନ୍ତି ବ୍ୟାସଦେବଙ୍କ ପରି ଡିକ୍ଟେସନ୍ ଦେଉଥିଲେ। ସେହି ମୁଖ ନିଃସୃତ ବାକ୍ୟମୂହକୁ ଲିପିବଦ୍ଧ କରିବା ପାଇଁ ଗଣେଶ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ ଦୁଇଜଣ ମହାରଥୀ। ଜଣେ ତାଙ୍କର ସୁଯୋଗ୍ୟ ଜନ୍ମିତ ପୁତ୍ର ପୁଷ୍ପମିତ୍ର ମହାନ୍ତି ଓ ଅନ୍ୟ ଜଣେ ତାଙ୍କର ମାନସ ପୁତ୍ର ସୁସାହିତ୍ୟିକ ଗୌରହରି ଦାସ। ଏବେ ସୁଦ୍ଧା ଗୌରହରିବାବୁ ଜୀବନର ଜଳଛବି ଶୀର୍ଷକରେ ସମ୍ବାଦପୃଷ୍ଠାରେ ସୁରେନ୍ଦ୍ରୀୟ ପରମ୍ପରାକୁ ଅକ୍ଷୁଣ୍ଣ ରଖିଛନ୍ତି। ଭାବରେ ଭାଷାରେ ଆବେଗରେ ସବୁଠି ସେଇ ସୁରେନ୍ଦ୍ରୀୟ ଛାପ। ମଧୁମାଳତୀର ମହକ, ଗୋବରଲିପା ମାଟିପିଣ୍ଡା ଓ ପୁରୁଣା ପୋଥିର ବାସ୍ନା।

ଶେଷସ୍ତମ୍ଭ ପ୍ରଥମ ଖଣ୍ଡରେ ସଂକଳିତ ରଚନାଗୁଡ଼ିକର ରଚନାକାଳ ୧୯୮୪ ମସିହା ନଭେମ୍ବର ଏକ ତାରିଖରୁ ୧୯୮୭ ନଭେମ୍ବର ୨୨ ପର୍ଯ୍ୟନ୍ତ ପ୍ରଲମ୍ବିତ ଥିଲା । ଏଥିରେ ସର୍ବମୋଟ ୧୦୦ଟି ରଚନା ସନ୍ନିବେଶିତ ହୋଇଛି । ଅବଶ୍ୟ ପରିସଂଖ୍ୟାନ ଦୃଷ୍ଟିରୁ ୧୫୯ଟି ରଚନାର ଅପେକ୍ଷା ରଖେ । କିନ୍ତୁ କୌଣସି ଅନିବାର୍ଯ୍ୟ କାରଣରୁ ରଚନାରେ ବ୍ୟାହତ ସୃଷ୍ଟି ହୋଇଥାଇପାରେ ଅଥବା ରଚିତ ହୋଇଥିଲେ ସୁଦ୍ଧା ସଂକଳନରେ ସ୍ଥାନିତ ହୋଇପାରି ନାହିଁ । ପୁଣି ଓଡ଼ିଆ ଉପନ୍ୟାସର ଭୂମିକା (୭-୩-୮୫) ଶ୍ରୀଜଗନ୍ନାଥଙ୍କ ଅଣସର (୬.୬.୮୫) ଅପରାଜିତା (୨୬.୮.୮୫), ପିଓର ବନାମ ପପ୍ (୧୯.୧୨.୮୫) ଶୀର୍ଷକ ଚାରିଗୋଟି ରଚନା ସଂକଳନରେ ସ୍ଥାନିତ ହୋଇନାହିଁ (ସୁରେନ୍ଦ୍ର ସାହିତ୍ୟ ସମୀକ୍ଷଣ, ପୃ୭୭, ପ୍ରକାଶ ପରିଡ଼ା) ।

ଶେଷସ୍ତମ୍ଭରେ କେବଳ ସାହିତ୍ୟ ସମ୍ପର୍କୀତ ରଚନା ସ୍ଥାନିତ ହେବାର ନିଷ୍ପତ୍ତିକୁ ସମୟର ଆହ୍ୱାନରେ ପରିବର୍ତ୍ତନ କରିଥିଲେ ସ୍ତମ୍ଭିକ ଶ୍ରୀଯୁକ୍ତ ମହାନ୍ତି । ପ୍ରଥମ କେତେକ ରଚନା ଥିଲା ନିରୋଳ ସାହିତ୍ୟ ଆଧାରିତ । ଆମ ଭାଷାର ସାହିତ୍ୟ ପାଖରୁ ବିଶ୍ୱସାହିତ୍ୟ  ପର୍ଯ୍ୟନ୍ତ ସେ ଚର୍ଚ୍ଚା ଆଲୋଚନା ବିସ୍ତୃତ ଥିଲା । କିନ୍ତୁ ପରେପରେ ସାଂସ୍କୃତିକ, ସାମାଜିକ, ରାଜନୀତି ବ୍ୟକ୍ତିଗତ ଭାବାନୁଭୂତି ଆଧାରିତ ରଚନା ସ୍ଥାନ ପାଇଲା । କେତୋଟି ସ୍ୱୟଂସଂପୂର୍ଣ୍ଣ ଗଳ୍ପ ମଧ୍ୟ ଉଭୟ ପ୍ରଥମ ଓ ଦ୍ୱିତୀୟ ଖଣ୍ଡରେ ସ୍ଥାନ ପାଇଛି । ସାହିତ୍ୟ ପ୍ରସଙ୍ଗରେ ୩୦ଟି, ସାମାଜିକ ସମସ୍ୟା ସଙ୍କଟ ଓ ଅବକ୍ଷୟଶୀଳତାର ଭାବ ବହନ କରୁଥିବା ଚରନା ୧୩ଟି ସଂସ୍କୃତି ଆଧାରିତ ୧୫ଟି ରଚନା, ରାଜନୀତି ଭାବଧାରାକୁ ପ୍ରତିନିଧିତ୍ୱ କରୁଥିବା ୧୫ ରଚନା ଓ ୧୨ ଟି ସ୍ୱୟଂସଂପୂର୍ଣ୍ଣ ଗଳ୍ପକୁ ନେଇ ପ୍ରଥମ ଖଣ୍ଡ ସମୃଦ୍ଧ ହୋଇଛି । ସୀମିତ ସମୟ ଓ ପରିମିତ କଳେବର ମଧ୍ୟରେ ସୁରେନ୍ଦ୍ରୀୟ ପ୍ରତିଭାଙ୍କୁ ଆକଳନ କରିବା କ୍ଷର୍ପ ଗର୍ଭରେ ହିମାଳୟ ସାନୁମାନଙ୍କୁ ସ୍ଥାପନା କରିବାର ଧୃଷ୍ଟତା । ତଥାପି ଆଲୋଚନାର ସୌକର୍ଯ୍ୟ ପାଇଁ ପ୍ରତ୍ୟେକ ବିଭାଗରୁ କିଛି କିଛି ରଚନା ଉପରେ କିଞ୍ଚିତ ଆଲୋକପାତ କରିବାର ପ୍ରୟାସ କରାଯାଇଛି ।

ଓଡ଼ିଆ ସାହିତ୍ୟର ଜଣେ ପଥିକୃତ ଶିଳ୍ପୀ ଭାବରେ ଶେଷସ୍ତମ୍ଭର ରଚନା ମାଧ୍ୟମରେ ଶ୍ରୀଯୁକ୍ତ ମହାନ୍ତି ଓଡ଼ିଆ ସାହିତ୍ୟର ଆଙ୍ଗିକ ଓ ଆତ୍ମିକ ଅବକ୍ଷୟ

ଶୀଳତାରେ ଉଦ୍‌ବେଗ ପ୍ରକାଶ କରିଛନ୍ତି। ଅନୁବାଦ ସାହିତ୍ୟର ଦୁର୍ବଳତା, ଉପନ୍ୟାସ ସାହିତ୍ୟରେ ସଙ୍କଟ ସାହିତ୍ୟରେ ଗୋଷ୍ଠୀବାଦ, ପୁରସ୍କାର ଓ ସମ୍ମାନ ସମ୍ବର୍ଦ୍ଧନା ପାଇଁ ବ୍ୟାକୁଳତା ସାହିତ୍ୟର ଆତ୍ମାକୁ ଅବଜ୍ଞା କରି ଆଙ୍ଗିକରେ ହଟଚମଟ ବା ଚମତ୍କାରିତା ପ୍ରଦର୍ଶନ, ବାସ୍ତବତାକୁ ଛାଡ଼ି କଳ୍ପଜଗତର ସାହିତ୍ୟ ସୃଷ୍ଟି କରିବା, ପ୍ରାଦେଶିକ ଓ ପାଶ୍ଚାତ୍ୟ ସାହିତ୍ୟର ଅନ୍ଧାନୁକରଣ, ସାହିତ୍ୟରେ ଅନୁଭୂତି ଓ ଉପଲବ୍ଧିର ଅଭାବ, କିଶୋର ସାହିତ୍ୟର ଅଭାବ ସାହିତ୍ୟ ସମୀକ୍ଷାର ସଙ୍କଟ ବିଶ୍ୱସାହିତ୍ୟରେ ଅନୁବାଦର ସ୍ୱଳ୍ପତା ଆଦି ଅନେକ ବିଭାବ ଉପରେ ଆଲୋଚନା କରିଛନ୍ତି। କେଉଁଠି ସାହିତ୍ୟିକଙ୍କର ନୈତିକ ଅଧଃପତନରେ କ୍ଷୋଭ ପ୍ରକାଶ କରିଛନ୍ତି ତ ପୁଣି କେଉଁଠି ସାହିତ୍ୟର ଆଙ୍ଗିକ ଓ ଆତ୍ମିକ ବିଭବ ଉପରେ ମୂଲ୍ୟବାନ ଟୀକା ଟିପ୍ପଣୀ ଦେଇଛନ୍ତି। ସାହିତ୍ୟରେ ଚେତନା ପ୍ରବାହ, ଉଭଟ ନାଟକ, ଇଲିଏଟୀୟ କବିତା, ଚେତନାର କେନ୍ଦ୍ରବିନ୍ଦୁ ଶୈଳୀ ଓ ବ୍ଲାକ୍ ହ୍ୟୁମର ଆଦି ପାଶ୍ଚାତ୍ୟ ସାହିତ୍ୟର ରଚନା କୌଶଳ ସମ୍ପର୍କରେ ତଥ୍ୟ ପ୍ରଦାନ କରିଛନ୍ତି। ଏହି ଶୈଳୀମାନଙ୍କର ପ୍ରବକ୍ତା ଟି.ଏସ୍.ଇଲିଅଟ, ହେନେରୀ ଜେମ୍‌ସ୍, ଗାବ୍ରିଏଲ୍ ଗାର୍ସିଆ, ସାମୁଏଲ୍ ବେକେଟ୍, ଟି.ଏସ୍. ଇଲିଅଟ, ଜେମ୍‌ସ ଜୟସ ସମ୍ପର୍କରେ ସଂକ୍ଷିପ୍ତ ବିବରଣୀ ମଧ୍ୟ ଦେଇଛନ୍ତି। ସାହିତ୍ୟିକମାନଙ୍କ ସମ୍ପର୍କରେ ତାଙ୍କର ଏକ ସର୍ବଗ୍ରାହ୍ୟ ମନ୍ତବ୍ୟ ହେଲା- "ମୋର ମନେ ହୁଏ ପ୍ରକୃତରେ ଜଣେ ଲେଖକ ତା'ର ସମସାମୟିକ କାଳରେ କେତେ ଲେଖକଙ୍କୁ ପ୍ରଭାବିତ କରିପାରିଛି ତାହା ହିଁ ତା'ର ସାହିତ୍ୟିକ ଉତ୍କର୍ଷତାର ନିୟାମକ ରୂପେ ବିବେଚିତ। କେବଳ ବ୍ୟକ୍ତିଗତ ଉତ୍କର୍ଷ ନୁହେଁ।" (ପୃ-୫୪, ଶେଷସ୍ତମ୍ଭ ପ୍ରଥମ ଖଣ୍ଡ)।

ସାମାଜିକ ପ୍ରସଙ୍ଗ କ୍ରମ ରଚନାଗୁଡ଼ିକରେ ନାରୀ ପୁରୁଷଙ୍କ ମଧ୍ୟରେ ତୀବ୍ର ପ୍ରତିଯୋଗିତା, ନାରୀର ଅଧିକାର, ମୂଲ୍ୟବୋଧରେ ଅବକ୍ଷୟ, ମଣିଷର ଚାରିତ୍ରିକ ଅଧଃପତନ, ପ୍ରାକୃତିକ ବିପର୍ଯ୍ୟୟ ଶୋଷିତଙ୍କ ଅସହାୟତା ଓ ଶୋଷକଙ୍କ ଲୋଲୁପତା, ଶବ୍ଦ ପ୍ରଦୂଷଣ, ନଗର ସଭ୍ୟତା ଓ ଗ୍ରାମ୍ୟ ସଭ୍ୟତା ମଧ୍ୟରେ ଅପହ ଦୂରତ୍ୱ ଭଳି ବିଭିନ୍ନ ସମସ୍ୟା ଅନୁଧ୍ୟାନ କରିଛନ୍ତି ଓ ତା'ର ସମାଧାନ ପାଇଁ ମଧ୍ୟ ନିରପେକ୍ଷ ମାର୍ଗ ଦର୍ଶନ କରିଛନ୍ତି। ସଂପ୍ରତି ନାରୀ ଓ ପୁରୁଷଙ୍କ ମଧ୍ୟରେ ଥିବା ସମ୍ପର୍କର ପରିବର୍ତ୍ତିତ ପ୍ରେକ୍ଷାପଟକୁ ଲକ୍ଷ୍ୟ କରି ସେ

କହନ୍ତି, "ନାରୀକୁ ଯେତେବେଳେ ପୁରୁଷ ପରି ସଂଗ୍ରାମ ଓ ପ୍ରତିଯୋଗିତାରେ ସବୁ କ୍ଷେତ୍ରରେ ଅବତୀର୍ଣ୍ଣ ହେବାକୁ ପଡୁଛି, ସେଥିରେ ନାରୀ ଯଦି ତା' ମୃଦୁତା, କୋମଳତା ଓ ବ୍ରୀଡାକୁ ଜାବୁଡ଼ି ଧରି ରଖେ ତା' ହେଲେ ସେ କେବଳ ଅନ୍ତଃପୁର ବାସିନୀ ହୋଇ ପଡ଼ିରହିବା ବ୍ୟତୀତ ତା'ର ଅନ୍ୟ ଭବିତବ୍ୟ ରହିବ ନାହିଁ। ଇୟେ ଯେପରି ସତ୍ୟ ତତ୍ତ୍ୱାଧିକ ସତ୍ୟ ହେଉଛି ନାରୀ ମଧ୍ଯ ଜନନୀ ଜାୟା ଓ ଭଗିନୀ। ସେ ଯଦି ପୁରୁଷ ପରି କଳହପରାୟଣ, ତାର୍କିକ ଓ ରକ୍ଷଭାଷୀ ହୁଏ, ତା'ହେଲେ ଏ ସମାଜ ଓ ଜୀବନ ଯେ ଛାୟାବିହୀନ ଏକ ରୌଦ୍ର ଦଗ୍ଧ ମରୁଭୂମିରେ ପରିଣତ ହେବ ଏଥିରେ ସନ୍ଦେହ ନାହିଁ। (ଶେଷସ୍ତମ୍ଭ ୧ମଣ୍ଡ)

ସୁରେନ୍ଦ୍ର ମହାନ୍ତି ଅତିମାତ୍ରାରେ ସଂସ୍କୃତି ସଚେତନ। ଚିନ୍ତା ଚେତନାରେ ଆଧୁନିକ ଓ ପ୍ରଗତିଶୀଳ ମନେ ହେଉଥିଲେ ବି ସଂସ୍କୃତି ସୁରକ୍ଷା ବେଳେ ସେ ଅତ୍ୟନ୍ତ ରକ୍ଷଣଶୀଳ ମନେ ହୁଅନ୍ତି। ଓଡ଼ିଶାର ପୂଜାପାର୍ବଣ ସାମାଜିକ ଉତ୍ସବ ଅନୁଷ୍ଠାନ ଦିନ ମାନଙ୍କରେ ଶେଷସ୍ତମ୍ଭରେ ପ୍ରକାଶ ହୋଇଥାଏ ତାଙ୍କର ସ୍ଥାୟିକ ମତାମତ। ପୂଜାପର୍ବର ସାର ଅସାର ସମ୍ପର୍କୀୟ ତର୍କ ଆଲୋଚନା ସହ ଆମ ସାଂସ୍କୃତିକ ବିପର୍ଯ୍ୟୟ ଓ ତା'ର ସୁରକ୍ଷା ପାଇଁ ମଧ୍ଯ ଆବଶ୍ୟକୀୟ ପରାମର୍ଶରେ ସ୍ତମ୍ଭ ମଣ୍ଡନ ହୋଇଥାଏ।

ସାହିତ୍ୟ, ରାଜନୀତି ଓ ସାମ୍ବାଦିକତାର ତ୍ରିବେଣୀ ଘାଟରେ ଅବଗାହନ କରିଥିଲେ ସୁରେନ୍ଦ୍ର ମହାନ୍ତି। ରାଜନୀତି ଥିଲା ତାଙ୍କର ନିଶା। ସାହିତ୍ୟ ଥିଲା ପ୍ରାଣ ଓ ସାମ୍ବାଦିକତା ଥିଲା ପେଶା। ନିଶାରୁ ବର୍ତ୍ତି ପେଶା ଓ ପ୍ରାଣକୁ ନେଇ ସେ ଉତ୍କଳୀୟ ଜନତାଙ୍କ ହୃଦୟରେ ଅସପତ୍ନ ଆସନ ଗ୍ରହଣ କରିପାରିଥିଲେ। ତାଙ୍କର ସାହିତ୍ୟକୃତି ଓ ସାମ୍ବାଦିକତା କ୍ଷେତ୍ରକୁ ରାଜନୀତିରେ ଉପଲବ୍ଧି କରିଥିବା ତିକ୍ତ ମଧୁର ଅନୁଭୂତିମାନ ସ୍ୱତଃ ଅନୁପ୍ରବେଶ କରିଥାନ୍ତି। ରାଜନୀତିରେ ଚଞ୍ଚକତା, ସିଷ୍ଟମର ବିକୃତି କର୍ମୀମାନଙ୍କର ଦୁରବସ୍ଥା, ଜନତାର ଦୁର୍ଭୋଗ, ନେତା ଓ ମନ୍ତ୍ରୀ ମାନଙ୍କର ପ୍ରତାରଣା, ଯୋଜନାରେ ବିଫଳତା ପରି ବାସ୍ତବ ଚିତ୍ର ତାଙ୍କ ରାଜନୈତିକ ରଚନା ମାନଙ୍କରେ ଉପଲବ୍ଧ ହୋଇଥାଏ। ସେମାନେ ଆଉ ଆମେ, ସିରାକୁଜ୍ ଆଉ ନବଦିଲ୍ଲୀ, ପ୍ଲାଟୋ ଓ ଗାନ୍ଧୀ, ଗୋଟିଏ ଶିଶୁ କନ୍ୟାର କାହାଣୀ ଏହି ରଚନା ପର୍ଯ୍ୟାୟଭୁକ୍ତ।

ସୁରେନ୍ଦ୍ର ମହାନ୍ତିଙ୍କ ଏକାନ୍ତ ବ୍ୟକ୍ତିଗତ ଅନୁଭବକୁ ନେଇ ପ୍ରଥମ ଖଣ୍ଡରେ ୧୫ଟି ରଚନା ରହିଛି। ଏହି ରଚନା ଗୁଡ଼ିକର ଆବେଦନ ପ୍ରାୟତଃ ୨ୟ ଖଣ୍ଡର ରଚନା ପରି ପ୍ରଣୋଚ୍ଛଳ। ଜୀବନ ରସରେ ଭରପୂର, ନିଜ ପରିବାରସଦସ୍ୟ, ଆଖପାଖର ମଣିଷ, ପଶୁପକ୍ଷୀ, ବୃକ୍ଷଲତା, ଶୈଶବର ଖେଳସାଥୀ, ସହପାଠୀ ବନ୍ୟା ବିପ୍ଲାତ ଅଞ୍ଚଳର ଅନ୍ତର୍ଭେଦୀ ଅନୁଭବର ଆବେଗିକ ଉପସ୍ଥାପନା। କାଉକୋଇଲି, ଯତ୍ର ଯୋଗେଶ୍ୱର କୃଷ୍ଣ, ଖଳନାୟକ, ଅପର୍ଣ୍ଣାର ତପସ୍ୟା, ମସ୍ତାନା ନଗର, ଟେକ୍ନିକାଲ ନୋ ହାଓ, କୋଇଲି, କଜଳପାତି, ଶୁକଳପକ୍ଷୀ ଓ ସଞ୍ଚାଣ ସମ୍ବାଦ, କଳାମାଣିକ ବାଇଗଣ ଆଉ ଦଳେଇ ଘାଇ ପଇଡ଼, ଋତୁସଂହାର, ପାଳଭୂତ, ସନ୍ଧ୍ୟାଦୀପ ଆଦି ଏହି ପର୍ଯ୍ୟାୟ ରଚନା। ନିତ୍ୟ ନୈମିତ୍ତିକ ଜୀବନରେ ଘଟୁଥିବା କୌଣସି ଘଟଣା ଓ ଭେଟୁଥିବା କୌଣସି ମଣିଷ ତାଙ୍କ ପାଇଁ ଅପାଂକ୍ତେୟ ନୁହଁନ୍ତି। ଏଗୁଡ଼ିକୁ ତାଙ୍କର ଗଭୀର ଅନ୍ତଦୃଷ୍ଟି ଦ୍ୱାରା ଆବେଗର ପ୍ରଲେପ ଦେଇ ସାରସ୍ୱତ ଜଗତରେ କାଳଜୟୀ କରି ଦେଇଛନ୍ତି।

ଦକ୍ଷ ଚିତ୍ରଶିଳ୍ପୀ ଅନ୍ୟ ମନସ୍କ ହୋଇ ବି କାନ୍‌ଭାସ୍ ଉପରେ ତୁଳିକା ସ୍ପର୍ଶ କରିଦେଲେ ତାହା ସାର୍ଥକ ଛବି ହୋଇଯିବା ପରି ଗଳ୍ପସାହିତ୍ୟରେ ଅନନ୍ୟ ଦକ୍ଷତା ହାସଲ କରିଥିବା ସୁରେନ୍ଦ୍ର ମହାନ୍ତି କାଗଜ ଉପରେ ଅବଲୀଳା କ୍ରମେ ଶବ୍ଦମାନ ଥୋଇ ଦେଲେ ତାହା ହୃଦୟସ୍ପର୍ଶୀ କ୍ଷୁଦ୍ରଗଳ୍ପର ଭ୍ରମ ହୋଇଯାଏ। ଏହି କ୍ରମରେ ଶେଷ ସ୍ତମ୍ଭର ପ୍ରଥମ ଖଣ୍ଡରେ ୧୦/୧୨ଟି ସ୍ୱୟଂ ସଂପୂର୍ଣ୍ଣ ଗଳ୍ପ ରହିଥିବା ବେଳକୁ ୨ୟ ଖଣ୍ଡରେ ମଧ୍ୟ ୫/୬ ଟି ଗଳ୍ପ ରହିଛି। ହୋରି, ମୁଁ ଓ ମିଷ୍ଟର କୁରିଅନ୍, କୁମ୍ଭବାହୁଡ଼ା, ସ୍ୱପ୍ନ ଯେଉଁ ଦିନ ସତ୍ୟ ହୁଏ,ଷଣ୍ଢକୁଦରେ ମଇଁଷିଆଳ, ରଙ୍ଗ ନମ୍ବର, ଜଗନ୍ନାଥ ଦେଶର ଲୋକେ, ଘାସଲନ୍ ଗୁଣ୍ଡିଚି ମୂଷା ଓ କ୍ୟାପଟେନ୍ ଡେଭିଡ୍, ଚେହେରା ଭଦ୍ର ଓ ଅଭଦ୍ର, ହରିଣୀର ଆଖି ଅଞ୍ଜନ ଗଡ଼ର ଉପକଥା, ବେଲଖଣ୍ଡିରେ ରାତି ଏବଂ ୨ୟ ଖଣ୍ଡ ଶେଷସ୍ତମ୍ଭରେ ରଙ୍ଗୀନ ଫଟୋଗ୍ରାଫ୍, ମୂଲ୍ୟ ଓ ମୂଲ୍ୟବୋଧ, ଜୁଆଡ଼ୀ ମାଷ୍ଟର ଗୁଡ୍ଡୁ, ଗୋଧୂଳି, ପ୍ରତୀକ୍ଷା, ମାନପତ୍ର, ରଙ୍ଗିନ ଫଟୋଗ୍ରାଫ୍, ନୀଳ ଅପାର ସଂସାର ପ୍ରଭୃତି ରଚନା ନିରୋଳ ଗଳ୍ପ ପର୍ଯ୍ୟାୟ। ଗଳ୍ପ କଳାର ସକଳ ସଂଜ୍ଞା ଓ ସ୍ୱରୂପ ଏଥିରେ ନିହିତ।

୨ୟ ଖଣ୍ଡ ଶେଷସ୍ତମ୍ଭ ମୋଟ ୯୧ଟି ରଚନାର ଚିତ୍ତାକର୍ଷକ ସମାହାର। ଏଥିରେ ବ୍ୟକ୍ତିଗତ ଅନୁଭବ ଓ ଉପଲବ୍ଧିପ୍ରତି ସ୍ରାମ୍ଭିକ ଏତେ ମାତ୍ରାରେ ସମ୍ବେଦନଶୀଳ ଓ ଆବେଗ ପ୍ରବଣ ଯେ ପ୍ରଥମ ଖଣ୍ଡ ପରି ଏ ସଂକଳନର କେତୋଟି ରଚନାକୁ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ପର୍ଯ୍ୟାୟଭୁକ୍ତ କରାଯାଇପାରିବ ନାହିଁ।

ପ୍ରଥମ ଖଣ୍ଡଟି ବୌଦ୍ଧିକ ଚେତନା ପ୍ରସୂତ ହୋଇଥିବାବେଳେ ୨ୟ ଖଣ୍ଡଟି ଆବେଗରେ ଛଳଛଳ ସ୍ରାମ୍ଭିକଙ୍କ ହୃଦୟର ସ୍ୱତଃସ୍ଫୂର୍ତ୍ତ ଅଭିବ୍ୟକ୍ତି। ୧ମ ଖଣ୍ଡ ସୁରେନ୍ଦ୍ରଙ୍କ ପାଣ୍ଡିତ୍ୟ, ବହୁଶାସ୍ତ୍ର ଦର୍ଶିତା, ଅସୀମ ଜ୍ଞାନ, ଚିନ୍ତନ, ଦର୍ଶନ ଓ ମନନର ଶିଳ୍ପ ସଙ୍ଗତ ଉପସ୍ଥାପନ। କିନ୍ତୁ ଦ୍ୱିତୀୟ ଖଣ୍ଡଟିର ରଚନା ଯେମିତି ମା' ନିଷାଦ ପ୍ରତିଷ୍ଠା ତ୍ୱମଗମଃ ପରି ସ୍ୱତଃସ୍ଫୂର୍ତ୍ତ ଭାବରେ ପାହାଡ଼ି ଝରଣା ପରି ଡେଇଁ ନାଚିକୁଦି କଳକଳ ନାଦରେ ବହିଯାଇଛି ଆଗକୁ। ଜୀବନବାଦୀ ସ୍ରଷ୍ଟା ଜୀବନର ପ୍ରତିଟି ଅନୁଭବକୁ ଅମୂଲ ମୂଲ ଦେଇ ଶବ୍ଦଶିଳ୍ପର କୋଣାର୍କ ଗଢ଼ି ଦେଇଛନ୍ତି। ଶୈଶବରୁ ବୟସର ଅପରାହ୍ନ ପର୍ଯ୍ୟନ୍ତ ଅନେକ ସ୍ପର୍ଶକାତର ପ୍ରସଙ୍ଗକୁ ସେ ବାନ୍ଧି ରଖିଛନ୍ତି ଶବ୍ଦର ଐନ୍ଦ୍ରଜାଲିକ ସ୍ପର୍ଶରେ। ପ୍ରଥମ ଖଣ୍ଡରେ ପୁରୁଣା ପୋଥିର ମହକ ଥିବାବେଳେ ୨ୟ ଖଣ୍ଡରେ କେବଳ ମଧୁମାଳତୀର ବାସ୍ନା ହିଁ ବାସ୍ନା। ସେଠି ଜୀବନ ବିଦ୍ୟାଳୟର ଗହନ ତତ୍ତ୍ୱର ବ୍ୟାଖ୍ୟା ନାହିଁ। ଉପଦେଶ ପ୍ରବଚନ ଦେଇ କାହାକୁ ସୁଧାରିବାର ଉଦ୍ଦେଶ୍ୟ ନାହିଁ। ରାଜନୈତିକ ମତାଦର୍ଶ ଓ ତର୍କବିତର୍କରେ ୨ୟ ଖଣ୍ଡର କଳେବର ଭାରାକ୍ରାନ୍ତ ହୋଇ ନାହିଁ। ବରଂ ବଇଁକୋଳି ସାହୁ ଦଣ୍ଡା, ଓଡ଼ିଆ ବଜାରର ବରା ମାଉସୀ, ଖରାଖିଆ ଭୋବନା କନିଆ ଦେଖା, ଲଙ୍କାମରିଚ ଗଛ, ବଡ଼ ଭାତ ସାନ ଭାତ, ନଟବାବୁଙ୍କ ଭାଗବତ ଟୁଙ୍ଗୀ ମାନଙ୍କ ପରି ରଚନାରେ ଅତିସାଧାରଣ ମଣିଷ ତାଙ୍କ ଲେଖନୀ ସ୍ପର୍ଶରେ ମହତ୍ତର ହୋଇପାରିଛନ୍ତି। ପ୍ରକୃତି ହୋଇଛି ୨ୟ ଖଣ୍ଡରେ ଅନ୍ୟତମ ଚରିତ୍ର। ଯିଏ ତାଙ୍କର ନିଃସଙ୍ଗ ମୁହୂର୍ତ୍ତର ନିଃସ୍ୱାର୍ଥପର ସାଥୀ ହୋଇଛି। ସ୍ରାମ୍ଭକ ତା' ପାଖରେ ନିଜର ଦୁଃଖସୁଖ ବାଣ୍ଟିଛନ୍ତି। ନିର୍ଜନ ନିକା□ନରେ କୃଷ୍ଣଚୂଡ଼ାର ରଙ୍ଗରେ ଭିଜିଛନ୍ତି। ପାଗଳା ଚୈତାଳିରେ ଚୈତନ୍ୟ ହରାନ୍ତି ତ ପ୍ରଥମ ବର୍ଷାରେ ଭିଜାମାଟିର ମହକରେ ବିହ୍ୱଳ ହୋଇଛନ୍ତି।

ପ୍ରଥମ ଖଣ୍ଡରେ 'ଆତ୍ମାର ବାର୍ତ୍ତାବହ' 'ଉପନ୍ୟାସ ସଙ୍କଟ', ବୋଗାଟାରୁ

ପ୍ୟାରିସ୍, ସାହିତ୍ୟ ପାଇଁ ପୁରସ୍କାର, ନୋବେଲ ପୁରସ୍କାର ଓ ତୃତୀୟ ବିଶ୍ୱ, ସେର୍‌ଲକ୍ ହୋମ୍‌ସ ଶତବାର୍ଷିକୀ ଆଦି ରଚନାରେ ସାହିତ୍ୟ ତତ୍ତ୍ୱର ବୌଦ୍ଧିକ ଆଲୋଚନା କରିଛନ୍ତି। ପ୍ରଥମ ଖଣ୍ଡର ରଚନା ଗୁଡ଼ିକର ସୃଷ୍ଟି ହୋଇଥିଲା ସାହିତ୍ୟ ମନସ୍କ ହୋଇ। ସାହିତ୍ୟର ସଂଜ୍ଞା ସଙ୍କଟ, ବ୍ୟାପ୍ତି ଦ୍ୟୁତି ରୀତିନୀତି ଶୈଳୀ ଆଦି ସମ୍ପର୍କରେ ଯେପରି ବିସ୍ତୃତ ଓ ଜ୍ଞାନଗର୍ଭକ ଆଲୋଚନା ଥିଲା ୨ୟ ଖଣ୍ଡରେ ନାହିଁ। କେବଳ 'ଅଭିନୟ ଓ ଫାଙ୍କି' ଓ 'ସାହିତ୍ୟର ସଂଜ୍ଞା' ଶୀର୍ଷକ ଦୁଇଟି ରଚନାରେ ସାହିତ୍ୟ ସମ୍ପର୍କରେ ତାଙ୍କର ରସାଳ ଲଘୁ ମନ୍ତବ୍ୟ ଅତ୍ୟନ୍ତ ହୃଦୟଗ୍ରାହୀ ହୋଇଛି। ସାମ୍ପ୍ରତିକ ଯୁଗରେ ସାହିତ୍ୟିକ ମାନଙ୍କର ଆଚରଣ ଓ ଉଚ୍ଚାରଣରେ ବିରୋଧାଭାସକୁ ପୋକଜୋକ ଖାଇ ସୁନ୍ଦର କଣ୍ଠ ପାଇଥିବା କୋକିଳର କୁହୁଧ୍ୱନି ଏବଂ କେବଳ ମଧୁପାନ କରି ବଞ୍ଚୁଥିବା ବାଘୁଆ ମହୁମାଛିର ଝଙ୍କାର ଓ ତୀବ୍ର ଯନ୍ତ୍ରଣା ବହନ କରୁଥିବା ଦଂଶନ ସହ ତୁଳନା କରିଛନ୍ତି। ଭଲ ସାହିତ୍ୟର ସଂଜ୍ଞା ସମ୍ପର୍କରେ କହନ୍ତି– 'ଗୋଟିଏ ଫୁଲ କାହିଁକି ଭଲ ଲାଗେ, ତାହାର ଉତ୍ତର ଫୁଲ ଦେଇପାରିବ ନାହିଁ। କିମ୍ବା ଫୁଲ ଶୁଙ୍ଘିଂବାର ଲୋକ ଦେଇପାରିବ ନାହିଁ। ଫୁଲଟା ଭଲଲାଗେ, ତାହା ହିଁ ଫୁଲର ପରିଚୟ।'

'ପାର୍ବତୀ ମା'ଗୁଣ୍ଡି' ଓ 'ଭିଜାମାଟି' ରଚନାରେ ସାଂପ୍ରତିକ ଯୁଗର ସଂକଟ ବିସ୍ଥାପନ ସମସ୍ୟାର ଚିତ୍ର ରହିଛି।

ପ୍ରଥମ ଖଣ୍ଡର ରାଜନୀତି ସମ୍ପର୍କର ଯେଉଁ ବିସ୍ତୃତ ମତ ମନ୍ତବ୍ୟ ସ୍ତମ୍ଭିକ ରଖୁଥିଲେ ୨ୟ ଖଣ୍ଡରେ ନାହିଁ। ରାଜନୀତିକୁ ରେପ୍ ଅଫ ଦି ମାସ ମାଇଣ୍ଡ ବା ଗଣମାନସର ଧର୍ଷଣ ବୋଲି ଚର୍ଚ୍ଚିଲଙ୍କ ମନ୍ତବ୍ୟ ଅନୁକ୍ରମରେ ତାଙ୍କ ନିଜସ୍ୱ ମନ୍ତବ୍ୟ ଦେଇ କହନ୍ତି– "ଗଣ ମାନସ ପାଖରେ ନିଜର ପାରିବା ପଣ ପ୍ରଦର୍ଶନ କରିବା ପାଇଁ ନେତାମାନେ ଯେଉଁ ଚମତ୍କାରିତା ପ୍ରଦର୍ଶନ କରନ୍ତି ତା'ର ଅପର ନାମ ଗଣ ମାନସର ଧର୍ଷଣ। ଏଥିରେ ନୀତି ନାହିଁ। କାର୍ଯ୍ୟକ୍ରମ ଓ ନୂତନ ରାଜନୈତିକ ଆଦର୍ଶର କୌଣସି ଇଙ୍ଗିତ ନାହିଁ। ଅଛି 'ଡେମାଗବୀ' ବା ପ୍ରଗଲ୍‌ଭତା ବା ସର୍କସ।"

ପ୍ରଥମରୁ କୁହାଯାଇଛି, ଦ୍ୱିତୀୟ ଖଣ୍ଡ ଶେଷସ୍ତମ୍ଭ ମାନବୀୟ ଆବେଦନର ମହନୀୟତାରେ ପୁଷ୍କଳ। ଜ୍ଞାନଗର୍ଭକ ତତ୍ତ୍ୱ ବିଚାର, ପାଣ୍ଡିତ୍ୟ ପ୍ରଦର୍ଶନ କିମ୍ବା

ଅଛିଣ୍ଡା ତର୍କବିତର୍କରେ ଏହାର କଳେବର ଭାରାକ୍ରାନ୍ତ ନୁହେଁ। ସଂକଳନଟିର ଆମୂଳଚୂଳ ମାନବୀୟ ଚରିତ୍ରର ବିପର୍ଯ୍ୟୟ, ସାମାଜିକ ଅବକ୍ଷୟଶୀଳତା, ମୂଲ୍ୟବୋଧର ସଂକଟ, ସମ୍ପର୍କରେ ସ୍ୱାର୍ଥର ଗନ୍ଧ, ପ୍ରାଚୁର୍ଯ୍ୟ ଜନିତ ବିକୃତି, ଦାରିଦ୍ର୍ୟ ନିପୀଡ଼ିତ ଅସହାୟତା, ନିଃସଙ୍ଗତା ଆଦି ଯାବତୀୟ ମାନବିକ ସଂକଟରେ ସ୍ତମ୍ଭିକ ଯେମିତି ବିଚଳିତ ହୋଇଛନ୍ତି, ସବୁ ବ୍ୟତିକ୍ରମ ସତ୍ତ୍ୱେ ମାନବ ହୃଦୟର ନିଭୃତ କୋଣରେ ସଂଗୋପିତ ମାନବୀୟ ଆବେଦନଟିକୁ ସେମିତି ଖୋଜି ଲୋଡ଼ି ବାହାରକୁ ଆଣିଛନ୍ତି। ତା'ର ଜୟଗାନ କରିଛନ୍ତି। ତାଙ୍କ ବିଚାରରେ ମଣିଷ ହେଉଛି ପ୍ରଥମ ଓ ଶେଷ। ମଣିଷର ବନ୍ଦନା ସବୁଠାରୁ ଶ୍ରେଷ୍ଠ ବନ୍ଦନା। ୨ୟ ଖଣ୍ଡ ଶେଷସ୍ତମ୍ଭର ପ୍ରଥମ ରଚନା ନୂତନ ଈଶ୍ୱରରେ ସେ କହନ୍ତି- ସେଥିପାଇଁ ମୁଁ ଭାବୁଛି, ଭୁଲିଯାଅ ମନୁଷ୍ୟ ସୃଷ୍ଟ ଈଶ୍ୱରଙ୍କୁ ଓ ତାଙ୍କୁ କେନ୍ଦ୍ରକରି ଗଢ଼ି ଉଠିଥିବା ସଂପ୍ରଦାୟମାନ। ମନୁଷ୍ୟ ସୃଷ୍ଟ ଈଶ୍ୱରଙ୍କ ସ୍ଥାନରେ ଆବାହନ କର ଈଶ୍ୱର ସୃଷ୍ଟ ମନୁଷ୍ୟକୁ। ମଣିଷର ହୃଦୟ ହେଉ ମନ୍ଦିର, ମସ୍‌ଜିଦ୍ ଅଥବା ଗୀର୍ଜା। (ପୃ୨, ଶେଷସ୍ତମ୍ଭ ୨ୟ ଖଣ୍ଡ)

ପ୍ରାଗୈତିହାସିକ ଯୁଗରୁ ମଣିଷକୁ କ୍ରମଶଃ ଉତ୍ତରିତ ଚେତନାର ଅଧିକାରୀ କରି ଆସୁଥିବା ମାନବ ସଂସ୍କୃତି ଏବେ ଦୁଃସହ ସଙ୍କଟର ଶିକାର ହୋଇଛି। ଏ ସାଂସ୍କୃତିକ ସଂକଟରୁ ଉଦ୍ଧାର ପାଇବାକୁ ଯେପରି କାହାରି ଉତ୍ସାହ ନାହିଁ ଉଦ୍‌ବେଗ ନାହିଁ। ମାଘ ସପ୍ତମୀରେ ଶୁଚିବନ୍ତ ହୋଇ ତାଳପତ୍ର ପୋଥିରୁ ସାରଳା ମହାଭାରତ ଆବୃତ୍ତି କରୁଥିବା ବୃଦ୍ଧଙ୍କ କଣ୍ଠରେ ଯେଉଁ ଭାବ ପ୍ରାଚୁର୍ଯ୍ୟ ଓ ପ୍ରାଣସ୍ପନ୍ଦନ ସ୍ତମ୍ଭିକ ଅନୁଭବ କରିଥିଲେ ପରପର୍ଯ୍ୟାୟରେ ଆଧୁନିକ ବେଶ ପୋଷାକରେ ସଜ୍ଜିତ ଛାପା ବହିର ପୃଷ୍ଠାରୁ ଗୁଣୁଗୁଣୁ ହୋଇ ଗାନ କରୁଥିବା ଯୁବକଟିର କଣ୍ଠରେ ନ ଥିଲା। ଜଗନ୍ନାଥଙ୍କ ବଡ଼ସିଂହାର ବେଶ ବେଳେ କେଇ ଖଣ୍ଡ ଫୁଲ କାଠି ଯୋଗାଇ ଦେବାର ପାରମ୍ପରିକ ସେବା ପାଇଁ ଜୀବନ ଉତ୍ସର୍ଗ କରିଥିବା ସେବାୟତ ବୃଦ୍ଧଙ୍କ ଭାକ୍ତିକ ବିହ୍ୱଳତା ତାଙ୍କ ଉତ୍ତରାଧିକାରୀଙ୍କୁ ଆଦୌ ପ୍ରଭାବିତ କରି ନଥିଲା। ଭିଟାମାଟି ଛାଡ଼ି ସେମାନେ ପ୍ରାଚୁର୍ଯ୍ୟ ସନ୍ଧାନରେ ଥିଲେ। ଗଣକବି ବୈଷ୍ଣବ ପାଣିଙ୍କ ବାଇଗଣ ଡିହ ଉପରେ ଅଧିକାର ସାବ୍ୟସ୍ତ କରିବା ପାଇଁ ତାଙ୍କ ଉତ୍ତରାଧିକାରୀଙ୍କ ମଧ୍ୟରେ ଯେଉଁ ତୀବ୍ର ପ୍ରତିଯୋଗିତା ତାହା ତାଙ୍କ ଅମୂଲ୍ୟ ସୃଷ୍ଟି ସମ୍ପଦ ପୁସ୍ତକମାନଙ୍କ ପାଇଁ ନଥିଲା।

ଏସବୁ ଅବକ୍ଷୟଶୀଳତା ମଧ୍ୟରେ ତଥାପି ସଂସ୍କୃତି ବଞ୍ଚି ରହେ। ସ୍ତମ୍ଭକାରଙ୍କ ମତରେ ସଂସ୍କୃତି କେବେ ମରେ ନାହିଁ। ସେ ଏକ ଚିର ପ୍ରବାହିନୀ ସ୍ରୋତସ୍ୱତୀ। ସେଇଥିପାଇଁ ବନ୍ୟା ଆଉ ବାତ୍ୟା ପ୍ରଭାବରେ ଶାରଦ ଧାନ କେଣ୍ଡାଟିଏ ମିଳିବାର ସମ୍ଭାବନା ନ ଥିବା ସତ୍ତ୍ୱେ "ମାର୍ଗଶୀର ଆହ୍ୱାନ"ରେ ଆଙ୍ଗୁଳି ଓ ପିଠଉ ସଂଯୋଗରେ ଘରେ ବାହାରେ ଝୋଟି ଚିତାର ଫୁଟନ୍ତା ପଦ୍ମଫୁଲ ଆଉ ଯୋଡ଼ିଯୋଡ଼ି ଲକ୍ଷ୍ମୀପାଦର ଚିତା ମଣ୍ଡନ ହୋଇଥାଏ। କ୍ଷେତରେ ଫସଲ ଉଜୁଡ଼ି ଯାଇ ପାରିଥାଏ କିନ୍ତୁ ମଣିଷ ମନରେ ତ ନୁହେଁ। ଏଇ ମନର ପ୍ରାଚୁର୍ଯ୍ୟ ତାଙ୍କୁ ବଞ୍ଚେଇ ରଖିଛି। ପ୍ରକୃତିର ଶତପୀଡ଼ନ ଓ ଦୁର୍ବିପାକ ମଧ୍ୟରେ। (ପୃ ୧୪୫, ୨ୟ ଖଣ୍ଡ ଶେଷ ସ୍ତମ୍ଭ)

୨ୟ ଖଣ୍ଡ ଶେଷସ୍ତମ୍ଭରେ ଯେଉଁ ରଚନା ଗୁଡ଼ିକ ପାଠକକୁ ମୁହୂର୍ତ୍ତକ ପାଇଁ ସ୍ତବ୍ଧ କରିଦିଏ, ଅତୀନ୍ଦ୍ରିୟ ଜଗତକୁ ଘେନିଯାଏ, ଭାବପ୍ରବଣତାର ସୁଅରେ ହଜେଇ ଦିଏ, ସ୍ୱପ୍ନ ବିଭୋର କରିଦିଏ, ସାରସ୍ୱତ ପ୍ରଶାନ୍ତିରେ ସିକ୍ତ କରିଦିଏ ତାହା ତାଙ୍କର ବ୍ୟକ୍ତିଗତ ଅନୁଭୂତି ସମ୍ବଳିତ ରଚନା। ଏ ପ୍ରସଙ୍ଗରେ ୨ୟ ଖଣ୍ଡ ସଂକଳନ ସ୍ଥିତ ତାଙ୍କ ପରିବାରର ଏକ ନିଛକ ଘଟଣା "କୃଷ୍ଣଚୂଡ଼ାର ଟ୍ରାଜେଡ଼ି" ଶୀର୍ଷକ ରଚନା ସମ୍ପର୍କରେ ଦୁଇପଦ କହିବାର ଲୋଭ ସମ୍ବରଣ କରିପାରୁ ନାହିଁ। ଶୈଶବରୁ କୃଷ୍ଣଚୂଡ଼ାର ରକ୍ତିମାରେ ଭାବ ବିହ୍ୱଳ ହେଉଥିବା ସୁରେନ୍ଦ୍ର ମହାନ୍ତିଙ୍କ ପରିବାର ଅଗଣାରେ କୃଷ୍ଣଚୂଡ଼ାର ବୃକ୍ଷଟିଏ ରୋପଣ କରନ୍ତି। କିନ୍ତୁ ପରବର୍ତ୍ତୀ କାଳରେ ଆବିଷ୍କାର କରାଯାଏ କୃଷ୍ଣଚୂଡ଼ା ଗଛରେ ଲାଲ ବଦଳରେ ହଳଦୀ ରଙ୍ଗର ଫୁଲ କଢ଼ର ହୋରି। ପୁଣିଥରେ ଲାଲ କୃଷ୍ଣଚୂଡ଼ା ରୋପଣ କରାଗଲା। କିନ୍ତୁ ଦୁର୍ଭାଗ୍ୟ, ଯେଉଁଦିନ ବୃକ୍ଷରେ ଟୋକେଇ ଟୋକେଇ କୃଷ୍ଣଚୂଡ଼ା ଭରି ହେଇଯିବାର ସମ୍ବାଦ ସହ କୃଷ୍ଣଚୂଡ଼ା ସ୍ତବକଟିଏ ସ୍ତମ୍ଭକାରଙ୍କୁ ଭୃତ୍ୟ ଅର୍ପଣ କରିଛି, ସେଥିରେ ବିଭୋର ହେବା ତ ପରକଥା ଦୃଷ୍ଟି ଶକ୍ତି କ୍ଷୀଣ ହେଇଯିବା ହେତୁ ସେ ତାହାକୁ ଚିହ୍ନି ସୁଦ୍ଧା ପାରି ନାହାନ୍ତି। ରଚନାଟିକୁ ସେ କୃଷ୍ଣଚୂଡ଼ାର ଟ୍ରାଜେଡ଼ି ବୋଲି ନାମ କରଣ କଲେ ସୁଦ୍ଧା ଏହି ଟ୍ରାଜେଡ଼ି ଭିତରେ ରହିଛି ଜୀବନର ସଂଜ୍ଞା। ସୃଷ୍ଟିକୁ ଅବିଚ୍ଛିନ୍ନ ରଖିବାର ପ୍ରେରଣା। ଶତ ବିଫଳତା ସତ୍ତ୍ୱେ ଭବିଷ୍ୟତ ପୀଢ଼ି ପାଇଁ ଆଗାମୀ ଭବିଷ୍ୟତ ପାଇଁ ସଫଳତାର ଗୁପ୍ତ ସନ୍ଦେଶ। ଆଶାର ଅସୁମାରି ସମ୍ଭାବନା।

ସୀମିତ ସମୟ ମଧ୍ୟରେ ଶେଷସ୍ତମ୍ଭ ସମ୍ପର୍କରେ ଶେଷକଥା କହି ହେବ ନାହିଁ। ଏସବୁ କେବଳ ଆରମ୍ଭ ମାତ୍ର। ଯତ୍ କିଞ୍ଚିତ୍ ଆଲୋଚନା। ଶେଷସ୍ତମ୍ଭକୁ ଆକଳନ କଲେ ଗୋଟାଏ ସ୍ୱୟଂ ସଂପୂର୍ଣ୍ଣ ଗ୍ରନ୍ଥ ହେବ।

ମୁଁ କାହିଁକି ଲେଖେ ସମ୍ପର୍କରେ ସୁରେନ୍ଦ୍ର ମହାନ୍ତି କହନ୍ତି- "ମୁଁ ଅଙ୍କ କଷିଲା ପରି ଲେଖେ। ଏକ ଦୁର୍ବିସହ ବେଦନାରେ ଲେଖେ। ଲେଖକର ସଂଜ୍ଞା ମୋ ପାଖରେ ସ୍ୱତନ୍ତ୍ର। ପାଦଥିଲେ ଚାଲି ହୁଏ। ହାତ ଥିଲେ ସବୁବେଳେ ଲେଖି ହୁଏ ନାହିଁ।"

ମାପିଚୁପି ଲେଖୁଥିବା ସୁରେନ୍ଦ୍ରଙ୍କର ଅନ୍ୟାନ୍ୟ ସୃଷ୍ଟି ପରି ଶେଷସ୍ତମ୍ଭର ଆଙ୍ଗିକ କଳା କୌଶଳ ବେଶ ସଂଯତ, ସତର୍କ, ଶାଣିତ ଓ ସମ୍ଭ୍ରାନ୍ତ। ବକ୍ତବ୍ୟର ସାବଲୀଳତା, ଲୁପ୍ତ ପ୍ରାୟ ଶବ୍ଦଗୁଡ଼ିକର ପୁନରୁଦ୍ଧାର ମଣିକା□ନର ସଂଯୋଗ ପରି ଶିଷ୍ଟ ଶବ୍ଦ ସହ ଗ୍ରାମ୍ୟ ଶବ୍ଦର କଳାତ୍ମକ ପ୍ରୟୋଗ ଶେଷସ୍ତମ୍ଭକୁ ଏକ ଉତ୍ତୀର୍ଣ୍ଣ କୀର୍ତ୍ତିର ମାନ୍ୟତା ପ୍ରଦାନ କରିଛି।

ଗ୍ରନ୍ଥ ୨ଖଣ୍ଡ ଆମ ସାରସ୍ୱତ ଭଣ୍ଡାରକୁ ମହତ୍ତର ମହିମାରେ ମଣ୍ଡନ କରିଛି- ଦ୍ୱିମତର ଅବକାଶ ନାହିଁ।




ସହାୟକ ଗ୍ରନ୍ଥସୂଚୀ -

ଶେଷସ୍ତମ୍ଭ-୧ମ ଖଣ୍ଡ : ମହାନ୍ତି ସୁରେନ୍ଦ୍ର- ଇଷ୍ଟର୍ଣ୍ଣ ମିଡ଼ିଆ, ଭୁବନେଶ୍ୱର

ଶେଷସ୍ତମ୍ଭ-୨ଖଣ୍ଡ : ମହାନ୍ତି ସୁରେନ୍ଦ୍ର - ବିଦ୍ୟା ପ୍ରକାଶନ, କଟକ

ପଥ ଓ ପୃଥିବୀ: ମହାନ୍ତି ସୁରେନ୍ଦ୍ର- ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ

ସୁରେନ୍ଦ୍ର ସାହିତ୍ୟ ସମୀକ୍ଷଣ-ସଂକଳକ: ପ୍ରକାଶ ପରିଡ଼ା ଓ ଗୀରିଶ ସାହୁ

ସୁରେନ୍ଦ୍ର ସମୀକ୍ଷା: ସଂକଳକ-ଡକ୍ଟର ବାଉରୀବନ୍ଧୁ କର-କଟକ ଷ୍ଟୁଡେଣ୍ଟ୍ ବୁକ୍ ଷ୍ଟୋର

# ସଂସ୍କୃତିର ସୁରକ୍ଷା କବଚ - ନାରୀ

ନାରୀ ଶୂନ୍ୟ ଅଙ୍କଟିଏ ପରି, ଶୂନ୍ୟ ଅଙ୍କଟିଏ କୌଣସି ପୂର୍ଣ୍ଣ ସଂଖ୍ୟାର ବାମ ପଟରେ ରହିଲେ ସେ ସଂଖ୍ୟାଟିର ମାନ ଦଶଗୁଣ କମ୍ କରିଦେଇଥାଏ। ମାତ୍ର ଦକ୍ଷିଣ ପଟରେ ରହିଲେ ସେ ସଂଖ୍ୟାଟିର ସ୍ଥାନୀୟ ମାନ କ୍ରମାଗତ ଦଶଗୁଣ ଲେଖାଏଁ ବୃଦ୍ଧି କରି ଚାଲିଥାଏ। କିନ୍ତୁ ବିଡମ୍ବନା ଏହି ଯେ, ଆମ ଭାରତୀୟ ଜନମାନସରେ ନାରୀକୁ ସର୍ବଦା ବାମା କରି ରଖାଯାଇଥାଏ। ସେ ପୁରୁଷର ବାମପଟେ ବସିବା ଶାସ୍ତ୍ରୋଚିତ ବୋଲି ଯୁକ୍ତି କରାଯାଏ। ସେ ବାମା, ବାମାଙ୍ଗୀ। ପୁରୁଷର ଅନୁଗାମିନୀ ହେବାପାଇଁ ତାକୁ ଶାସ୍ତ୍ର ନିର୍ଦ୍ଦେଶ ରହିଛି। ଅଗ୍ରଗାମିନୀତ ଆଦୌ ନୁହେଁ ସହଗାମିନୀ ହେବାର ମନୋବାଞ୍ଛା ପୋଷଣ କଲେ ନାନା ଉପାୟରେ ତାକୁ ଅବଦମିତ କରାଯାଇଥାଏ। କାରଣ ନାରୀଟିଏ ସହଗାମିନୀ ହେଲେ ପୁରୁଷର ସମର୍ଥପଣ ନିଷ୍ପ୍ରଭ ହୋଇଯିବାର ଆଶଙ୍କାଏ। ତାର ଅହଂ ପଣ କ୍ଷୁଣ୍ଣ ହୋଇଯିବାର ସମ୍ଭାବନା ଥାଏ। ତେଣୁ ସେ ଚିରକାଳ ବାମା ହୋଇଥାଉ। ପୁରୁଷର ଅନୁଗାମିନୀ ହୋଇ ରହିଥାଉ।

ପରିବାରରେ, ସାମାଜିକ ଜୀବନରେ ପୁରୁଷ ଅପେକ୍ଷା ସେ ବହୁଗୁଣରେ ଅଧିକ ଦକ୍ଷା ବୋଲି ସମସ୍ତେ ଉପଲବ୍ଧି କରନ୍ତି, କିନ୍ତୁ ସ୍ୱୀକାର କରନ୍ତି ନାହିଁ। ଗୋଟିଏ ପରିବାରର ଐଶ୍ୱର୍ଯ୍ୟ ପ୍ରାଚୂର୍ଯ୍ୟ ସାଂସ୍କୃତିକ ବୈଭବ ସେ ପରିବାରର ନାରୀମାନଙ୍କର ସଂସ୍କାର ବୋଧ ଉପରେ ନିର୍ଭର କରେ। ସାଂପ୍ରତିକ ସମାଜରେ

ଶିକ୍ଷା, ଦୀକ୍ଷା, ଅର୍ଜନ କ୍ଷମତାରେ ନାରୀ ପୁରୁଷର ସମକକ୍ଷ ହେଲେ ସୁଦ୍ଧା ସେ ତାର ସାଂସ୍କୃତିକ ଦାୟିତ୍ୱବୋଧକୁ କସ୍ମିନ୍ କାଳେ ବିସ୍ମୃତ ହୁଏନାହିଁ। କର୍ମଜୀବୀ ଜୀବନର ଜଂଜାଳ ବୋଧ ସତ୍ତ୍ୱେ ସେ ଯଥାସାଧ୍ୟ ସମୟ ସେଥିପାଇଁ ଉତ୍ସର୍ଗ କରଥାଏ। ଅନ୍ନଠାରୁ ଆନନ୍ଦ ପର୍ଯ୍ୟନ୍ତ ଏମିତି କୌଣସି କ୍ଷେତ୍ର ନାହିଁ ଯେଉଁଠି ନାରୀର ଅବଦାନ ଅନୁଭୂତ କରିହୁଏ ନାହିଁ। ଆମ ସାମାଜିକ ଜୀବନର ପ୍ରତିଟି ରୀତିନୀତି, ଆଚାର ବ୍ୟବହାର, ପୂଜା ପଦ୍ଧତି, ବିବାହ ବ୍ରତ, ଉପାସ ଉପାସନା, ଅତିଥି ଅଭ୍ୟାଗତ, ଦେବତା ବ୍ରାହ୍ମଣଙ୍କ ପରିଚର୍ଯ୍ୟା ନାରୀହିଁ ତୁଲେଇ ଥାଏ। ଏନ୍ତୁଡି ଠାରୁ ଅନ୍ତ୍ୟେଷ୍ଟି କ୍ରିୟା ପର୍ଯ୍ୟନ୍ତ ଯେତେ ସବୁ ପ୍ରଥା ପରମ୍ପରା ରହିଛି ତାହାର ଅଲିଖିତ ଇସ୍ତାହାର ନାରୀ। ପାରମ୍ପରିକ ଲୋକକଥା, ଲୋକଗୀତ, ଢ଼ଗଢ଼ମାଳି, ପହେଲି, ଛଟା, ରଢ଼ି ମାଧ୍ୟମରେ ସେ ଆମ ସାମାଜିକ ବିଧିବିଧାନମାନ ଉଜ୍ଜୀବୀତ କରି ରଖିଥାଏ। ଦେଇପିଣ୍ଡିର ପାଣି ଦେବା, ପୂର୍ବପୁରୁଷଙ୍କୁ ଶ୍ରାଦ୍ଧଦେବା, ଇଷ୍ଟ ଦେବତାଙ୍କୁ ଅର୍ଘ୍ୟ ଦେବା, ଚଉଁରା ମୂଳେ ସଂଜବତୀ ଜାଳିବା, ଆ-କା-ମା-ଭୈ କହି କାର୍ତ୍ତିକ ସ୍ନାନସାରି ଡଙ୍ଗୀ ଭସାଇବା ଆଦି ପ୍ରଥା ପରଂପରା କୌଣସିଟି ତା ଆଖିରୁ ବାଦ ପଡେନାହିଁ। ପରିବାରକୁ କଲ୍ୟାଣୋନ୍ମୁଖ କରି ରଖିବା ପାଇଁ ସର୍ବମଙ୍ଗଳ ଜଗନ୍ନାଥ ଉଚ୍ଚାରଣ କରି ସବୁ ଅଶୁଭକୁ ଶୁଭ, ସବୁ ଅବିଧିକୁ ବିଧିରେ ପରିଣତ କରିବାର ସାମର୍ଥ୍ୟ ରଖିଥାଏ ନାରୀ। ପ୍ରୟାସ ପ୍ରସୂତ ନୁହେଁ ବରଂ ନିଜ ଅଜାଣତରେ ସିଏ ସାମାଜିକ ଜୀବନକୁ ପ୍ରତି ମୂହୁର୍ତ୍ତରେ ମହିମା ମଣ୍ଡିତ କରି ଚାଲିଥାଏ। ସେ ଉଚ୍ଚଶିକ୍ଷିତ ସ୍ୱଚ୍ଛଶିକ୍ଷିତ ଅଥବା ଅଶିକ୍ଷିତ ଏସବୁର ବିଚାର ବିବେଚନା ତା ପାଖରେ ନଥାଏ। ସବୁ ବିଶ୍ୱାସ ଆଧାରରେ ଚାଲିଥାଏ। ଏମିତି କି କେତେ ଗୁଡିଏ ପ୍ରଥାସିଦ୍ଧ ବିଧି ବିଧାନ ରହିଛି, କୌଣସି ଆବଶ୍ୟକତା ନଥାଇ ସୁଦ୍ଧା ସେ ତାହାକୁ ନିର୍ବିକାରରେ ମାନିନେଇଥାଏ। ପାରମ୍ପରିକ ନିୟମ ଶୃଙ୍ଖଳା ଶାସ୍ତ୍ରୀୟ ସଂଯମତାକୁ ସୁଯୋଗ ପାଇଲା ମାତ୍ରେ ଉଲଂଘନ କରିବା ପୁରୁଷପଣ ବୋଲି ପୁରୁଷଟିଏ ଭାବୁଥିବା ବେଳେ ନାରୀଟିଏ ସ୍ୱପ୍ନରେ ସୁଦ୍ଧା ସାମାଜିକ ନୀତିନିୟମ ଶୃଙ୍ଖଳା ଭଙ୍ଗ ମୁହୂର୍ତ୍ତ ଆସିଲେ ସେ ଆତଙ୍କିତ ହୋଇପଡେ। ଏମିତି କୌଣସି ହିନ୍ଦୁ ନାରୀଟିଏ ନାହିଁ ଯିଏ ଗୁରୁବାରରେ ଆଇଁଷ ଖାଏ, ସାବିତ୍ରୀ ବ୍ରତ କରେ ନାହିଁ, ଭାଟ ଭିକାରୀକୁ ଚାଉଳ ମୁଠାଏ ଦେଇନାହିଁ,

ଗୁରୁଗୁରୁଜନଙ୍କ ପାଦତଳେ ଭୂଇଁରେ ମୁଣ୍ଡମାଡି ପ୍ରଣାମ କରେନାହିଁ। ମାର୍ଗଶୀର ମାସରେ ଝୋଟି ଚିତାରେ ଅଗଣା ଭରେନାହିଁ, ଘରକୁ ଅତିଥି ଅଭ୍ୟାଗତ ଆସିଲେ ସେମାନଙ୍କୁ ଅଭ୍ୟର୍ଥନା ଜଣାଏ ନାହିଁ। ନିଜ ସନ୍ତାନମାନଙ୍କୁ ଲୋକଗୀତ, ଲୋକକଥାରୁ ପଦେ ଅଧେ କହେନାହିଁ। ଆମ ବ୍ରତ ପୁରାଣ କି ଭାଗବତ ଅଧ୍ୟାୟେ ପଢ଼େ ନାହିଁ। ଏ ସବୁତ ସାଧାରଣ କଥା। ଆମ ସାଂସ୍କୃତିକ ସଂପଦର ଗୋଟାଏ ଗୋଟାଏ ଫର୍ଦ୍ଦ, ଯାହା ଆମ ସାମାଜିକ ଜୀବନକୁ ସୁସ୍ଥ ମାର୍ଜିତ ଓ ବିଭୂତି ମଣ୍ଡିତ କରିଥାଏ। ତାର ବଞ୍ଚିବାର ଶୈଳୀ ତାକୁ ଆପେ ଆପେ ମହୀମଣ୍ଡନା କରିଦିଏ। ବେଳେବେଳେ ତାର ଅନ୍ଧବିଶ୍ୱାସ ଅଣପାରମ୍ପରିକ ବିଶ୍ୱାସ ମଧ୍ୟ ଆମ ସାଂସ୍କୃତିକ ବିଭବ ହୋଇଯାଏ। ବହୁ ନୂତନ ଓ କାଳ୍ପନିକ ଦେବାଦେବୀଙ୍କୁ ପୂଜା ଉପାସନା କରି ସେ ପରିବାରର କଲ୍ୟାଣ କାମନା ପାଇଁ ତାଙ୍କୁ ଆମର ସଂସ୍କୃତିଭୂକ୍ତ କରିଦିଏ। ସନ୍ତୋଷୀ ମାଆ ପୂଜା ଏହାର ଗୋଟିଏ ଉତ୍କୃଷ୍ଟ ଉଦାହରଣ।

ପରିବାରକୁ କୌଣସି ଆକସ୍ମିକ ଦୁର୍ଯୋଗ ପଡିଲେ କିମ୍ବା ପରିବାରରେ କେହି ଦୁରାରୋଗ୍ୟ ବ୍ୟାଧି ଭୋଗୁଥିଲେ କିମ୍ବା କୌଣସି ବିପତ୍ତିର ଆଶଙ୍କା ଥିଲେ ସେଥିରୁ ନିଷ୍କ୍ରମଣ ପାଇଁ ସେ ଦେବଦେବୀଙ୍କ ପାଖରେ ମାନସିକ କରେ। କଳାକୁକୁଡା, କଳାବୋଦା ଯାଚେ, ମେଳା ମଉଛବ ଆୟୋଜନ କରେ। ଜଡିବୁଟି, ତେଉଁରିଆ, ତାବିଜ, କାଟପାଣି ଆଣି ଘରେ ରଖେ। ପରିବାର ମଙ୍ଗଳ ମନାସି ଜ୍ୟୋତିଷ, ନାହାକ ପାଖରେ ସ୍ୱାମୀପୁତ୍ରଙ୍କର ଜାତକ ଦେଖାଏ। ଦେବତା ବ୍ରାହ୍ମଣଙ୍କୁ ସନ୍ତୁଷ୍ଟ କରିବାପାଇଁ କେତେ ନା କେତେ ଆୟୋଜନ କରେ। ଝଡା ଫୁଙ୍କା ଠାରୁ ଆରମ୍ଭ କରି ଗ୍ରହଶାନ୍ତି ପାଇଁ ମୂଲ୍ୟବାନ ପଥରର ଆଶ୍ରାନିଏ। ପରିବାରରେ କେହି ଅପୁତ୍ରିକ ଥିଲେ ପୁତ୍ରେଷ୍ଟି ଯଜ୍ଞର ଆୟୋଜନ କରେ। କଳ୍ପବଟରେ ଗୋଡିବାନ୍ଧେ, ତାରିଣୀ ମାଆ ପାଖକୁ ନଡିଆ ପଠାଏ। ଜଗନ୍ନାଥଙ୍କ ନିର୍ମାଲ୍ୟ ବନ୍ଧୁ ସୃଷ୍ଟିକରେ। ସାଧୁ ସନ୍ନ୍ୟାସୀ ମହାରାଜମାନଙ୍କ ଆଶୀର୍ବାଦ ଭିକ୍ଷା କରି ଅଥବା ଦୀକ୍ଷା ନେଇ ପରିବାରକୁ ସବୁ ବିପଦ ଆପଦରୁ ଘଣ୍ଟି ଘୋଡେଇ ରଖିବାକୁ ଚେଷ୍ଟା କରେ। ତା ପାଖରେ ନଖ ନାକ ସବୁ ସମାନ।

ଉନ୍ନତ ଉଦ୍ଧତ ନାସାକୁ କାଟି ସେ ଛୋଟ କରିବାକୁ ଋହେଁ ନାହିଁ କିମ୍ବା

ବର୍ଦ୍ଧିତ ନଖକୁ କାଟି ଫିଙ୍ଗି ଦେଇପାରେ ନାହିଁ। ଏ ସବୁ ଆମ ସଂସ୍କୃତି ଭିତରୁ ଆମେ ଟାଣି ଓଟାରି ଫିଙ୍ଗିପାରିବା ନାହିଁ। ଅପ୍ରିୟ ହେଲେ ସୁଦ୍ଧା ଏକଥା ସତ୍ୟ ଯେ ଉଚ୍ଚଶିକ୍ଷା ଓ ଉଚ୍ଚବର୍ଗର ମହିଳାମାନେ ଧୀରେ ଧୀରେ ଆମ ସଂସ୍କୃତି ପରମ୍ପରାଠାରୁ ବିଚ୍ଛିନ୍ନ ହୋଇ ପଡୁଛନ୍ତି। ଅଣପାରମ୍ପରିକ ଅପସଂସ୍କୃତି ପ୍ରତି ମୋହ ସେମାନଙ୍କୁ ଆପଣାର ବିଭବଠାରୁ ଦୂରକୁ ନେଇଯାଉଛି। ସେମାନଙ୍କ ପାଖରେ ପୂର୍ବପୁରୁଷଙ୍କ ସଞ୍ଚିତ ପୁଞ୍ଜି ନିଷ୍ପ୍ରଭ ହୋଇପଡୁଛି। କିନ୍ତୁ ଅଶିକ୍ଷିତ ଗ୍ରାମ୍ୟ ମହିଳାମାନେ ଏବେ ସୁଦ୍ଧା ସୁରକ୍ଷା ବଳୟ ଭିତରେ ଆମ ସଂସ୍କୃତିକୁ ବଜାୟ ରଖିଛନ୍ତି। ଯେଉଁମାନେ ନିଜର ଅଝଟ ସନ୍ତାନକୁ ଆ ଜହ୍ନମାମୁଁ ଶରଦଶଶୀ ଗୀତ ଗାଇ ବୁଝେଇଥାନ୍ତି, ଟୁଇଁକିଲ୍ ଟୁଇଁକିଲ୍ ଲିଟିଲ୍ ଷ୍ଟାର୍ ନୁହେଁ। ସନ୍ତାନମାନଙ୍କ ଜନ୍ମ ଦିନର ଷଠୀ ଦୁଛେଇଁଙ୍କ ପାଖରେ ଲେଉଟ ଚକୁଳି ଭୋଗ ଦିଅନ୍ତି ଓ ଦୀପଟିଏ ଜାଳି ସନ୍ତାନର ଦୀର୍ଘାୟୁ କାମନା କରନ୍ତି, କେକ୍‌କାଟି ମହମବତୀ ଲିଭାନ୍ତି ନାହିଁ। ଶାଶୁ ଶ୍ୱଶୁରଙ୍କୁ ଗୃହକର୍ତ୍ତାର ମାନ୍ୟତା ଦିଅନ୍ତି। ପରିବାରର ସୁଖ ଦୁଃଖରେ ତାଙ୍କୁ ସାମିଲ କରନ୍ତି, ଜରାଶ୍ରମରେ ରଖିବାର ମସୁଧା କରନ୍ତି ନାହିଁ, କ୍ଲବ୍ ପିକ୍‌ନିକ୍ ପରିବର୍ତ୍ତେ ତୀର୍ଥବ୍ରତ ପୂଜା ଉପାସନାରେ ସମୟ ଅତିବାହିତ କରିଥା'ନ୍ତି। ଆମ ସଂସ୍କୃତି ନାରୀମାନଙ୍କୁ ନମ୍ର କରୁଣାମୟୀ, ସେବାମୟୀ ହେବାର ଦୀକ୍ଷା ଦେଇଛି, ଶକ୍ତିକୁ ଅପବ୍ୟବହାର କରିବାପାଇଁ ନୁହେଁ। ଯେଉଁଠି ଅପସଂସ୍କୃତି ଆମ ସଂସ୍କୃତି ଭିତରକୁ ପଶି ଆସିଛି ସେଇଠି ହିଁ ନାରୀ ପାଖରେ ସ୍ୱୈରତା ବା ସ୍ୱେଚ୍ଛାଚାରିତା ପରିଲକ୍ଷିତ ହୋଇଛି। ଆମ ଜଗନ୍ନାଥ ସଂସ୍କୃତିର ନିର୍ଯ୍ୟାସ ଏକାନ୍ନବର୍ତ୍ତୀ ପରିବାର। ସମଗ୍ର ବିଶ୍ୱ ଅଣୁପରିବାରକୁ ଉତ୍ସାହିତ କଲେ ସୁଦ୍ଧା ଆମ ସମାଜରେ ତାହା ଏବେ ସୁଦ୍ଧା ବଳବତ୍ତର ରହିଛି। ଜଗନ୍ନାଥ, ବଳଭଦ୍ରଙ୍କ ପରି ସମର୍ଥପଣରେ ସାନଭାଇ ବଡଭାଇଠୁଁ ଅଧିକ ହେଲେ ସୁଦ୍ଧା ବଡଭାଇ ପରିବାରର ସର୍ବମାନ୍ୟ ବ୍ୟକ୍ତି। ପରିବାରର ମହିଳାମାନେ ତାଙ୍କୁ ଅମର୍ଯ୍ୟାଦା କରିବା ତ ଦୂରର କଥା ତାଙ୍କ ନାମ ସୁଦ୍ଧା ତୁଣ୍ଡରେ ଧରନ୍ତି ନାହିଁ। ସର୍ବଦା ନମ୍ର ସଂଯତ ଓ ଶୀଳସଂପନ୍ନା ହୋଇ ତାଙ୍କ ସହ ବ୍ୟବହାର କରିଥାନ୍ତି। ବଡଭାଇର ନିର୍ଦ୍ଦେଶକୁ ସାନଭାଇ ଓ ଭାଇବୋହୂ ନିର୍ବିବାଦରେ ମାନିନେଇଥା'ନ୍ତି। ବିଭିନ୍ନ ମାନସିକତା ନେଇ ବିଭିନ୍ନ ଆଡୁ ଆସିଥିବା ମହିଳାମାନେ ଶାଶୁ ଘରର ଛାତ ତଳେ ସମମନସ୍କ

ହୋଇ ଚଳିଥା'ନ୍ତି । ଆମ ସଂସ୍କୃତିର ମୂଳପିଣ୍ଡ ପରିବାରକୁ ମର୍ଯ୍ୟାଦା ସଂପନ୍ନ କରିଥାନ୍ତି ।

ଏସବୁ ତ ଗଲା ବାହ୍ୟ ସାଜ ସଜାର କଥା । ଏହି ପ୍ରକ୍ରିୟାର ଭାବଭିତ୍ତି କିନ୍ତୁ ଦୁଇଟି । ଗୋଟିଏ ହେଉଛି ଆଧ୍ୟାତ୍ମିକ ଉପଲବ୍ଧି, ଅନ୍ୟଟି ହେଉଛି ଆଚାର ଆଚରଣର ଦିଗ । ନାରୀଟିଏ ଧାର୍ମିକ ଚେତନାର ବଶବର୍ତ୍ତୀ ହୋଇ ଏହି ସବୁ କର୍ମରେ ନିଜକୁ ପ୍ରଲିପ୍ତ ରଖିଥାଏ । ଆଧ୍ୟାତ୍ମିକ ଉପଲବ୍ଧି ଏକାନ୍ତ ବ୍ୟକ୍ତିଗତ କଥା । ଏଥିପାଇଁ ସେ ଯେତେ ପ୍ରବଣତା ପ୍ରକାଶ କରିନଥାଏ ଆଚାର ଆଚରଣ ପାଇଁ ସେ ସେତିକି ତତ୍ପର ଥାଏ, ଯାହା ସାମାଜିକ ଜୀବନକୁ ସଂସ୍କୃତ, ମାର୍ଜିତ, ସୁରୁଚି ସଂପନ୍ନ କରିଥାଏ ।

ଗୋଟିଏ ସଭ୍ୟତାର ନିର୍ଯ୍ୟାସ ହେଉଛି ସଂସ୍କୃତି । ସଭ୍ୟତା ଗୋଟାଏ ଆବରଣ ମାତ୍ର । ସଂସ୍କୃତି ହେଉଛି ଅନ୍ତର୍ଜଗତର କଥା, ସୂକ୍ଷ୍ମାତିସୂକ୍ଷ୍ମ ସ୍ତରର କଥା । ସଂସ୍କୃତିର ପ୍ରତିଫଳନ ହେଉଛି ଆମର ମାର୍ଜିତ ମୂଲ୍ୟବୋଧ, ଆମର ଅନ୍ତର୍ନିହିତ ଐଶ୍ୱର୍ଯ୍ୟ, ଆମର ଅନ୍ତଃବିଭବ, ଯାହା ଆମକୁ ସକଳ ସଂକୀର୍ଣ୍ଣତାରୁ ମୁକ୍ତ କରି ସାଗର ପରି ବିସ୍ତାରିତ କରିଦିଏ । ଆମ ଚେତନାକୁ ଉର୍ଦ୍ଧ୍ୱାୟିତ କରେ । ଆମକୁ ପରିଶୀଳିତ କରେ, ରୁଚି ସଂପନ୍ନ କରେ । ଆମକୁ ଉଦ୍‌ଭାସିତ କରେ । କୌଣସି ଗୋଟାଏ ନିର୍ଦ୍ଦିଷ୍ଟ ବିନ୍ଦୁରେ ସଂସ୍କୃତି ଅଟକି ଯାଇନଥାଏ । ଜୀଇବାର ବିଭିନ୍ନ ଦିଗକୁ ଚିପୁଡି ନିଗାଡି ଏହା ବାହାରିଥାଏ, କିନ୍ତୁ ସମସ୍ତଙ୍କ ମଧ୍ୟରେ ଅଲକ୍ଷ୍ୟରେ ଗୋଟାଏ ଯୋଗସୂତ୍ର ରଖିଥାଏ । ସୂତିକା ଗୃହରେ ଷଠୀଘର ନିର୍ମାଣ ଠାରୁ ମୃତ୍ୟୁ ମହୋତ୍ସବ ପର୍ଯ୍ୟନ୍ତ ସବୁଠି ଆମ ସଂସ୍କୃତିର ଯେଉଁ ମୌଳିକତା ରହିଛି ତାର ସୁରକ୍ଷା ନାରୀ ହିଁ କରିଥାଏ । କିନ୍ତୁ ଏବେ କ୍ଷୋଭର ସହ କହିବାକୁ ପଡୁଛି, ଯୁଗଯୁଗ ଧରି ଯେଉଁ ସଂସ୍କୃତିର କାରପଟ୍‌ଦାର ରୂପେ ନାରୀକୁ ଶ୍ରେୟତା ଦିଆଯାଉଥିଲା, ତାହା ଏବେ ଅବକ୍ଷୟ ସ୍ତରରେ ପହଞ୍ଚିଛି ଓ ଏଥିପାଇଁ ନାରୀର ଦାୟିତ୍ୱହୀନତା ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରାଯାଉଛି ।

ସଭ୍ୟତାର ଜଗତିକରଣ ଆମର ଉପଭୋକ୍ତା ମାନସିକତାକୁ ତୀବ୍ରତର କରିଛି । ମୂଲ୍ୟବୋଧ ଅପେକ୍ଷା ବସ୍ତୁର ମୂଲ୍ୟ ଆମପାଇଁ ବଡ ହୋଇଛି । ସର୍ବନିମ୍ନ ମୂଲ୍ୟ ଦେଇ ଖୁବ୍ କମ୍ ସମୟ ମଧ୍ୟରେ ସର୍ବାଧିକ ଚାହିଦା ମେଣ୍ଟାଇବା

ଆମ ଜୀବନର ଲକ୍ଷ୍ୟ ହୋଇପଡିଛି । ସେଥିପାଇଁ ଆମେ ଯେ କୌଣସି ପନ୍ଥା ଆପଣେଇବା ପାଇଁ ବି ପ୍ରସ୍ତୁତ ହୋଇ ରହିଛୁ । ସାର୍ଥକ ଜୀବନ ଅର୍ଥ ଏବେ କେବଳ ଅର୍ଥ ଅର୍ଜନ । ସଂସ୍କୃତିର ଏପରି ଅବକ୍ଷୟକାରୀ ମୁହୂର୍ତ୍ତରେ ନାରୀ ବି କ୍ରମେ ପଥଭ୍ରଷ୍ଟ ହେବା ପରିଲକ୍ଷିତ ହେଉଛି । ତାର ପାରମ୍ପରିକ ବିଶ୍ୱାସ, ମୂଲ୍ୟବୋଧ, ଚିନ୍ତାଧାରାର କ୍ରମପରିବର୍ତ୍ତନ ହେଉଛି । ବଞ୍ଚିବାର ଘୋଡା ଦୌଡରେ ସିଏ ବି ପୁରୁଷ ସହ ଖୁବ୍ ଜୋର୍‌ରେ ଧାଇଁଛି । ରକ୍ତାକ୍ତ ହୋଇଛି । ତଥାପି କାହା ସହ ସେ ସାଲିସ୍ କରିବାକୁ ଚାହିଁନାହିଁ । ଦାମ୍ପତ୍ୟ ଜୀବନ ବିଫଳ ହୋଇଛି । ସପୂତ୍ୱାୟାର ସଭ୍ୟତାରେ ମାତୃତ୍ୱକୁ ନାରୀ ବନ୍ଧନ ବୋଲି ଭାବୁଛି । ଲିଭ୍‌ଇନ୍ ରିଲେସନ୍‌ସିପ୍ ସମଲିଙ୍ଗୀ ସଂପର୍କ ପରି କେତେ ନୂଆ ନୂଆ ପ୍ରସଙ୍ଗ ସାଂପ୍ରତିକ ଜନଜୀବନକୁ ପଶି ଆସିବା ଦ୍ୱାରା ନାରୀ ଅଣପାରମ୍ପରିକ ହୋଇ ତାର ମର୍ଯ୍ୟାଦାକ୍ଷୁଣ୍ଣ କରୁଛି । ବଜାରୀକରଣ ସଭ୍ୟତାରେ ତା ଅଜ୍ଞାତରେ ବି ସେ ପଣ୍ୟ ହୋଇପଡୁଛି । କଳା ନାଁରେ ନଗ୍ନ ଅଙ୍ଗ ପ୍ରଦର୍ଶନ, ସ୍ୱାଧୀନତା ନାଁରେ ସ୍ୱେଚ୍ଛାଚାରିତା ଓ ମୁକ୍ତ ଜୀବନର ଉନ୍ମତ୍ତ ଶୈଳୀକୁ ଆପଣେଇବା ଦ୍ୱାରା ଅନେକ କ୍ଷେତ୍ରରେ ନିଜପାଇଁ ସେ ଗୁଡାଏ ବିପଜ୍ଜନକ ପରିସ୍ଥିତି ସୃଷ୍ଟି କରୁଛି । ଶୀଳ, ସଂଯମ, ଶୁଦ୍ଧତା, ଚରିତ୍ରିକ ମହନୀୟତା ଯାହା ଭାରତୀୟ ନାରୀକୁ ବିଶ୍ୱବନ୍ଦିତା କରିଥିଲା, ଆଜିର ନାରୀ ତାର ପ୍ରାସଙ୍ଗିକତା ଆଉ ଅନୁଭବ କରୁନାହିଁ । ସେଥିପାଇଁ ବୋଧହୁଏ ଆଜି ଯେତେ ସବୁ ଦୁର୍ଗତି । ଯୁବତୀ ଚାଲାଣ, ଧର୍ଷଣ, ବଳାତ୍କାର, ଗଣ ଦୁଷ୍କର୍ମ, ବିବାହ ବିଚ୍ଛେଦ ଏସବୁ ଆମ ସମାଜର ଅତି ସାଧାରଣ ଘଟଣା ହୋଇପଡିଲାଣି ।

ନାରୀ ଏବେ ପୁରୁଷ ସହ ସମକାମ ହୋଇ ମୁଖ୍ୟ ସ୍ରୋତରେ ସାମିଲ ହୋଇପାରିଛି । ମହାସାଗରଠାରୁ ମହାକାଶ ପର୍ଯ୍ୟନ୍ତ ପ୍ରତିକ୍ଷେତ୍ରରେ ତାର ନିର୍ବିରୋଧ ଯାତ୍ରା । ସଭ୍ୟତାର ଏହି କ୍ରାନ୍ତିକାରୀ ପ୍ରକ୍ରିୟାରୁ ଯେଉଁ ବିଷ ଉଦ୍‌ଗୀରଣ ହୋଇଛି ତାକୁ ଧାରଣ କରିବାପାଇଁ ଆମ ସମାଜରେ ଆଉ ନୀଳକଣ୍ଠମାନେ ନାହାଁନ୍ତି । ସେ ବିଷ ଜ୍ୱାଳାରେ ନାରୀ ହିଁ ନିଜେ ଅହରହ ପୀଡିତ ହେଉଛି । ଘରେ, ବାହାରେ, କାର୍ଯ୍ୟାଳୟରେ, ରାଜରାସ୍ତାରେ, ବସ୍, ଟ୍ରେନ୍‌ରେ, ଅପସଂସ୍କୃତି ବାହକମାନଙ୍କ କେଳେଙ୍କାରୀ, ଲାଞ୍ଛମିଛ, ଦୁଷ୍କର୍ମ, ଦୁର୍ନୀତି, ଦୁର୍ଦ୍ଦମନୀୟତାରେ ଆମ ସନାତନ ସଂସ୍କୃତି କବଳିତ । ଏଥିରୁ ନିଷ୍କୃତି

ନିହାତି ଆବଶ୍ୟକ। ନହେଲେ ମଣିଷ ସଭ୍ୟତା ଧ୍ୱଂସ ମୁଖୀ ହୋଇପଡିବ। ମଣିଷ ଟିକେ ମର୍ଯ୍ୟାଦାବନ୍ତ ହୋଇ ବଞ୍ଚୁ। ତାର ଆଚାର ଆଚରଣ, ରୀତିନୀତି, ରୁଚି ସମ୍ପନ୍ନ ହେଉ। ପତନୋନ୍ମୁଖୀ ସାଂସ୍କୃତିକୀମାନ ପୁଣି ଟିକେ ଉର୍ଦ୍ଧ୍ୱକୁ ଉଠୁ। ଏହା କେବଳ ନାରୀ ଦ୍ୱାରା ହିଁ ସମ୍ଭବ। ସେ ହିଁ ତା' ପରିବାର, ପରିସରରୁ ସଂସ୍କୃତିର ସୁରକ୍ଷା ପାଇଁ ଉପଯୁକ୍ତ ପରିବେଶ ସୃଷ୍ଟି କରିପାରିବ।

ସଂସ୍କୃତି ଯେତେବେଳେ ଉନ୍ନତ ଓ ଶୀର୍ଷ ସ୍ଥାନରେ ଉପନୀତ ହୁଏ, ସେଥିରୁ ଉଦ୍‌ଭୁତ କଳା ସ୍ଥାପତ୍ୟ ସାହିତ୍ୟ ନୃତ୍ୟଗୀତ ଚିତ୍ର ଭାସ୍କର ସବୁ କିଛି ସୁରୁଚି ସଂପନ୍ନ ହୁଏ। ସମାଜକୁ ଉତ୍ତମ ମାର୍ଗରେ ପରିଚାଳିତ କରେ ସାଂସ୍କୃତିକ ଉତ୍ପାଦନ। ସଂସ୍କୃତିର ଏହି ବିଭାବ ଗୁଡିକ କେବଳ ମନୋରଞ୍ଜନକାରୀ ସାମଗ୍ରୀ ନୁହେଁ, ଏସବୁ ଆମ ଚେତନାର ଉତ୍ତୋଳନକାରୀ ଉପାଦାନ। ଏମାନଙ୍କ ମଧ୍ୟରେ ସବୁଠାରୁ ମହତ୍ତମ ଉପାଦାନ ହେଲା ସାହିତ୍ୟ। ମହିଳାମାନଙ୍କ ସାହିତ୍ୟିକ ପରିଚର୍ଯ୍ୟା ଜନଜୀବନକୁ କିପରି ପ୍ରଭାବିତ କରେ ଏଥର ସେ ପ୍ରସଙ୍ଗକୁ ଆସିବା।

ସଂସ୍କୃତିର ନାଭିପଦ୍ମ ହେଉଚି ସାହିତ୍ୟ। ଯେଉଁ ସମାଜର ସଂସ୍କୃତି ଯେତେ ଅଭିଜାତ ତା'ର ସାହିତ୍ୟ ସେତେ ଶକ୍ତିଶାଳୀ। ପୁଣି ସଂସ୍କୃତିର ସୁରକ୍ଷା ପାଇଁ ସାହିତ୍ୟ ଠାରୁ ଉଚ୍ଚତର ମାଧ୍ୟମ ଆଉ ନାହିଁ। ଗୋଟାଏ ଜାତିର ଆଶା ଆକାଙ୍କ୍ଷା ସ୍ୱପ୍ନ କଳ୍ପନା, ଜୟପରାଜୟ ଆନନ୍ଦ ବିଷାଦ ଗୌରବ ଅପମାନର କଥା କହେ ସାହିତ୍ୟ। ସଂସ୍କୃତିର ସୁନ୍ଦରତମ ପରିଣତିକୁ ଭାଷାଭାବ ଓ କଳ୍ପନାରେ ବିନ୍ୟାସ କରିଥାଏ ସାହିତ୍ୟ। ସାହିତ୍ୟରେ ତେଣୁ ଥାଏ ମଣିଷର କଥା, ମାଟିର କଥା, ହୃଦୟର କଥା, ମନର କଥା। ମଣିଷର ମାନସମ୍ମାନକୁ ଅକ୍ଷୁଣ୍ଣ ରଖେ ସାହିତ୍ୟ। ମଣିଷକୁ ହୀନମନ୍ୟତାରୁ, ଅବକ୍ଷୟଶୀଳତାରୁ ଉଦ୍ଧାର କରି ତା ଆତ୍ମାକୁ ଉତ୍ତୋଳିତ କରେ ସାହିତ୍ୟ। ତା ଚେତନାକୁ ଦୀପ୍ତିମନ୍ତ କରେ, ତାକୁ ସମ୍ବେଦନଶୀଳ କରି ବିଶ୍ୱଜନପ୍ରୀତି ଭାବ ସୃଷ୍ଟି କରେ। ଯେଉଁ ସାହିତ୍ୟର ଏତେ ସବୁ ସାଧନ କରିବାର ସାମର୍ଥ୍ୟ ନଥାଏ ତାକୁ ସାହିତ୍ୟ ପଦବାଚ୍ୟ କରିବା ଭୁଲ୍ ହେବ।

ସାହିତ୍ୟକଟିଏ ପ୍ରଥମେ ମଣିଷ। ତା'ପରେ ସେ ମହିଳା କିମ୍ବା ପୁରୁଷ। ଠିକ୍ ସେମିତି ମହିଳାଟିର ପ୍ରଥମ ପରିଚୟ ସେ ମଣିଷ। ତା'ପରେ ସେ

ମହିଳା। ଚେତନାଗତ ସ୍ତରରେ ମହିଳା କିମ୍ବା ପୁରୁଷର କୌଣସି ଭିନ୍ନତା ନଥାଏ। କେବଳ ଜୈବିକ ଦୃଷ୍ଟିରୁ ବା ଶାରୀରିକ ଗଠନ ଅନୁସାରେ ଜଣେ ମହିଳା କିମ୍ବା ପୁରୁଷ ହୋଇପାରେ। ଯେଉଁ ମୁହୂର୍ତ୍ତରେ ଜଣେ ନିଜକୁ ମହିଳା ବୋଲି ଭାବେ, ତା ଉପରେ ସବୁ ଦୁର୍ଗତି ମାଡିଆସେ। ସାଂପ୍ରତିକ ଜନଜୀବନରେ ପ୍ରତି ମୁହୂର୍ତ୍ତରେ ଆମେ ତାର ଭୁକ୍ତ ଭୋଗୀ। ସ୍ରଷ୍ଟାର କୌଣସି ଲିଙ୍ଗ ନଥାଏ। ହୋଇପାରେ, ନାରୀଟିଏ ଲେଖନୀ ଚଳନା କଲାବେଳେ ନାରୀମାନଙ୍କ କଥା ସ୍ୱତଃ ପଶି ଆସେ। କିନ୍ତୁ ଏହା ଯେ ସର୍ବଦା ଘଟିଥାଏ ତା ନୁହେଁ। ଏ ପ୍ରସଙ୍ଗରେ ମହାତ୍ମାଗାନ୍ଧୀ କହିଥିଲେ - ପ୍ରତ୍ୟେକ ନାରୀ ପାଖରେ ପୁରୁଷ ସତ୍ତାଟିଏ ଓ ପ୍ରତ୍ୟେକ ପୁରୁଷ ପାଖରେ ନାରୀ ସତ୍ତାଟିଏ ଅବଗୁମ୍ପିତ ହୋଇ ରହିଥାଏ। ଆବଶ୍ୟକ ବେଳେ ସେହି ସତ୍ତାର ଯଥାର୍ଥ ବିନିଯୋଗ ହିଁ ମଣିଷ ଜୀବନକୁ ସାର୍ଥକ କରିଦିଏ। ଅହିଂସା ଆନ୍ଦୋଳନ ବେଳେ ତାଙ୍କର ଯେଉଁ ଧୈର୍ଯ୍ୟ ସହିଷ୍ଣୁତା, ନମନୀୟତା ଆଦି ଗୁଣାବଳୀର ଆବଶ୍ୟକ ହୋଇଥିଲା। ତାହା ତାଙ୍କ ଅନ୍ତର୍ନିହିତ ନାରୀସତ୍ତାରୁ ସେ ଆହରଣ କରିଥିଲେ ବୋଲି କହୁଥିଲେ।

ସାହିତ୍ୟ ସୃଷ୍ଟି ଦିଗରେ ମଧ୍ୟ ସେହି ଏକା କଥା। ଅବଶ୍ୟ ସାହିତ୍ୟିକ ଜଗତ ଭିତରକୁ ମହିଳାମାନଙ୍କ ଅନୁପ୍ରବେଶ ଅର୍ବାଚୀନ। ପ୍ରାଚୀନ ପୁରାଣ ସାହିତ୍ୟ ବେଦ ଉପନିଷଦଆଦି ପୁରଷଙ୍କ ଦ୍ୱାରା ସୃଷ୍ଟି ହୋଇଥିଲା। ଅତଏବ ପୁରୁଷର ମର୍ଜି ଓ ରୁଚି ଅନୁସାରେ ନାରୀକୁ ନିରୂପିତ କରାଯାଇଥିଲା। ପୁରାଣ ସାହିତ୍ୟରେ ନାରୀ ଚରିତ୍ରମାନେ ପୁରୁଷ ହାତର ସଖୀ କଣ୍ଢେଇ ଥିଲେ। ସେମାନଙ୍କ ଇଚ୍ଛା ଅନିଚ୍ଛା ଚାହିଁବା ନ ଚାହିଁବା, ସ୍ୱପ୍ନ, କଳ୍ପନା ସବୁ ପୁରୁଷ ନିୟନ୍ତ୍ରିତ ଥିଲା। ଐତିହାସିକ ଯୁଗର ସାହିତ୍ୟରେ ବି ନାରୀମାନଙ୍କ ପ୍ରବେଶ ନଥିଲା। ସେ ଯୁଗର ପୁରୁଷ ସାହିତ୍ୟିକମାନଙ୍କ ଦୃଷ୍ଟିରେ ନାରୀମାନେ ଥିଲେ ଚରିତ୍ର ହୀନା, ଛଳନାମୟୀ। ପୁରୁଷମାନଙ୍କୁ ପ୍ରତାରଣା କରି ସେମାନେ ପରପୁରୁଷ ସହ ଜୀବନ ଉପଭୋଗ କରନ୍ତି। ସବୁ ନାରୀଙ୍କର ଥାଆନ୍ତି ଉପପତି। ବୃହତ୍‌କଥା ସାଗର, ଶୁକସପ୍ତତି, ଜାତକ କଥା, ପଞ୍ଚତନ୍ତ୍ର କାହାଣୀ, ସବୁଥିରେ ଏଇ ଭାବନିର୍ଯ୍ୟାସ। କିନ୍ତୁ ସୌଭାଗ୍ୟର କଥା ସାଂପ୍ରତିକ ଯୁଗରେ ସାରସ୍ୱତ କ୍ଷେତ୍ର ନାରୀମାନଙ୍କ ପାଇଁ ନିର୍ବିରୋଧ। ମହିଳାମାନେ ଯେବେଠାରୁ ଲେଖନୀ ଧାରଣ

କଲେ ସେମାନେ ନିଜ କଥା କହିପାରିଲେ, ନିଜ ରୁଚି ଅନୁସାରେ ପୃଥିବୀଟିଏ ପରିକଳ୍ପନା କଲେ। ନାରୀ ନିପୀଡନର ବେଶୀ ବେଶୀ ଚିତ୍ର ବାହାରକୁ ଆସିଲା। ପୂର୍ବରୁ ନାରୀମାନଙ୍କୁ ଯେଉଁ ରୂପରେ ଦର୍ଶିତ ହୋଇଥିଲା, ଯେଉଁ ଭାବରେ ଚର୍ଚ୍ଚିତ କରାଯାଇଥିଲା ତା'ର ଧାରା ବଦଳେଇଲା। ପୁରଷକୁ ସୁହାଇବା ପରି ନୁହେଁ ବରଂ ସେ ନିଜେ ସ୍ୱଚ୍ଛନ୍ଦ ଅନୁଭବ କଲାପରି ସାହିତ୍ୟ ସୃଷ୍ଟି କଲା। ନିଜେ ଆତ୍ମବିଶ୍ୱାସୀ ହେବା ସଙ୍ଗେ ସଙ୍ଗେ ଅନ୍ୟ ମହିଳାମାନଙ୍କ ଭିତରେ ବି ଆତ୍ମବଳ ସଂଚରେ କରିପାରିଲା। ଗଳ୍ପ ଉପନ୍ୟାସ କବିତା ପ୍ରବନ୍ଧ ନାଟକ ଆଦି ବିଭିନ୍ନ ବିଭାଗକୁ ସମୃଦ୍ଧ କଲା। କେବଳ ନିଜ ସମସ୍ୟାର କଥା ନୁହେଁ, ସମାଜର ବିଭିନ୍ନ ସମସ୍ୟାକୁ ଆଧାର କରି ସାହିତ୍ୟ ସୃଷ୍ଟି କଲା। ସବୁଠାରୁ ବଡ କଥା ହେଲା ବହୁ ପ୍ରତିଭାଧାରିଣୀଙ୍କ ଲେଖନୀ ସମାଜକୁ ମାର୍ଜିତ ସଂଯତ ଶୃଙ୍ଖଳିତ ଓ ଶୁଚିବନ୍ତ କଲା। ଅଶ୍ଳୀଳତା କିମ୍ବା ସମାଜର ଉତ୍କଟ ଉଦ୍‌ଭ୍ରାନ୍ତତା, ବଣ୍ୟ ପ୍ରବୃତ୍ତିର ଅଦମନୀୟତା ଆଦି ଚିତ୍ରଣରେ ନାରୀ ଲେଖନୀ ଯଥେଷ୍ଟ ସଂଯତ ଓ କୁଣ୍ଠିତ ଭାବ ଅବଲମ୍ବନ କଲା। ଏହା ନାରୀର ଭୀରୁତା ନୁହେଁ ବରଂ ସାରସ୍ୱତ ଅଥବା ସାମାଜିକ ଜୀବନକୁ ସମ୍ଭ୍ରାନ୍ତ ଓ ରୁଚିପୂର୍ଣ୍ଣ କରି ଦେଖିବାର ଗୋଟାଏ ମହତ୍ ପ୍ରୟାସ ବୋଲି ଭାବିବାକୁ ହେବ।

ତଥାପି ମୁଷ୍ଟିମେୟ ନାରୀ ନିଜ ସ୍ୱାଧୀନତାକୁ ଅପବ୍ୟହାର କରିବାର ଦୃଷ୍ଟାନ୍ତ ବିରଳ ନୁହେଁ। କେତେକ ସୁବିଧାବାଦୀ ପୁରୁଷ ଲେଖକ ନାରୀକୁ ଏଥିପାଇଁ ପ୍ରରୋଚିତ କରିଥା'ନ୍ତି, ସାହିତ୍ୟରେ ନିର୍ଭୀକ ଓ ସାହସୀ ହେବାର ଅର୍ଥ ନୁହେଁ ଯେ କେତେକ ନିଷିଦ୍ଧ ପ୍ରସଙ୍ଗକୁ ନିର୍ଲଜ ଭାବରେ ଲେଖି ପକାଇବା। ଏ ସଂପର୍କରେ ରବୀନ୍ଦ୍ର ନାଥ କହିଥିଲେ - ଯଦି ନିଃସଙ୍କୋଚରେ କେହି ଧୂଳିରେ ଲୋଟିଯାଏ ଆମେ ତାକୁ ବହୁତ ବଡ ପୁରୁଷାର୍ଥ ବୋଲି କହିବା ନାହିଁ। ସେହି ଧୂଳିରେ ଲୋଟିବାକୁ ସାହିତ୍ୟିକ ଆଦର୍ଶର ପଟୁତା ବୋଲି ତାକୁ ପାଳନ କରିବାର ବ୍ୟକ୍ତିମାନଙ୍କର ମଧ୍ୟ ଅଭାବ ନାହିଁ। ନାରୀଟିଏ ଏ ପ୍ରକାର ଲେଖା ଲେଖିଲେ ତାକୁ ବୋଲ୍ଡ ଲେଖିକା କହି ବେଶ୍ ଉତ୍ସାହିତ କରିବା ଦେଖାଯାଇଥାଏ।

ସାହସୀ ହେବାପାଇଁ ନିର୍ଭୀକ ହେବାପାଇଁ ସମାଜରେ ଅନେକ ପ୍ରସଙ୍ଗ ରହିଛି। ଯେଉଁ ସବୁ ବିଧି ବ୍ୟବସ୍ଥାକୁ, ଯେଉଁ ସବୁ ବ୍ୟତିକ୍ରମକୁ, ଅସାମଞ୍ଜସ୍ୟକୁ

ଆହ୍ୱାନ ଦିଆଯାଇପାରେ, ସନ୍ତୁଳିତ ସମାଜ ଗଠନ ପାଇଁ ପ୍ରୟାସ କରାଯାଇପାରେ। ଦାରିଦ୍ର୍ୟରୁ ଦାସତ୍ୱରୁ, ଭୟଗ୍ଳାନୀ ସଂକୀର୍ଣ୍ଣତାରୁ, ଅଜ୍ଞାନତାରୁ ନିପୀଡନରୁ ନିଷ୍କ୍ରମଣରୁ ମୁକ୍ତିର ବାର୍ତ୍ତା ଦିଏ ସାହିତ୍ୟ। ସେ ବାର୍ତ୍ତା ସହ ସ୍ୱର ମିଶାଇଲେ ସେ ଅଧିକ ଗୌରବମଣ୍ଡିତ ହେବ। ପୁରୁଷ ଅପେକ୍ଷା ଆମର ଅଭିଜ୍ଞତା ବେଶି। ଆମେ ନିପୀଡିତା, ନିଷ୍ପେଷିତା ଦଳିତ ବୋଲି ଦାବି କରୁଥିବା ହରିଜନ ଗିରିଜନଙ୍କ ପରି ଆମେ ନାରୀଜନ ମଧ୍ୟ ସମାଜରେ କମ୍ ଲାଞ୍ଛନାର ଶୀକାର ହେଉ ନାହୁଁ। ଆଉ କେତେକାଳ ଆମେ ସହାନୁଭୂତିକୁ ସମ୍ବଳ କରି ବଞ୍ଚି ରହିଥିବା ? ଏବେ ଆଉ ସହାନୁଭୂତି ନୁହେଁ ସ୍ୱଅନୁଭୂତି ହିଁ ସାହିତ୍ୟରେ ଏକାନ୍ତ କାମ୍ୟ। ଯାହା ତାକୁ ବର୍ତ୍ତମାନର ଦୁର୍ଗତିରୁ ରକ୍ଷା କରିବ ଓ ଭବିଷ୍ୟତ ଜୀବନପାଇଁ କଲ୍ୟାଣୋନ୍ମୁଖ କରି ରଖିବ। ସନ୍ତୁଳିତ ଓ ସମନ୍ୱିତ ସମାଜ ନିର୍ମାଣ ପାଇଁ ପ୍ରମୁଖ ଭୂମିକା ଗ୍ରହଣ କରିପାରିବ। ସାହିତ୍ୟରେ କ'ଣ କୁହାହେଲା ବଡ କଥା ନୁହେଁ, କ'ଣ ନକୁହାଯିବା ଦ୍ୱାରା ମଣିଷ ପଶୁ ଠାରୁ ଉର୍ଦ୍ଧ୍ୱକୁ ଉଠିପାରିବ, ମାନବିକ ମୂଲ୍ୟବୋଧ ଅକ୍ଷୁଣ୍ଣ ରହିବ, ମଣିଷ ଉଚ୍ଚତର ଆଦର୍ଶରେ ଉପନୀତ ହୋଇପାରିବ ତାହାହିଁ ବଡ କଥା।

ମହିଳାମାନଙ୍କଠାରୁ ଏ ଗୁରୁ ଦାୟିତ୍ୱ ଆଉ କିଏ ଅଧିକ ବହନ କରିପାରିବ ?



# ପ୍ରଗତିର ଅନ୍ୟନାମ କେରଳ

ଭୁବନେଶ୍ୱରରୁ ଚେନାଇ ଅଭିମୁଖେ ରେଳଯାତ୍ରା କଲେ ଛୋଟ ଷ୍ଟେସନଟିଏ ପଡେ । କୁମ୍ଭକୋଣମ୍ । ନାଁଟା କେମିତି ପରିଚିତ ପରିଚିତ ଲାଗିଲା । ସ୍ମୃତିକୋଷ ଉଖାରିଲି । ହଠାତ୍ ଆର୍କମିଡିସ୍‌ଙ୍କ ଇଉରେକା ଭାବଭଳି ଭାବାବେଗଟିଏ ଉଦ୍ରେକ ହେଲା ମୋ ଭିତରେ । ରାବଣର ଭାଇ କୁମ୍ଭକର୍ଣ୍ଣର ନାମାନୁସାରେ ସ୍ଥାନଟିର ନାମକରଣ ହୋଇନାହିଁ ତ ? ଏଣିକି ମୋ କୌତୁହଳ ବଢ଼ିଲା । ସ୍ୱର୍ଣ୍ଣମୟୀ ଲଙ୍କାରେ ରାଜତ୍ୱ କରୁଥିବା ଓ ସମଗ୍ର ଦକ୍ଷିଣ ଭାରତକୁ ନିଜ ଅକ୍ତିଆରକୁ ଆଣି ନିଜ ଅନୁଚରମାନଙ୍କୁ ଖଣ୍ଡେ ଖଣ୍ଡେ ଜାଗିରି ଦେଇଥିବା ରାବଣ ମୋ ଚେତନାରେ ବେଳକୁ ବେଳ ଆଧିପତ୍ୟ ବିସ୍ତାର କରୁଥିଲା । ତ୍ରିଚିନାପଲ୍ଲୀ ଷ୍ଟେସନରେ ତିନିଘଣ୍ଟା ରହଣୀ ପରେ ଆମର ପରବର୍ତ୍ତୀ ଗାଡି ଆମ ଲକ୍ଷ୍ୟ ସ୍ଥଳରେ ପହଞ୍ଚିବାର ଥିଲା । ଆମେ ଯାହାକୁ ଇତିହାସ ଓ ଭୂଗୋଳରେ ତ୍ରିଚିନାପଲ୍ଲୀ ବୋଲି ପଢ଼ିଥିଲୁ ରେଳ ଷ୍ଟେସନରେ ହିନ୍ଦି ଓ ଇଂଲିସି ଅକ୍ଷରରେ ଦେଖିଲୁ ତ୍ରିଚିରାପଲ୍ଲୀ । ପୁଣି କୌତୁହଳ । ରାବଣର ଆଉଜଣେ ଅନୁଚର ତ୍ରିଶିରା । ହୋଇପାରେ ତାରି ସ୍ମୃତିକୁ ଉଜ୍ଜୀବିତ କରିବାପାଇଁ ଏ ସ୍ଥାନର ନାମକରଣ ତ୍ରିଶିରାପଲ୍ଲୀ ବା ତ୍ରିଚିନାପଲ୍ଲୀ । ଦକ୍ଷିଣ ଭାରତରେ 'ଶ' ଓ 'ଚ'ର ଉଚ୍ଚାରଣଗତ ପାର୍ଥକ୍ୟ ବେଶି କିଛି ରହେନାହିଁ । 'ଶ'ଟା କେତେବେଳେ 'ଚ' ହୋଇଯାଏ ତ 'ଚ' ଟା ବି ଶ ହୋଇଯାଏ । ଶେଷରେ

ଆମର ଲକ୍ଷ୍ୟସ୍ଥଳ କେରଳର ପ୍ରମୁଖ ସାଂସ୍କୃତିକ ସହର ତ୍ରିଚୁର୍ (ତ୍ରିଶୁର)ରେ ପହଞ୍ଚିଲୁ। କେରଳ ଶାସ୍ତ୍ର ସାହିତ୍ୟ ପରିଷଦ ଆନୁକୂଲ୍ୟରେ ଅନୁଷ୍ଠିତ ହେବାକୁ ଥିବା ଅଖିଳ ଭାରତ ଜ୍ଞାନବିଜ୍ଞାନ ମଞ୍ଚର ୧୩ଶ ଅଧିବେଶନରେ ଯୋଗଦେବା ପାଇଁ ଭାରତ ଜ୍ଞାନ ବିଜ୍ଞାନ ସମିତି ଓଡ଼ିଶା ଶାଖା ତରଫରୁ ଆମେ ପ୍ରତିନିଧିତ୍ୱ କରୁଥିଲୁ।

ତ୍ରିଶୁର ଷ୍ଟେସନ୍‌ରେ ପହଞ୍ଚିବା ମାତ୍ରେ ହାତରେ ପ୍ଲାକାର୍ଡ ଧରି କେରଳ ଶାସ୍ତ୍ର ସାହିତ୍ୟ ପରିଷଦର ସ୍ୱେଚ୍ଛାସେବୀ ଆମକୁ ପାଛୋଟି ନେଲେ। ମିନିବସ୍‌ଟିରେ ଆମେ ଗଲିଲୁ କେରଳର ହୃତ୍‌ପିଣ୍ଡ, କେରଳର ମସ୍ତିଷ୍କ କେରଳ ଶାସ୍ତ୍ର ସାହିତ୍ୟ ପରିଷଦ କାର୍ଯ୍ୟାଳୟ ଅଭିମୁଖେ। ଘରୋଇ ବସ୍‌ଟିଏ ସାମ୍ନା ପଟୁ ଆମକୁ ଅତିକ୍ରମ କରିଗଲା। ବଡ ବଡ ବସ୍ ଇଂଲିସି ଅକ୍ଷରରେ ବସ୍ ଉପରେ ଲେଖାଥିଲା, ସୁପର୍ଣ୍ଣିକା। ପୁଣି ମୋ ସ୍ମୃତିକୋଷ ଉଖାରିଲି। ସଫଳ ବି ହେଲି। ରାବଣର ଅଲିଅଳୀ ଭଉଣୀ ଓଡ଼ିଆ ଉଚ୍ଚାରଣୀରେ ସୁର୍ପଣେଖା। ସୁର୍ପଣେଖାର ଶିଷ୍ଟ ଉଚ୍ଚାରଣ ସୁପର୍ଣ୍ଣିକା। ବାଟରେ ପଡିଲା ମୟ ଲାବରେଟରୀ। ରାବଣର ଜଣେ ଦକ୍ଷ ଇଂଜିନିୟର 'ମୟ'। ଏମାନେ ସବୁଥିଲେ ରାବଣର ବଶମ୍ବଦ, ବିଶ୍ୱସ୍ତ। ଦକ୍ଷିଣ ଭାରତ ଅଞ୍ଚଳ ଏମାନଙ୍କର ଲୀଳାଭୂମି ଥିଲା। କୁହାଯାଏ ରାବଣ ନବଗ୍ରହଙ୍କୁ ନିଜ ଅକ୍ତିଆରରେ ରଖିଥିଲା, ଅନ୍ୟାନ୍ୟ ଦେବଦେବୀ ଦାସ ଦାସୀ ଭଳି ତା ପାଦତଳେ ଖଟୁଥିଲେ। ଷଡରତୁ ମଧ୍ୟ ରାବଣର ଇଚ୍ଛାନୁସାରେ ସେ ଅଞ୍ଚଳକୁ ଓହ୍ଲେଇ ଆସୁଥିଲେ। ରାମାୟଣକାରଙ୍କର ବକ୍ତବ୍ୟର ଯଥାର୍ଥତା ଆମେ ଅନୁଭବ କଲୁ କୋଇଲିର କୁହୁତାନ ସାଙ୍ଗକୁ ଆମ୍ବ ବଉଳର ବାସ୍ନା। ପାଚିବାକୁ ଅପେକ୍ଷା କରିଥିବା ଆମ୍ବ ପଣସ ଗଛରେ ଭରପୁର। ପଣସ ପଣସ କଠା ତାଳଗଛରେ ପେନ୍ଥା ପେନ୍ଥା ତାଳ ଓ ଉଲ୍ଲସିତ ମଳୟ ପବନ ଆମକୁ ଉଲ୍ଲସିତ କଲା। ଉତ୍ତର ଭାରତର ଶୀତ ଲହରୀରେ ଜନଜୀବନ ଅସ୍ତବ୍ୟସ୍ତ ହେଉଥିବା ସମ୍ବାଦମାନ ପରିବେଷଣ ହେଉଥିବା ବେଳେ ଆମେ ବସନ୍ତ ଋତୁର ମଜା ନେଉଥିଲୁ। ସମୟ ଥିଲା ଡିସେମ୍ବରର ଶେଷ ସପ୍ତାହ।

କେରଳରେ ଛଅ ସାତଦିନ ରହଣି ଭିତରେ ମାଲାୟାଲାମ ଲୋକଙ୍କର ମାର୍ଜିତ ବ୍ୟବହାର ଭାଷା ସଂସ୍କୃତି ଖାଦ୍ୟପେୟ ଆତିଥେୟତା ଆମକୁ ମୁଗ୍ଧ

କଲା । ଲକ୍ଷ୍ମୀ ଓ ସରସ୍ୱତୀ ଉଭୟଙ୍କର ବିଳାସକେନ୍ଦ୍ର କେରଳ ବୋଲି ଅନୁଭୂତ ହେଉଥିଲା । କେରଳର ପ୍ରତି ଧୂଳିକଣାରେ ଯେମିତି ବୌଦ୍ଧିକତାର, ପ୍ରଗତିର, ସମୃଦ୍ଧିର ଓ ପ୍ରାଚୁର୍ଯ୍ୟର ପରିଭାଷା ଲିପିବଦ୍ଧ ହୋଇ ରହିଥିଲା । ସବୁଠାରୁ ତାତ୍ପର୍ଯ୍ୟପୂର୍ଣ୍ଣ ହେଲା ସମଗ୍ର ବିଶ୍ୱର ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ଚିକିତ୍ସାଶାସ୍ତ୍ର ଓ ସାହିତ୍ୟ କ୍ଷେତ୍ରପାଇଁ ପ୍ରମୁଖ ଅବଦାନ ଥିବା କେରଳର ଅଧିବାସୀମାନେ ନିଜ ନିତ୍ୟନୈମିତ୍ତିକ ଜୀବନରେ ସରଳ ନିରାଡମ୍ବର ଓ ପରଂପରାସିଦ୍ଧ । କେରଳର ଯୁବ ସଂପ୍ରଦାୟଙ୍କୁ ଅତ୍ୟାଧୁନିକ ବେଶ ପୋଷାକ ବିଭ୍ରାନ୍ତ କରିନାହିଁ । ଲମ୍ବାକେଶ ମଥାରେ ତିଳକ ସାଲୱାର କମିଜ୍ ଅଥବା ଶାଢ଼ୀରେ ବେଶ୍ ମାର୍ଜିତ ମନେ ହୁଅନ୍ତି କେରଳୀ ଝିଅ ଓ ମହିଳା । ହିନ୍ଦୁ ମୁସଲମାନ ଖ୍ରୀଷ୍ଟିୟାନଙ୍କର ଏପରି ଶାନ୍ତିପୂର୍ଣ୍ଣ ସହାବସ୍ଥାନ ବୋଧହୁଏ ଭାରତର ଅନ୍ୟ କୌଣସି ରାଜ୍ୟରେ ପରିଲକ୍ଷିତ ହୁଏନାହିଁ । ସମସ୍ତେ ବାରିହୋଇ ପଡନ୍ତି ସେମାନଙ୍କ ପାରମ୍ପରିକ ବେଶ ପୋଷାକରୁ ଅଥଚ କେହି କାହାର ବ୍ୟକ୍ତିଗତ ଧର୍ମଧାରଣା ଉପରେ ନାସିକା ପ୍ରବେଶ କରନ୍ତି ନାହିଁ ।

ଆମ ଇତିହାସକାରମାନେ ଆର୍ଯ୍ୟ ଓ ଦ୍ରାବିଡ ଭିତ୍ତିରେ ଭାରତୀୟ ସଭ୍ୟତାକୁ ଦୁଇଭାଗରେ ବିଭକ୍ତ କରିଦେଇଛନ୍ତି । ଅବଶ୍ୟ ଉତ୍ତର ଭାରତ ଓ ଦକ୍ଷିଣ ଭାରତର ଜୀବନଶୈଳୀରେ କିଛିଟା ପାର୍ଥକ୍ୟ ଅନୁଭୂତ ହୁଏ । କିନ୍ତୁ ଦ୍ରାବିଡମାନେ କୌଣସି ଗୁଣରେ ଆର୍ଯ୍ୟମାନଙ୍କଠାରୁ ନ୍ୟୁନ ନଥିଲେ । ରାମାୟଣକାର କାହିଁକି ଯେ ଏ ଅଞ୍ଚଳର ଚାରିତ୍ରିକ ବିଶେଷତ୍ୱ ଚିତ୍ରଣ କଲାବେଳେ ଏମିତି ନିଷ୍ଠୁର ହୋଇପଡିଛନ୍ତି ବୁଝିହୁଏ ନାହିଁ । ଆମ ଦେଶର ଭୌଗୋଳିକ ପ୍ରଭାବରେ ଏ ଅଞ୍ଚଳର ଲୋକମାନେ କିଞ୍ଚିତ୍ କଳା କିନ୍ତୁ ଉତ୍ତମ ଗଠନ ସଂପନ୍ନ । ବାଲ୍ମିକୀ ଥିଲେ ଉତ୍ତର ଭାରତର ଓ ଆର୍ଯ୍ୟମାନଙ୍କର ବଂଶଧର ପୁଣି ରାମାୟଣର ଏକ ପ୍ରମୁଖ ଚରିତ୍ର । ନିଜ ବଂଶ ପରଂପରା ଆଦି ବର୍ଣ୍ଣନା କଲାବେଳେ ସେ ନିଶ୍ଚୟ ଶତଜିହ୍ୱ ହୋଇଥିବେ ଏଥିରେ ସନ୍ଦେହ ନାହିଁ । କିନ୍ତୁ ବାସ୍ତବ ଦୃଷ୍ଟିରୁ ବିଚାର କଲେ ତତ୍କାଳୀନ ଭାରତରେ ଦ୍ରାବିଡମାନଙ୍କର ପ୍ରତିପତ୍ତି ପ୍ରଗତି ଓ ପ୍ରାଚୁର୍ଯ୍ୟ ନିଶ୍ଚୟ ଉତ୍ତର ଭାରତୀୟମାନଙ୍କୁ ଚମତ୍କୃତ କରିଥିବ । ଏକାଥରେ ଦଶଟି ବିଷୟରେ ଚିନ୍ତା କରିପାରୁଥିବା ଅସାଧାରଣ ଜ୍ଞାନସଂପନ୍ନ ରାବଣଙ୍କୁ ଦଶମୁଣ୍ଡିଆ, ଦଶାନନ କରିଦେଲେ ।

ଅସାଧାରଣ ଜ୍ଞାନ କୌଶଳର ଅଧିକାରୀ ସେଠାକାର ବୈଜ୍ଞାନିକମାନଙ୍କୁ ମାୟାକାରୀ ଅଥବା ଯାଦୁ ବିଦ୍ୟାର ଅଧିକାରୀ ବୋଲି ଅପବାଦ ଦେଲେ। ସେମାନଙ୍କର ନିରଙ୍କୁଶ ଜୀବନ ଯାପନ ପଦ୍ଧତିକୁ ଓ ପ୍ରଗତି ଦୃଷ୍ଟିରୁ ଭାରତବର୍ଷରେ ସର୍ବାଗ୍ରସ୍ଥିତିକୁ ଔଦ୍ଧତ୍ୟ ଅହଂକାରର ଅପନିନ୍ଦା ଦେଲେ। ଗୋଟାଏ କଥାରେ ଏମାନଙ୍କର ସବୁ ସୁଗୁଣ ଦୁର୍ଗୁଣ ରୂପରେ ରୂପାୟିତ ହେଲା। ସେମାନେ ରାକ୍ଷସ ରୂପରେ ଚିତ୍ରିତ ହେଲେ। କିନ୍ତୁ ଏକଥା ସତ୍ୟ ଯେ ଦ୍ରାବିଡମାନଙ୍କର ପ୍ରାଚୁର୍ଯ୍ୟ ଆର୍ଯ୍ୟମାନଙ୍କ ପାଖରେ ନଥିଲା। ପୁଷ୍ପକ ବିମାନ ଭଳି ବିମାନଟିଏ ରାମଚନ୍ଦ୍ରଙ୍କର ନଥିଲା କି ଅଯୋଧ୍ୟାର ପ୍ରାସାଦ ସବୁ ସ୍ୱର୍ଣ୍ଣରେ ନିର୍ମିତ ନଥିଲା। ଏତିକି କୁହାଯାଇପାରେ ରାମାୟଣକାର ଯଦି ଉତ୍ତର ଭାରତର ନହୋଇ ଦକ୍ଷିଣ ଭାରତର ହୋଇଥାନ୍ତେ ହୁଏତ ରାମାୟଣର ଚରିତ୍ର ସମୂହ ଆମ ଆଗରେ ଭିନ୍ନ ରୂପରେ ପ୍ରତିଭାତ ହେଇଥାନ୍ତେ। କୁମ୍ଭକର୍ଣ୍ଣ, ସୁପର୍ଣ୍ଣକା, ତ୍ରିଶିରା ମୟ ଆଦି ଯେଉଁମାନେ ଏବେ ବି ସ୍ଥାନୀୟ ଲୋକଙ୍କ ଦୃଷ୍ଟିରେ ମର୍ଯ୍ୟାଦାବନ୍ତ ଆମେ ସେମାନଙ୍କୁ ରାକ୍ଷସ ରାକ୍ଷସୀ ବୋଲି କହି ନ ଥାନ୍ତେ। ସେମାନଙ୍କ ଚରିତ୍ରର ବହୁ ଉତ୍ତମ ଦିଗ ଆମ ଆଗରେ ଉଦ୍‌ଭାସିତ ହୋଇଥା'ନ୍ତା।

ଏ ତ ସବୁଗଲା ପୁରାଣ ଇତିହାସ ପ୍ରସଙ୍ଗ। କେରଳର ସାଂପ୍ରତିକ ସ୍ଥିତି ଅନୁଧ୍ୟାନ କଲେ ଆମ ଦେଶରେ ଏ ରାଜ୍ୟ ଅଗ୍ରଣୀ ରାଜ୍ୟ ପରିଗଣିତ ହେବାର ଅନେକ ରହସ୍ୟ ଆପେ ଆପେ ଉନ୍ମୋଚିତ ହୋଇଯାଏ। କେରଳର ଭୌଗୋଳିକ ସ୍ଥିତି ହିଁ ଏହାକୁ ସମୃଦ୍ଧିଶାଳୀ କରିଛି। ବର୍ଷା ଓ ବସନ୍ତ ଦୁଇଟି ଋତୁ ଅନୁଭୂତ ହୁଏ ଏ ରାଜ୍ୟରେ। ସମୁଦ୍ର ଉପକୂଳରେ ଅବସ୍ଥିତ ଥିବାରୁ ନଡିଆ ଗୁଆ ତାଳ ପାମ୍ ରବର ଆଦି ଏ ଅଞ୍ଚଳର ପ୍ରମୁଖ ଅର୍ଥକାରୀ ବୃକ୍ଷ। କୃଷକମାନଙ୍କୁ ବର୍ଷସାରା କୃଷିକାର୍ଯ୍ୟରେ ଲିପ୍ତ ହେବାକୁ ପଡେନାହିଁ। ଅନ୍ୟାନ୍ୟ ସମୟ ଏମାନେ ବୌଦ୍ଧିକ ବିକାଶ ପାଇଁ ନିୟୋଜିତ କରିଥାନ୍ତି। ଜ୍ଞାନୀଗୁଣୀ ଓ ପଣ୍ଡିତମାନଙ୍କର ଅପୂର୍ବ ସମାବେଶ ଏ ରାଜ୍ୟରେ। ଶିକ୍ଷାର ଅଭୂତପୂର୍ବ ବିକାଶ ଏମାନଙ୍କ ଜୀବନ ଶୈଳୀକୁ ବିଜ୍ଞାନଭିତ୍ତିକ କରିଛି। ଲୋକମାନଙ୍କୁ କର୍ମଠ କରିଛି। ଆଳସ୍ୟ ଦୂରୀଭୂତ ହୋଇଛି। ଦାରିଦ୍ର୍ୟ ହାର ମାନିଛି। ସମୃଦ୍ଧି ରାଜତ୍ୱ କରିଛି ରାଜ୍ୟରେ। ସର୍ବୋପରି ପରଂପରା ପ୍ରତି ଆସ୍ଥା ଓ ଆନୁଗତ୍ୟ

ଏ ଜାତିକୁ ଆତ୍ମବିଶ୍ୱାସୀ କରିଛି। ଅଥଚ ଆମ ରାଜ୍ୟରେ ନିଜ ପରଂପରାକୁ ସଂସ୍କୃତିକୁ ଯିଏ ଯେତେ ଉପହାସ କରିପାରିଲା ଆମେ ତାକୁ ସେତେ ପ୍ରଗତିବାଦୀ ବୋଲି କହୁ। କିନ୍ତୁ ସେ ରାଜ୍ୟରେ ଠିକ୍ ତା'ର ଓଲଟା। ଭାବା ଅଟୋମିକ୍ ସେଣ୍ଟରର ପ୍ରମୁଖ ବୈଜ୍ଞାନିକମାନେ ସଭାସ୍ଥଳ ମଣ୍ଡନ କରନ୍ତି ପାରମ୍ପରିକ ଲୁଙ୍ଗିପିନ୍ଧି। ଏସବୁ ପାଳନ କରିବାପାଇଁ ସେମାନଙ୍କ ପାଖରେ ଲିଖିତ ନିୟମ ବା ଅନୁଶାସନ ନାହିଁ। କିନ୍ତୁ ନିଜ ମାଟି ପ୍ରତି ମମତା, ଜନ୍ମଭୂମି ପ୍ରୀତି ସେମାନଙ୍କୁ ଏଇଭଳି ବିଶ୍ୱସ୍ତ କରିଛି। ଏମାନେ ପୃଥିବୀର ଯେଉଁ କୋଣରେ ଥିଲେ ବି ନିଜ ରାଜ୍ୟର ସ୍ୱାର୍ଥପାଇଁ ଚିନ୍ତା କରନ୍ତି। ନିଜକୁ ମାଲାୟଲାମ ବୋଲି ପରିଚୟ ଦେବାକୁ ଗର୍ବ ଅନୁଭବ କରନ୍ତି। ଅଥଚ ଆମେ ଓଡ଼ିଆ ହୋଇ ସୁଦ୍ଧା ଓଡ଼ିଆ ଭାଷା କହିପାରୁନାହୁଁ ବୋଲି ସ୍ୱୀକାର କରିବାରେ ଗର୍ବ ଅନୁଭବ କରୁ। ଓଡ଼ିଆ ଜାଣିଥିଲେ ସୁଦ୍ଧା ଦାନ୍ତଚିପି ଜିଭଟେକି ଓଠ ବଙ୍କେଇ ଅଣଓଡ଼ିଆ ଶୈଳୀରେ ଓଡ଼ିଆ ଉଚ୍ଚାରଣ କରିବାରେ ବେଶ୍ ଆନନ୍ଦ ଅନୁଭବ କରୁ। ଆଈମା କାଳର ସରୁଚକୁଳି ଛୁଞ୍ଚିପତର ଆମ ତଣ୍ଟିରେ ଗଳେନାହିଁ ପିଜାବର୍ଗର ଚିକେନ୍ ପକୋଡା ଗଲ୍‌ଗାଲ୍ ଗଳିଯାଏ ଆମ ଉଦର ଭିତରକୁ। ସେ ରାଜ୍ୟରେ ଫାଷ୍ଟଫୁଡ୍ ଦୋକାନ ସହଜରେ ଆଖିରେ ପଡେନାହିଁ। ସେମାନଙ୍କର ପାରମ୍ପରିକ ଖାଦ୍ୟ ଟପିଓକା (ଗୟାଆଳୁ ସିଝା) କଦଳୀ ସିଝା କଦଳୀ ପତ୍ରରେ ତିଆରି ଆଡା (ଏଣ୍ଡୁରୀ ପିଠା) ସମ୍ବର ରସମ୍ ଆଦି ପାରମ୍ପରିକ ଖାଦ୍ୟ ଓ ସେଥିରେ ନଡ଼ିଆ ତେଲ ବ୍ୟବହାରକୁ ସେମାନେ ଛାଡିନାହାନ୍ତି। ସଫଳତା ଓ ସମୃଦ୍ଧି ସେ ରାଜ୍ୟର ଶୋଭାମଣ୍ଡନ କରିବ ନାହିଁ ତ ଆଉ କେଉଁଠି କରିବ ?



# ଜନଜାତି ସଂସ୍କୃତିର ଅନନ୍ୟ ବିଭବ: ଗୀତକୁଡିଆ ଗୀତକୁଡିଆଣୀ

ପ୍ରତ୍ୟେକ ଜୀବନଧାରୀ ମଣିଷ ମୃତ୍ୟୁପର୍ଯ୍ୟନ୍ତ ତାର ଜୀବନୀ ସତ୍ତାର ଗତି ଅବ୍ୟାହତ ରଖିବାକୁ ଆପ୍ରାଣ ଉଦ୍ୟମ କରିଥାଏ। ଏହି ଗତି ଓ ଉଦ୍ୟମ ହିଁ ହେଉଛି ଜୀବନ। ଜନ୍ମଠାରୁ ମୃତ୍ୟୁପର୍ଯ୍ୟନ୍ତ ଏହି ପ୍ରଲମ୍ବିତ ଜୀବନଧାରାକୁ ଯେଉଁମାନେ କଳାତ୍ମକ କରି ଜାଣନ୍ତି ସେଇମାନେ ହିଁ ଜୀବନ ବଞ୍ଚନ୍ତି। ଜୀବନର ସ୍ବାଦ ସେମାନଙ୍କ ପାଇଁ ଅମୂଲମୂଲ। ଅଥଚ ପ୍ରାଚୁର୍ଯ୍ୟ ଭିତରେ ରହି ମଧ ଯେଉଁମାନେ ବଞ୍ଚିବାର କଳା ଜାଣି ନଥା'ନ୍ତି, ସେମାନେ ବଞ୍ଚନ୍ତି ନାହିଁ, କେବଳ ଜୀବନର ବୋଝକୁ ମୃତ୍ୟୁ ପର୍ଯ୍ୟନ୍ତ ବୋହି ବୋହି ଚାଲିଥା'ନ୍ତି। ପ୍ରତିପତ୍ତି, ପ୍ରାଚୁର୍ଯ୍ୟ ଓ ପ୍ରତିଷ୍ଠା ଏସବୁ ଜୀବନକୁ ଭାରାକ୍ରାନ୍ତ କରିଦେଇଥାଏ। ଜୀବନ ପାଇଁ ସୁଖ ଖୋଜୁ ଖୋଜୁ ସେ ଦୁଃଖର ଦରିଆ ମଝିରେ ଉବୁଟୁବୁ ହେଉଥାଏ। ଅଥଚ ଭୂଇଁକୁ ଚଟାଣ ଓ ଆକାଶକୁ ଛାତ, ନଦନଦୀ ଗିରି ବନ ଲତା ଆଦିକୁ ନିଜର ପ୍ରାଚୁର୍ଯ୍ୟ ବୋଲି ଭାବୁଥିବା ନିଃସ୍ୱ ନିଃସମ୍ବଳ ପ୍ରକୃତି ସନ୍ତାନମାନେ ଶିଖିଛନ୍ତି ବଞ୍ଚିବାର କଳା। ଦୁଃଖ ସୁଖ ପ୍ରାଚୁର୍ଯ୍ୟ ଦାରିଦ୍ର୍ୟ ହାର ଜିତ୍ ଓ ଗୌରବ ଅପମାନ ମୁକ୍ତି ଓ ବନ୍ଧନକୁ ଗୋଟାଏ ମାନଦଣ୍ଡରେ ମାପୁଥିବା ଏଇ ଅରଣ୍ୟାନୀ ମଣିଷପାଇଁ ଜୀବନ ଅମୂଲ୍ୟ ସଂପଦ। ଜୀବନର

ପ୍ରତିଟି ମୁହୂର୍ତ୍ତକୁ ଏମାନେ ପ୍ରାଣଭରି ଉପଭୋଗ କରନ୍ତି। ନୃତ୍ୟଗୀତ ସଂଗୀତ ଏମାନଙ୍କର ପ୍ରାଣ ପ୍ରବାହ। ତୁଣ୍ଡ ଖୋଲି ଦେଲେ ପାହାଡ଼ୀ ଝରଣା ପରି ସଂଗୀତର ସୁଅ ଛୁଟି ଆସେ। ସଂଗୀତ ସେମାନଙ୍କର ଜୀବନ। ଅନ୍ନଠାରୁ ଆନନ୍ଦ ପର୍ଯ୍ୟନ୍ତ ସବୁଠାରେ ସଂଗୀତର ଝଙ୍କାର ନିନାଦିତ ହେଉଥାଏ। ସମଗ୍ର ଓଡ଼ିଶାର ୬୨ ପ୍ରକାର ଜନଜାତିଙ୍କ ମଧ୍ୟରେ ଅଲିଚିକ ଓ ସଉରା ପରି ଗୋଟାଏ ଦୁଇଟା ଭାଷାକୁ ଛାଡିଦେଲେ ଅନ୍ୟ କାହାର ଲିପି ନାହିଁ। ବିନା ଲିପିରେ ମୌଖିକ ଭାବରେ ଯେଉଁପରି ସେମାନେ ସେମାନଙ୍କ ଭାଷା ସାହିତ୍ୟ ସଂସ୍କୃତିକୁ ଉଜ୍ଜୀବିତ କରିରଖିଛନ୍ତି ତାହା ଅନନ୍ୟ। ସେଗୁଡିକ ଜନଜାତି ସଂପ୍ରଦାୟର ଅମୂଲ୍ୟ ସଂପଦ।

ଅବିଭକ୍ତ କୋରାପୁଟ ଜିଲ୍ଲା ଜନଜାତି ସଂପ୍ରଦାୟ ବହୁଳ କ୍ଷେତ୍ର। ସମଗ୍ର ଓଡ଼ିଶାରେ ୬୨ ପ୍ରକାର ଜନଜାତିଙ୍କ ମଧ୍ୟରୁ କେବଳ ଏ ଅଞ୍ଚଳରେ ୫୧ ପ୍ରକାର ଜନଜାତି ଅଛନ୍ତି। ଏମାନଙ୍କ ମଧ୍ୟରେ କନ୍ଧ, ପରଜା, ଭତ୍ରା, ଗଣ୍ଡ, ଭୂମିଆ, ଗାଦ୍‌ବା, ଡିଡାୟୀ, ସଉରା, ହାଲବା, ବଣ୍ଡା ପେଣ୍ଟିଆ, ମାଟିଆ, ଅମାନାତ୍ୟ ଆଦି ପ୍ରଧାନ। କନ୍ଧ ପରଜା ବଣ୍ଡା ଗଣ୍ଡପରି କେତେକ ସଂପ୍ରଦାୟର ସେମାନଙ୍କ ନିଜସ୍ୱ ଭାଷା ରହିଛି। କିନ୍ତୁ ଅନ୍ୟମାନେ ପ୍ରାୟତଃ ଏ ଅଞ୍ଚଳର ସ୍ଥାନୀୟ ଭାଷା ଦେଶୀୟା ଭାଷାରେ ଭାବ ପ୍ରକାଶ କରନ୍ତି। ଦେଶୀୟ ଭାଷା ଓଡ଼ିଆ ଭାଷାର ଏକ ଉପଭାଷା। ଏହାର ଲିପି ନାହିଁ। ଆଦିବାସୀଙ୍କ ପରି ଗୁଡିଆ, ତେଲି, ମାଳି, ଧାକଡ଼ (କ୍ଷତ୍ରୀୟ), ତନ୍ତୀ, ଡମ୍ବ, କୁମ୍ଭାର, ବଢ଼େଇ, ଲହରା ଆଦି ଜାତି ଏହି ଦେଶୀୟା ଭାଷାରେ ଭାବ ବିନିମୟ କରିଥାନ୍ତି। ସ୍ୱତନ୍ତ୍ର ଭାଷାଭାଷୀ ଆଦିବାସୀ ଓ ଅଣଆଦିବାସୀଙ୍କ ମଧ୍ୟରେ ଏହି ଦେଶୀୟା ଭାଷା ସଂଯୋଗ ସେତୁ ରୂପେ କାମ କରିଥାଏ। ତେଣୁ ୫୧ଟି ଆଦିବାସୀ ଭାଷାଭାଷୀ ମଣିଷ ଓ କେତେକ ଅଣଆଦିବାସୀଙ୍କ ସୃଜନଶୀଳତା, କଳ୍ପନାପ୍ରବଣତା ଓ ରସଗ୍ରାହୀତାରେ ସମୃଦ୍ଧ ଦେଶୀୟା ଭାଷା। ପ୍ରବାଦ ପ୍ରବଚନ, ଢ଼ଗଢ଼ମାଳୀ, ନାଁ ଦିଆ, ଧନ୍ଦା ପହେଳି ସହ ଲୋକଗୀତ ଓ ଲୋକ କାହାଣୀ ଏ ଭାଷାର ସମ୍ପଦ। ପ୍ରକୃତିର ସନ୍ତାନ ଏ ଅଞ୍ଚଳର ଅଧିବାସୀମାନେ ସଭ୍ୟତାର ଅକୃତ୍ରିମ ବାତାବରଣ ଭିତରେ ଜୀବନ ବଞ୍ଚିବା ପାଇଁ ପସନ୍ଦ କରନ୍ତି। ପ୍ରକୃତି ପରି ଏମାନେ ସ୍ୱଚ୍ଛନ୍ଦ ଓ ସାବଲୀଳ। ପାହାଡ଼ୀ ଝରଣା ପରି ଛଳଛଳ।

କଳକଳ ନିନାଦିନୀ। ବଣ୍ୟ ବିହଙ୍ଗଙ୍କ ପରି କଳକୂଜନରେ ଏମାନଙ୍କ ଜୀବନ ସଂଗୀତମୟ। ଏମାନେ ବାଟ ଚାଲିଲେ ନୃତ୍ୟର ଛନ୍ଦଟିଏ ଝରି ଝରିଯାଏ। ଗୁଣ୍ଡ ହେଲେ ସଂଗୀତର ମୂର୍ଚ୍ଛନାରେ ଗଗନପବନ ମୁଖରିତ ହୋଇଯାଏ। ବଣ ଫଳମୂଳ ତୋଳିବା ବେଳେ ଶାଗ ତୋଳିବା ବେଳେ, ମାଛ ଧରିବା ବେଳେ, ଦୁଃଖ ସୁଖ ହେବା ବେଳେ, ପଲା ରୋପିବା ବେଳେ, ବାଲୁଙ୍ଗା ବାଛିବା ବେଳେ, ଧାନ କାଟିବା ବେଳେ ଯେଉଁସବୁ ଗୀତ ଗାନ କରିଥାନ୍ତି, ସେସବୁ ପୂର୍ବଲିଖିତ ଅଥବା ଶାସ୍ତ୍ର ସଂହିତା ଅନ୍ତର୍ଭୁକ୍ତ ନୁହେଁ। ତୁଣ୍ଡ ଖୋଲିଲେ ମୁହେଁ ମୁହେଁ ଏସବୁ ବାହାରିପଡେ। ପ୍ରତ୍ୟେକ ପରିବେଶ ପାଇଁ ଗୀତ ମଧ ଭିନ୍ନ ଭିନ୍ନ। ଜୀବନ ଜୀବିକା ସହ ଜୀବନର ଗୀତ ଯୋଡି ହୋଇଯାଏ। ଯେମିତିକି ଆମ୍ବ ଓ କେନ୍ଦୁ ତୋଳିବା ସମୟରେ ଧାଙ୍ଗଡ଼ୀମାନେ ଗୀତ ଗାଆନ୍ତି-

*ଆମ ବେଟି ଗଲି ଜଲା ଦିକରେ*
*ତମ୍‌କେ ବେଟବାର କେନ୍ଦୁ*
*ଘଡିମରା ଜନ୍ ଉଆଁସ ରାତିରେ*
*ତମ୍‌କେ ମିଳେଇଲି ବନ୍ଧୁ।*

ଅର୍ଥାତ୍ ଆମ୍ବ ଗୋଟାଇବାକୁ ଯାଇ ତମକୁ କେନ୍ଦୁଟିଏ ପରି ପାଇଗଲି। ଉଆଁସ ପକ୍ଷର ଘଡି ମରା ଜହ୍ନ ରାତିରେ ବନ୍ଧୁ ତୁମ ସାନ୍ନିଧ ମୋତେ ମିଳିଗଲା। ପଲା ବା ତଳି ରୋପିବାକୁ ଗଲାବେଳେ ସେମାନେ ଗୀତ ଗାନ କରି ଚାଲନ୍ତି-

*ପଲା ରୋପାନି ଚାଲ ନନି ପଲା ରୋପାନି ଚାଲ*
*ହଲିଆ ନନାର ବାବ୍‌ରି ବାଲେ ଖୁସା କଦମ୍ ଫୁଲ।*

ଏମିତି ଅନେକ। ଜୀବନ ଓ ଜୀବିକା ସହ ସଂଗୀତ ଅଙ୍ଗାଙ୍ଗୀ ଭାବେ ଜଡ଼ିତ। ଜୀବନର ସକଳ କଷ୍ଟ ଦୈନ୍ୟ ପୀଡା ପୀଡନକୁ ନୃତ୍ୟ ସଂଗୀତର ମୂର୍ଚ୍ଛନାରେ ଫୁ'କରି ଉଡେଇ ଦିଅନ୍ତି।

ଫସଲ ଅମଳ କାଳୀନ ପୁଷ୍ ପରବ, ଚଇତ ପରବ ଓ ବାଲିଯାତରା ଏମାନଙ୍କ ଜୀବନର ପରିପୂର୍ଣ୍ଣ ଆନନ୍ଦର ପର୍ବ। ଏ ସଂଗୀତ ଆସରରେ ଜୀବନ ଓ ଯୌବନକୁ ଅକୃତ୍ରିମ ଓ ଆକଣ୍ଠ ଉପଭୋଗ କରୁଥିବା ଏମାନଙ୍କର ସଂଗୀତ ପ୍ରାୟତଃ ଶୃଙ୍ଗାର ଚେତନା ସର୍ବସ୍ୱ। ତଥାପି ସ୍ଥଳେ ସ୍ଥଳେ ଜୀବନଦର୍ଶନ

ଆଧ୍ୟାତ୍ମିକ ଚେତନା ସଂପର୍କୀତ। ଶାସ୍ତ୍ରପୁରାଣର ଉପାଖ୍ୟାନ ଆଦିକୁ ମଧ୍ୟ ଏମାନେ ଗୀତରେ ଗୀତରେ ନିଜସ୍ୱ ଶୈଳୀରେ ଗାନ କରିଥାନ୍ତି। ଶିଶୁଟିଏ ଜନ୍ମନେବା ଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଯେତେ ସବୁ ସଂସ୍କାର ରହିଛି ସବୁଠାରେ ଗୀତ ଓ ନାଚର ଆସର ହୁଏ। ଶିଶୁଟିର ନାଁ ଦିଆବେଳେ ଗୀତ ନୃତ୍ୟ ହୁଏ। ଦଶା ଘରେ ନୃତ୍ୟଗୀତର ଆସର ହୁଏ। କିନ୍ତୁ ଏଠାରେ ଆନନ୍ଦର ସଂଗୀତ ଗାନ କରାଯାଉଥିବା ବେଳେ ଦଶାଘରେ ଗାନ କରାଯାଏ ଶୋକ ସଂଗୀତ। ଚଇତି ପରବ, ପୁଷ୍ ପୁନୀ, ବାଲିଯାତ୍ରା ମଣ୍ଡେଇ ଅମୁଷ୍‌ପରବ୍, ଦିଆଲୀ, ବିଷପୁଟନୀ, ନୂଆ ଖାଇ ଆଦି ବର୍ଷସାରା କିଛି କିଛି ପର୍ବ ପର୍ବାଣୀ ଲାଗିରହିଥାଏ। ନୃତ୍ୟଗୀତ ପ୍ରଦର୍ଶନର ଏହି ପର୍ବମାନେ ଏକ ଏକ ସଂଗମ ସ୍ଥଳ। ଯୁବକ ଯୁବତୀ ବା ଧାଂଡା ଧାଂଡୀଙ୍କର ଉଦ୍ଦାମ ଯୌନ ଚେତନା ଶବ୍ଦ ଓ ନୃତ୍ୟର ତାଳେ ତାଳେ ପ୍ରସ୍ଫୁଟିତ ହେଇଥାଏ। ବିଭିନ୍ନ ଚିତ୍ର କଳ୍ପ ଉପମା ରୂପକ ମାଧ୍ୟମରେ ସେମାନେ ପ୍ରେମ ପ୍ରଣୟ ବିରହ ମାନ ଅଭିମାନ ପ୍ରକାଶ କରିଥାନ୍ତି। ଯେପରିକି ନିଷ୍ଠୁର ହୃଦୟକୁ ଶୁଖିଲା କାଠ, ପ୍ରେମ ନିବେଦନକୁ ଧୁଙ୍ଗିଆ ମାଗିବା, ଜୀବନକୁ ଯମର କାକୁଡି ବାଡ, କ୍ଷଣିକ ଦେଖା ସାକ୍ଷାତକୁ ଡିମିରିଫୁଲ, କନ୍ୟାଟିଏ ବୟଃପ୍ରାପ୍ତ ହେବାକୁ ଫୁଲ ଫୁଟିବା ଇତ୍ୟାଦି। ଏମାନଙ୍କର ପ୍ରତିନିଧିତ୍ୱ କରିଥାନ୍ତି ଜଣେ ଜଣେ ପ୍ରତିଭା ସଂପନ୍ନ ସଂଗୀତ ବିଶାରଦ। ଯୁବକମାନଙ୍କ ପାଇଁ ପ୍ରତିନିଧିତ୍ୱ କରୁଥିବା ପ୍ରତିନିଧିଙ୍କୁ ଗୀତକୁଡିଆ ଓ ଯୁବତୀମାନଙ୍କୁ ପ୍ରତିନିଧିତ୍ୱ କରୁଥିବା ଯବୁତୀ ଜଣଙ୍କୁ ଗୀତକୁଡିଆଣୀ କୁହାଯାଏ। ଧାଂଡା ଧାଂଡୀମାନଙ୍କର ପ୍ରତିଯୋଗିତା ସମୟରେ ଏମାନେ ଦର୍ଶକ ମଣ୍ଡଳୀଙ୍କ ପାଖରୁ ଖୁବ୍ ମର୍ଯ୍ୟାଦା ପାଇଥାନ୍ତି। ଟଙ୍କିକିଆ, ଦୁଇଟଙ୍କିଆ ପାଞ୍ଚ ଟଙ୍କିଆ, ଦଶ ଟଙ୍କିଆ, କୋଡିଏ ଟଙ୍କିଆ, ପଚାଶ ଟଙ୍କିଆ, ଶହେ ଟଙ୍କିଆ ନୋଟ୍‌ମାନ ଦର୍ଶକ ମଣ୍ଡଳୀ ସେଫ୍‌ଟିପିନ୍‌ରେ ଗୁନ୍ଥି ଦିଅନ୍ତି। ଏମିତି ଗୀତକୁଡିଆ ଗୀତକୁଡିଆଣୀମାନଙ୍କର ସାଂଗୀତିକ ଜୀବନ ଆରମ୍ଭ ହୋଇଥାଏ। ଏମାନେ ବିଭୁଦତ୍ତ ପ୍ରତିଭାଧାରୀ, ଶବ୍ଦ ଓ ପଦ ସଂଯୋଜନା ପାଇଁ ଏମାନଙ୍କୁ ବେଶି ଆୟାସ ସାଧ କରିବାକୁ ପଡେନାହିଁ। ଯାହା ସେମାନେ କହନ୍ତି ସେଇ କଥାକୁ ଟିକେ ଏପଟ ସେପଟ କରି ସୁନ୍ଦର ଗୀତ ବାନ୍ଧିଦେଇ ପାରନ୍ତି। ଯୁବକ ଯୁବତୀଙ୍କ ମଧ୍ୟରେ କଥା କଟାକଟି ହୁଏ ଗୀତ ମାଧ୍ୟମରେ। ଏହାକୁ

କହନ୍ତି ଗୀତ୍‌ମାରା। ଜଣେ ଅନ୍ୟ ଜଣକୁ ହରାଇବା ପାଇଁ ପ୍ରାଣପଣେ ଚେଷ୍ଟା କରିଥାଏ। ଯୁବକଟି ଯୁବତୀର ରୂପଗୁଣ ଚରିତ୍ରକୁ ପ୍ରଶଂସା କରି ତାକୁ ପ୍ରେମ ଜାଲରେ ଫସାଇବାକୁ ଚେଷ୍ଟା କରୁଥିବା ବେଳକୁ ନାରୀଟି ପୁରୁଷକୁ ଲମ୍ପଟ ଅସୁନ୍ଦର କହି ନିନ୍ଦା କରୁଥାଏ। ପୁଣି କେତେବେଳେ ଯୁବତୀଟିଏ ଯୁବକର ରୂପଗୁଣ ପ୍ରଶଂସା କରି ଗୀତ ଗାଉଥିବାବେଳେ ଯୁବକ ନାରୀକୁ ନିନ୍ଦି ଚାଲିଥାଏ। ଏସବୁ ଧୀରେ ଧୀରେ ନିଷ୍କର୍ଷ ଆଡକୁ ଆସେ। ପରସ୍ପର ପରସ୍ପର ନିକଟରେ ଆତ୍ମ ସମର୍ପଣ କରନ୍ତି। ଏପରିକି ପ୍ରତିଯୋଗିତାର ଗୀତକୁଡିଆଣୀ ଗୀତକୁଡିଆଙ୍କୁ ନିଜ ଘରେ ହଳିଆ ରଖିବାର ଓ ଗୀତକୁଡିଆ ଗୀତକୁଡିଆଣୀକୁ ସ୍ତ୍ରୀ କରିବାର ସର୍ତ୍ତ ରଖାଯାଇଥାଏ। ଏମିତି ଚାଲିଥାଏ ସେମାନଙ୍କର ଗୀତ। ଗୀତକୁଡିଆଣୀ ଗାଏ -

*ଲୁଣ୍ ଲାଗିନାଇଁ କକଡି ଶାଗେ*
*ରାମ୍ପଡି ଚିମକ୍ ଲାଗେ*
*ହଳିଆ ରଖିବି ତକେ ମର୍ ଘରେ*
*ହରିଗଲେ ମର୍ ଆଗେ।*

ଗୀତକୁଡିଆଣୀର ସର୍ତ୍ତ ରେ ରାଜିହୋଇ ଗୀତ୍‌କୁଡିଆ ମଧ୍ୟ ତାର ସର୍ତ୍ତ କଥା କହେ -

*ଶୀତ୍‌ଲି ପବନ ବହେ ଘନ ଘନ*
*କଦଲୀ ମୁଣ୍ଡିଆ ଜନ୍*
*ହାରିଗଲେ ତୁଇ ମର୍ ସଙ୍ଗେ*
*ତୋକେ କରିବି ତିରୀ ରତନ।*

ଆଦ୍ୟ ଯୌବନରେ ଯେଉଁମାନେ ଏମିତି ଜୀବନ ଆରମ୍ଭ କରିଥାନ୍ତି ପରବର୍ତ୍ତୀ କାଳରେ ଏହି ପ୍ରତିଭା ସଂପନ୍ନମାନେ ଜନଜାତି ସମାଜରେ ବେଶ୍ ସମ୍ମାନ ଅର୍ଜନ କରିଥାନ୍ତି। ଏମାନଙ୍କ ପ୍ରତିଭା ବିସ୍ତାରିତ ହୋଇଯାଏ। ଏମାନେ ଜନଜାତି ସଂସ୍କୃତିକୁ ନିଜ ଜିଭ ଅଗରେ ଥୋଇ ଦିଅନ୍ତି। ସଂସ୍କୃତିର ଧାରକ ଅଥବା ବାହକ ରୂପେ ଯୁବକ ଯୁବତୀଙ୍କ ପ୍ରେମ ପ୍ରଣୟ ଭିତରେ ସୀମିତ ନ ରହି ଏମାନେ ଆରଣ୍ୟକ ସଭ୍ୟତାର ମୂର୍ତ୍ତିମନ୍ତ ପ୍ରତିଭୂ ପାଲଟିଯାଆନ୍ତି। ପୂର୍ବରୁ ଭାଗବତ ଟୁଙ୍ଗୀ ପରି ପ୍ରତି ଗାଁରେ ସ୍ୱତନ୍ତ୍ର କୁଡିଆ ଥିଲା। ସେହି କୁଡିଆରେ

ଧାଂଡା ଧାଂଡୀମାନେ ରହୁଥିଲେ। ସେହି କୁଡିଆ ଅନୁସାରେ ଏମାନଙ୍କୁ ଗୀତ କୁଡିଆ ଗୀତ୍ କୁଡିଆଣୀ କୁହାଯାଇଥାଇପାରେ ବୋଲି ଗବେଷକ ମାନେ ମତ ଦିଅନ୍ତି।

ଗୀତ କୁଡିଆ ଓ ଗୀତ କୁଡିଆଣୀଙ୍କ କଳା ପ୍ରଦର୍ଶନ ପାଇଁ କୌଣସି ଆନୁଷ୍ଠାନିକ ମଞ୍ଚ ନଥାଏ। ଯେଉଁଠି ଯେତେବେଳେ ଗୀତକୁଡିଆ ଗୀତକୁଡିଆଣୀ ଭେଟଘାଟ ହୋଇଯାଆନ୍ତି, ତାହା ହୋଇଯାଏ ସେମାନଙ୍କ ରଙ୍ଗମ। ପର୍ବପର୍ବାଣୀର ପୂଜାସ୍ଥାନ, ବାଲିଯାତ୍ରାର ବାଲିଘର ସାମ୍ନା, ବାହାଘର, ଦଶାଘର, ନାମକରଣ, କନ୍ୟା ବୟଃପ୍ରାପ୍ତି ହେବା ଗୃହସ୍ଥମାନଙ୍କ ଅଗଣା ଯେଉଁଠି ବନ୍ଧୁବାନ୍ଧବ ଏକତ୍ରିତ ହୋଇଥାନ୍ତି। ଏସବୁ ପାଲଟିଯାଏ ରଙ୍ଗମ। ଚଇତିପରବ, ପୁଷ୍ପୁନେଇରେ ଗାଁ ଗାଁ ବୁଲି ବୁଲି ସେମାନେ ଗୀତ ଗାଇଥାନ୍ତି। ବିଶେଷତଃ ଗୀତକୁଡିଆ ଗୀତ କୁଡିଆଣୀଙ୍କ ପାଇଁ ସାପ୍ତାହିକ ହାଟ ଏକ ବଡ ରଙ୍ଗମଞ୍ଚ। ସାପ୍ତାହିକ ହାଟ ଜନଜାତିଙ୍କ ଜୀବନରେ ଏକ ପ୍ରମୁଖ ଭୂମିକା ଗ୍ରହଣ କରିଥାଏ। ହାଟ ସେମାନଙ୍କ ଜୀବନ ଜୀବିକାକୁ ନିୟନ୍ତ୍ରିତ କରିଥାଏ। ଏପରିକି ପଲ୍ଲୀ ଅଞ୍ଚଳରେ ପୂର୍ବରୁ ହାଟଦିନ ସ୍କୁଲମାନ ଛୁଟି ଅଥବା ଗୋଟିଏ ବେଳା ପାଠପଢ଼ା ହେଉଥିଲା। ବିଭିନ୍ନ ପୂଜାପାର୍ବଣ ବ୍ୟତୀତ ଅନ୍ୟ ଦିନମାନଙ୍କରେ ଏହି ହାଟ ଥାଏ ଗୀତକୁଡିଆ ଓ ଗୀତିକୁଡିଆଣୀମାନଙ୍କର କଳା ପ୍ରଦର୍ଶନ ସ୍ଥଳ। ଜନଗହଳି ଭିତରେ ଅରାଏ ଜାଗା ଆଡେଇ ଗୀତରେ ଗୀତରେ ପରସ୍ପରକୁ ଆହ୍ୱାନ ଦିଅନ୍ତି ଗୀତକୁଡିଆ ଗୀତକୁଡିଆଣୀ। ଆରମ୍ଭ ହୁଏ ଆସର। ଦେଖଣାହାରୀ ଜମିଯାଆନ୍ତି। ବିସ୍କୁଟ୍, ଚକୋଲେଟ୍, ଟଙ୍କା ପାଖରୁ ଆଳୁ, ପିଆଜ, ପନିପରିବା ପର୍ଯ୍ୟନ୍ତ। ଯିଏ ଯାହା ଚାହିଁଲା କଳାକାରମାନଙ୍କୁ ଉପହାର ଦେଲା। ପିନ୍ କଣ୍ଟାରେ ନୋଟ୍‌ମାନ ସେମାନଙ୍କ ପୋଷାକରେ ଗୁନ୍ଥି ଦିଆଯାଏ। କଳାପ୍ରିୟ ଜନଜାତିମାନଙ୍କ ଜୀବନକୁ ସଂଗୀତ କଳା ଏହିପରି ଆଚ୍ଛନ୍ନ କରି ରଖିଥାଏ।

ଗୀତକୁଡିଆ ଓ ଗୀତକୁଡିଆଣୀମାନଙ୍କ ଦ୍ୱାରା ଗାନ କରାଯାଉଥିବା ଗୀତକୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ। ଗୀତ କୁଡିଆ ଓ ଗୀତକଟନୀ, ପୁଣି ଗୀତକୁଡିଆଣୀମାନଙ୍କ ଗୀତ ମଧ୍ୟ ଦୁଇପ୍ରକାର। ଚଇତି ପରବ ଗୀତ ବା ଡାଲ୍ ମୂଲିଆ ଗୀତ ଓ ପୌରାଣିକ ଆଖ୍ୟାନମାନଙ୍କୁ ମୂଳଭିତ୍ତି କରି ନିଜସ୍ୱ

ଭାଷା ଶୈଳୀରେ ଗାନ କରୁଥିବା ଗୀତ। ଗୀତକଟନୀକୁ ମଧ୍ୟ ସେହିପରି ଦୁଇ ଭାଗରେ ବିଭକ୍ତ କରାଯାଇପାରେ। କଟନୀ ଗୀତ୍ ଓ କାତାନି ବା ନିଞ୍ଜାନୀ।

ଗୀତ କୁଡିଆ ପରମ୍ପରାର ଅନ୍ତର୍ଭୁକ୍ତ ଡାଲମୂଲିଆ ଗୀତ ସଂପୂର୍ଣ୍ଣ ଶୃଙ୍ଗାର ଚେତନା ସର୍ବସ୍ୱ। ଯୁବକ ଯୁବତୀଙ୍କର ଉଦ୍ଦାମ ଯୌନକାମନା, ପ୍ରେମ ପ୍ରଣୟ ମାନ ଅଭିମାନ ହାସ୍ୟପରିହାସ ମାଧ୍ୟମରେ ପ୍ରକାଶିତ ହୋଇଥାଏ। ଏସବୁ ସେମାନଙ୍କ ଚର୍ମଭେଦୀ ଅନୁଭବର ଗୀତ। ବୃକ୍ଷଟିର ଡାଳପତ୍ର ଠାରୁ ଚେର ମୂଳ ପର୍ଯ୍ୟନ୍ତ କେଉଁଠୁ ଆସି କୁଆଡେ ମାଡିଯାଏ ତାର କିଛି ସୀମା ସରହଦ ନଥାଏ। ପାହାଡୀ ଝରଣା ପରି ଏ ସେ ସଂଗୀତର ସ୍ରୋତ। କଣ୍ଟାଝଟା ଖାଲ ଖମା ପଥର କଙ୍କର ନମାନି ଆଗକୁ ମାଡିଚାଲେ। ଜୀବନ ଓ ଯୌବନର କୋମଳତମ ଅନୁଭବ ପ୍ରେମ ପ୍ରୀତିର ଜୟଗାନ କରେ। ପ୍ରଥମେ ଗୀତ କୁଡିଆ ଓ ଗୀତ କୁଡିଆଣୀ ଧର୍ମଦେବତା ଧରତୀଦେବୀଙ୍କ ସହ ସେମାନଙ୍କ ଇଷ୍ଟ ଦେବ ଦେବୀ ଓ ସ୍ଥାନୀୟ ଦେବଦେବୀଙ୍କ ବନ୍ଦନା କରନ୍ତି ଯେପରି କି-

କୁଆର କୁଆର୍ ଶହେ କୁଆର
ତଲର୍ କୁଆର ନାଗ ନାଗିନୀ
ମଞ୍ଜପୁରେ ଠାକୁରାନୀ
ଠାକୁରାନୀ ମାତା ପିଠିରେ ବେନି
ଛିଞ୍ଚିଲେ ନ ଲାଗେ ପାନି
ଦେବୀ କୁଆରିନି ରନକାସିନି
କରନି ମକିଆ ପିଲବାସିନୀ
ସରଦା ଲାଗିଲା ତତେ
ବାରବାନି କରି ଗୀତ ଗାଇ ଦେବୀ
ପଦ ଦିଅ ମାଆ ମତେ।

ଉଭୟେ ଉଭୟଙ୍କ ଇଷ୍ଟଦେବୀଙ୍କୁ ତୟିନୀ କରିସାରିବା ପରେ ଆରମ୍ଭ ହୁଏ ପରିଚୟ ପର୍ବ। ରସିକ ଶେଖର ଗୀତକୁଡିଆ ଗୀତ କୁଡିଆଣୀଙ୍କୁ ମନେଇବା ପାଇଁ ଗାଏ -

ଏ ନନୀରେ...

କୁରେଇ ଫୁଲର ବାସ ମହକିଲା
ଉଡିଗଲେ ଶୁଆ ଶାରୀ
କାଏ ନାମ୍ ତୁମର କୋନ୍ ଗାଁ ଠାନୁ
ଆସ୍‌ଲା ଆଛସ୍ ସୁନା ଗୋରୀ ।

ଓଡ଼ିଆ ରୂପାନ୍ତର - କୁରେଇ ଫୁଲର ବାସନାରେ ବଣ ଭୂମି ମହକି ଉଠିଲା । ଶୁଆଶାରୀ ଉଡିଗଲେ, ତୁ ସୁନାଗୋରୀ କେଉଁ ଗାଁରୁ ଆସିଲୁ ? କ'ଣ ତୋର ନାମ ?

ପୁରୁଷର ନାରୀମାନଙ୍କ ପ୍ରତି ଏ ପ୍ରକାର ଆତୁରତା ଆସକ୍ତି ପଣକୁ ଆକ୍ଷେପ କରି କହେ -

ମହୁରୀ ବାଜିଲା ରାତି
କାଇ ହୀନିମାନ ପୁରୁଷ ଜାତି
ଧୁଙ୍ଗିଆ ମାଗିଲା ରାତି ।

ଦେଶୀୟା ସଂସ୍କୃତିରେ ପୁରୁଷଟିଏ ନାରୀକୁ ଧୁଙ୍ଗିଆ ମାଗିବା ପ୍ରେମ ନିବେଦନର ପ୍ରତୀକ । ଚତୁରୀ ଗୀତ କୁଡିଆଣୀ ଏତେ ସହଜରେ ପୁରୁଷ ପାଖରେ ନିଜର ଦୁର୍ବଳତା ପ୍ରକାଶ କରେ ନାହିଁ । ତାକୁ କଷଟି ପଥରରେ କଷିବା ପରି ପରୀକ୍ଷା ନିରୀକ୍ଷା କରି ତା ପ୍ରେମକୁ ଆହୁରି ଶାଣିତ କରେ । ତା ବ୍ୟାକୁଳତାକୁ ନେଇ ବେଶ୍ ଉପଭୋଗ କରେ କିନ୍ତୁ ପୁରୁଷ ତଥାପି ତା ପ୍ରଚେଷ୍ଟା ଜାରି ରଖିଥାଏ ଯୁବତୀର ହୃଦୟ ଜିତିବା ପାଇଁ । ସେ ଅଧୀର ହୋଇଯାଏ -

ଶିରୀ ପରବତେ ଝାଲିଆ ମଝୁର
ଟେକ୍ ଟେକାଇଲା
ତମର ଆମର ପିର୍‌ତି ସିନା
ଦଇବ ଭେଟାଇଲା ।

ପର୍ବତ ଉପରେ ମୟୁର ପୁଚ୍ଛ ଟେକି ନାଚିଲା । ଦୈବ ଯୋଗରୁ ତମ ସହ ମୋର ପ୍ରୀତି ଭାବ ସୃଷ୍ଟିହେଲା ।

ତଥାପି ବୁଝେନାହିଁ, ରସିକା ନାରୀ । ଅନ୍ତରର ଭାବକୁ ଗୋପନ କରି

ମୁହଁରେ ପ୍ରତ୍ୟାଖ୍ୟାନ କରେ । ପଦ ପରେ ପଦ ଖଞ୍ଜି ଖଞ୍ଜି ପୁରୁଷକୁ ଈର୍ଷାନ୍ୱିତ କରେ । ଅପମାନିତ କରେ । ଅନ୍ୟପୁରୁଷମାନେ ତାକୁ ଚାହାଁନ୍ତି ଏକଥା ଇଙ୍ଗିତରେ କହେ ।

ଆଟା ଚୁଡୁଙ୍ଗିଆ ବାଇଗନ୍ ଡେଟି
ନୂଆ ଜୁଡୁଙ୍ଗିଆ ଲିଟି
ଆମ ଯୁବରାଜ ଲେକି ପାଟାଇଲା
ଉଦୁଲିଆ ଯିବା ଚିଟି

ଆଠଟି କେନାଥିବା ବାଇଗଣ ଗଛର ଡାଳରେ ତୁ ଲିଟି ଚଢ଼େଇ ପରି ତୁ ହେଉଚୁ ଯେ ମୁଁ ତୋ ପ୍ରେମରେ ଆଦୌ ଫସିବିନି, ମୋର ମନର ମଣିଷ ଉଦୁଲିଆ ଯିବାପାଇଁ ଚିଠି ଲେଖି ପଠାଇଛି ।

ତଥାପି ଚେଷ୍ଟାରୁ ବିରତ ରହେ ନାହିଁ ପ୍ରେମ ପ୍ରବଣ ପୁରୁଷ । ଏଥର ନାନା ପ୍ରଲୋଭନ ମାଧ୍ୟମରେ ସେ ଯୁବତୀ ହୃଦୟକୁ ଜିଣିବା ପାଇଁ ବ୍ୟାକୁଳ ହୋଇଯାଏ –

ସୁବର୍ଣ୍ଣର ଚୁଡି ହଂସଗାର ପରି କଲା ଡାଲିମ୍‌ର କଷି
କେତେ ଦିନୁ ନନି ଆଶା କରି ଆଚେ
ଚୁମା ଦେବି ତତେ ଛତ୍ର ପଲଙ୍କରେ ବସି ।
ତୁଇ ହେଲେ ମୋର ପୁନେଇ ଜହ୍ନ
ମୁଇଁ ମେଘ ହୋଇ ଭାସିଯିବି ।

ଏଥର ଗୀତ କୁଡିଆଣୀ ନିଜର ଟାଣପଣ ସାବ୍ୟସ୍ତ କରେ । ପୁରୁଷ ପାଖରେ ନିଜର ମହିତ୍ତ୍ୱ ପ୍ରଖ୍ୟାପନ କରିବାପାଇଁ, ଆଗକୁ ସୃଷ୍ଟି ପାଇଁ, ସଂସାରକୁ ଆଗକୁ ବଢ଼ାଇବାପାଇଁ ନାରୀମାନରଙ୍କ ଭୂମିକା ସଂପର୍କରେ ଚେତେଇ ଦିଏ ପୁରୁଷକୁ ।

ଆଠ ଜଜନରେ ପବନ ବହିଲା
ନଅ ଜଜନରେ ପାନି
କେତେ କେତେ ଇନ୍ଦ୍ର ଟଳିଗଲେ ସିନା
ମୋର ବାସୁକୀ ଟଳିଲା ନାଇଁ ।
ମୁଇଁ ସ୍ତିରି ଜାତି ନଥିଲେ ସଂସାର ବଢ଼୍‌ତା ନାଇଁ ।

ନାରୀ ହେଉଛି ଧରତୀ ମାଆ ଧାରଣ କରିଥିବା ବାସୁକୀ ସଦୃଶ । ଯୋଜନ ଯୋଜନ ବର୍ଷା ଓ ପବନରେ ଖଣ୍ଡ ପ୍ରଳୟରେ କେତେ କେତେ ଇନ୍ଦ୍ର କ୍ଳାନ୍ତ ହୋଇ ଟଳି ଯାଆନ୍ତି ସିନା କିନ୍ତୁ ବାସୁକୀ ସେମିତି ସ୍ଥିର ଅଞ୍ଚଳ ରହିଥାଏ । ତାକୁ ଟଳାଇବା ଏତେ ସହଜ ନୁହେଁ । ସ୍ତ୍ରୀ ଲୋକମାନେ ଯଦି ନ ଥାନ୍ତେ, ଏ ସୃଷ୍ଟି ଆଗକୁ ବଢ଼ି ପାରନ୍ତା ନାହିଁ ।

ପୁରୁଷ ନାରୀର ଏଇ ନିର୍ବୋଧ ପଣକୁ ବେଶ୍ ଉପଭୋଗ କରେ । ସେ ପୁରୁଷ । ତାର ପ୍ରାଧାନ୍ୟକୁ ଅବମାନନା କଲେ ସେ ନୀରବ ରହିବ କେମିତି । ତେଣୁ ଦ୍ୱିଗୁଣ ଉତ୍ସାହରେ ପୁରୁଷର କୃତିତ୍ୱକୁ ସାବ୍ୟସ୍ତ କରିବାକୁ ଯାଇ କହେ-

ହଁ ତୁ ସତ୍ କଥା କହୁଛୁ ଯେ ହେଲେ ଶୁଣ୍ -

ଆଠ ଜଜନରେ ପବନ ବହିଲା ନଅ ଜଜନରେ ପାନି
ମୁଇଁ ଇନ୍ଦର୍ ରାଜା ଜଲ୍ ନାଇଁ ବର୍ଷିଲେ
ଡାଙ୍ଗରା ଫାଟତା ଭୂଇଁ
ତମର ଭୂଇଁ ଡାଙ୍ଗରା ଫାଟ୍‌ସି
ତେବେ ମିଶା ବୁଦ୍ଧି ନାଇଁ
ଏକଲା ମାଇଜୀ ପିଲା ପାଇଲାଟାକେ
ମୁଇଁ ଦୁନିଆରେ ଦେଖି ନାଇଁ

ଇନ୍ଦ୍ର ପୁରୁଷର ପ୍ରତୀକ । ଇନ୍ଦ୍ର ରାଜା ବର୍ଷା ନ କଲେ ଭୂଇଁରେ ଦୁବ ବି କଅଁଳିବ ନାହିଁ । ଭୂଇଁ ଫାଟିଯିବ, ପୁରୁଷ ବିନା ନାରୀ ଯେ ଅଧା ସେ କଥା ଜାଣି ସୁଦ୍ଧା ତମମାନଙ୍କର ବୁଦ୍ଧି ଉଦୟ ହେଉନାହିଁ । କେଉଁ ଦୁନିଆରେ ପୁରୁଷ ବିନା ନାରୀଟିଏ ଏକୁଟିଆ ସନ୍ତାନ ଜନ୍ମ କରିଛି ମୁଁ ଏହା ଦେଖିନାହିଁ ।

ଏଥର ଟିକେ ନରମ ପଡିଯାଏ ଗୀତ କୁଡିଆଣୀ । ତାର ଟାଣପଣ ଭାଙ୍ଗି ଆସେ । ପୁରୁଷ ନାରୀ ଏକ ମୁଦ୍ରାର ଦୁଇ ପାଖ ସଦୃଶ । ଦୁହେଁ ମିଶିଲେ ହିଁ ସୃଷ୍ଟି ବଢ଼ିଚାଲିବ ଆଗକୁ । ସେ ପୁରୁଷର ପ୍ରେମ ନିବେଦନକୁ ଏଥର ସ୍ୱୀକାର କରି କହେ -

ବାଲି ଘରେ ଗଲି ଓଷା ଘରେ ଗଲି
ଛାଡି ଦେଲି ରସ କେଲି
ଘଡିମରା ଜହ୍ନ ଉଆଁସ ରାତିରେ

ତୋ ପାଖେ ଆସିରେଲି
ମୋର ପୁରୁବର ବନ୍ଧୁ ବୋଲି।

ଏସବୁ ଶୃଙ୍ଗାର ଚେତନାଧର୍ମୀ ଡାଲମୂଲିଆ ଗୀତ। ଚଇତି ପରବର ଗୀତ, ପ୍ରେମ ପ୍ରଣୟର ଗୀତ, ଉଦ୍ଦାମ ଯୌବନର ଜୟଗାନ। ଏହା ବ୍ୟତୀତ ଶାସ୍ତ୍ର ପୁରାଣ ଉପାଖ୍ୟାନ ନେଇ ଗୀତ କୁଡିଆ ଗୀତ କୁଡିଆଣୀମାନେ ନିଜ ଭାଷା ଶୈଳୀରେ ସୁନ୍ଦର ଶବ୍ଦ ସଂଯୋଜନା ଓ ସଂଗୀତର ଛନ୍ଦରେ ଦର୍ଶକମଣ୍ଡଳୀକୁ ମନ୍ତ୍ରମୁଗ୍ଧ କରି ଦିଅନ୍ତି। ପୌରାଣିକ ଆଖ୍ୟାନକୁ ଉପସ୍ଥାପନ କଲାବେଳେ ନିଜ ଭିତରେ ସେମାନେ ପୌରାଣିକ ଚରିତ୍ରକୁ ଓହ୍ଲେଇ ଆଣନ୍ତି। ନିଜକୁ ସେଇ ଚରିତ୍ର ଭୂମିକାରେ ରଖି ଯେଉଁ ସଂଗୀତ ଗାନ କରନ୍ତି, ତାହା ସଂପୂର୍ଣ୍ଣ ସେମାନଙ୍କ ମୌଳିକ କଳା। ଉଦାହରଣ ସ୍ୱରୂପ ମହାଭାରତର ଦ୍ରୌପଦୀ ବସ୍ତ୍ରହରଣର ଉପାଖ୍ୟାନ ଉପସ୍ଥାପନ ବେଳେ ଗୀତକୁଡିଆଣୀ ନିଜକୁ ଦ୍ରୌପଦୀ ଭୂମିକାରେ ଅବସ୍ଥାପନ କରି କହେ -

କୁମୁଣ୍ଡା ରୋପିଲି ଗୋବର ଖାତେ
ମାଳିଗଲା ପରବତେ
ବାଲ ଧରି କରି ସଭାକୁ ଆଣିଲା
ହୀନ ଦୁଃଶାସନ ମୋତେ
ପାଞ୍ଚଟା ମନୁଷ୍ କରିଲି ସିନା
ଦୟାନାଇଁ କାର ଚିତେ□।

ଦ୍ରୌପଦୀର ଏ ଅସହାୟତାରେ ବେଦନା ବ୍ୟଥିତ ହୋଇପଡେ ଭୀମ। ବଡ଼ଭାଇ ଯୁଧିଷ୍ଠିରଙ୍କ ସର୍ତ୍ତ ପ୍ରତି ସମ୍ମାନ ପ୍ରଦର୍ଶନ କରି ସେ ଦୁଃଶାସନକୁ ସେ ସମୟରେ କିଛି କରିପାରିନାହିଁ ସିନା ଦ୍ରୌପଦୀଙ୍କୁ ଆଶ୍ୱାସନା ଦେବାରେ ପଶ୍ଚାତ୍‌ପଦ ହୋଇନାହିଁ। ସେଇ ଭରା ରାଜସଭାରେ ସେ ଗୀତିକୁଡିଆ ନିଜକୁ ଭୀମ ବୋଲି ଭାବି ବୀରଦର୍ପରେ କହିଛି -

ଝିକିଲିରେ ମାଲ ଚିପିଲିଠା ଡାଇଁ
କେନେ ଗଲା କେନେ ନାଇଁ।
ଦୃଶାର ରୁଧିରେ ସ୍ନାନ କରାଇବି
ବୀର ଭୀମସେନ ମୁଇଁ।

କେବଳ ମହାଭାରତ ରାମାୟଣ ନୁହେଁ, ମହିମାଧର୍ମର ଗ୍ରନ୍ଥସମୂହ, କାଳ୍ପନିକ ଆଖ୍ୟାନ, ଦେଶୀୟା ନାଟ ଉପାଖ୍ୟାନର ଚରିତ୍ରମାନଙ୍କୁ ନେଇ ମଧ୍ୟ ଏହି ଶୈଳୀରେ ଗାନ କରନ୍ତି। ସ୍ଥଳ ବିଶେଷରେ ପୌରାଣିକ ବିଷୟବସ୍ତୁକୁ ଜନଜାତିର ସଂସ୍କୃତି ଅନୁସାରେ ପରିବର୍ତ୍ତିତ ସୁଦ୍ଧା କରିଦେଇଥାନ୍ତି। ଉଦାହରଣ ସ୍ୱରୂପ ରାମାୟଣର ରାମଚନ୍ଦ୍ରଙ୍କ ଆଦେଶରେ ଲକ୍ଷ୍ମଣ ସୁର୍ପଣଖାର ନାସା ଛେଦନ କରିବା ମୂଳ ରାମାୟଣ ଓ ପ୍ରତ୍ୟେକ ପ୍ରାଦେଶିକ ରାମାୟଣରେ ରହିଛି। କିନ୍ତୁ ଗୀତ କୁଡିଆ ଗୀତ କୁଡିଆଣୀଙ୍କ ସଂଗୀତରେ ଗୀତ କୁଡିଆ ଲକ୍ଷ୍ମଣ ଭୂମିକାରେ ଅବତୀର୍ଣ୍ଣ ହୋଇ ସୁର୍ପଣଖା ହୋଇଥିବା ଗୀତକୁଡିଆକୁଣୀକୁ ତୁ ମାଇଜୀଟିଏ ହୋଇଥିବାରୁ ମୁଁ ତତେ ଛାଡି ଦେଉଛି। ନଚେତ୍ ତୋ ନାକ କାନ କାଟି ତତେ ମାଡମାରି ବିଦା କରିଦେଇଥାନ୍ତି। ଦେଶୀୟା ସଂସ୍କୃତିରେ ନାରୀମାନଙ୍କୁ ବେଶ୍ ସମ୍ମାନ ପ୍ରଦର୍ଶନ କରାଯାଇଥାଏ। ନିଜ ସ୍ୱାମୀ ବ୍ୟତୀତ ନାରୀ ଉପରେ କୌଣସି ପୁରୁଷ ହାତ ଉଠେଇ ପାରିବେ ନାହିଁ। ଏପରିକି ଅବିବାହିତ କନ୍ୟାଟି ଉପରେ ତା ବାପା ଭାଇ ବି ନୁହେଁ। ଏପରି ଯଦି କେବେ କୋଉଠି ଅଘଟଣଟିଏ ଘଟିଯାଏ ତେବେ ସଂପୃକ୍ତ ମହିଳା ତା' ଉପରେ ହାତ ଉଠାଇଥିବା ପୁରୁଷକୁ ସାମାଜିକ ବାଛନ୍ଦ କରାଯାଏ। ଭାତ ନାୟକ ଆସି ଦୁହିଁଙ୍କୁ ପବିତ୍ର କରେ। ଭୋଜୀ ଭାତ ହୁଏ। ଏସବୁ ଖର୍ଚ୍ଚ ମାଡ ମାରିଥିବା ପୁରୁଷକୁ ବହନ କରିବାକୁ ହୋଇଥାଏ। ତେଣୁ ଲକ୍ଷ୍ମଣ ସାଜିଥିବା ଗୀତ କୁଡିଆ ସୁର୍ପଣଖା ସାଜିଥିବା ଗୀତ କୁଡିଆଣୀର ନାକ କାନ କାଟେ ନାହିଁ।

ଗୀତକୁଡିଆ ଗୀତକୁଡିଆଣୀ ଏହିପରି ଜନଜାତି ସଂପ୍ରଦାୟର ସାଂସ୍କୃତିକ ଜୀବନକୁ ଜୀବନ୍ତ କରି ରଖିଥା'ନ୍ତି। ଉଦାହରଣ-

ଲେ ଲେ ଲେ ଲେ ରସ (୨ଥର)
ରାମ ଗଲେ ବନବାସ୍ ରାମ ଗଲେ ବନବାସ୍
ପୁନି ସୀତା କାନ୍ଦେ ରସ ରସ, ସୀତା କାନ୍ଦେ ରସ ରସ।

ଗୀତ କଟନୀକୁ ଯେଉଁ ଦୁଇ ଭାଗରେ ବିଭକ୍ତ କରାଯାଇଥାଏ ସେଗୁଡିକ ହେଲା - କଟ୍‌ନୀ ଗୀତ ଓ କାତାନୀ ବା ନିଙ୍ଗାଣୀ ଗୀତ।

ବିବାହ ସମୟରେ ଉଭୟ କନ୍ୟା ପକ୍ଷ ଓ ବର ପକ୍ଷର ଯୁବକ ଯୁବତୀମାନଙ୍କ

ମଧ୍ୟରେ ସ୍ୱାଗତ, ଥଟ୍ଟା ପରିହାସ, ପରସ୍ପରକୁ ଆକ୍ଷେପ ଆରୋପ, ପ୍ରେମ ନିବେଦନ ଆଦି ଭାବକୁ ଯେଉଁ ସଂଗୀତ ମାଧ୍ୟମରେ ପ୍ରକାଶ କରାଯାଏ ତାହାକୁ କୁହାଯାଏ କଟନୀ ଗୀତ। ପରସ୍ପର ପରସ୍ପରକୁ ଗୀତରେ କାଟିବା ପାଇଁ ସର୍ବନିମ୍ନ ସୁଯୋଗ ଟିକେ ହାତଛଡା କରନ୍ତି ନାହିଁ। ଗୀତ୍‌ମାରା ମାଧ୍ୟମରେ ଦୁଇ ପକ୍ଷ ବନ୍ଧୁତା ସୁଦୃଢ଼ କରନ୍ତି। ପରସ୍ପର ମଧ୍ୟରେ ଥିବା ସ୍ନେହ ପ୍ରେମ ପ୍ରୀତିକୁ ପ୍ରକାଶ କରିଥାନ୍ତି।

ବିବାହ ସମୟରେ ଗାନ କରାଯାଉଥିବା ଗୋଟାଏ ଗୀତର ଉଦାହରଣ-

ଲରି ଲରି ଲରି ଲରି ବାଜିଲା ଶଙ୍ଖ ମହୁରୀ
ଆକାଶ ଝମଡା ପାତାଲେ ବେଦୀ
ନ ଫୁଟେ ବାନ୍ଧର ବଇ
ଲରି ଲରି ଲରି ଲରି
ଆକାଶ ଝମଡା ପାତାଲେ ବେଦୀ
ଲାଗିଲା ରାମ୍ ଝମଡା
ଲାଗିଲା ହରି ଝମଡା
ରାମଝମଡାରେ ହରି ଝମଡାରେ
ସୁନା ରୂପାର ପାଟିଆ, ସୁନା ରୂପାର ପାଟିଆ।

ଢ଼ୋଲ, ମହୁରୀ, ନିଶାନ, ଟିଡିବିଡ଼ି, ବଂଶୀ, ବଡରା ଆଦି ବାଦ୍ୟଯନ୍ତ୍ର ବାଜିଲେ ଦୁଇପକ୍ଷ ଧାଂଡା, ଧାଂଡୀ ପରସ୍ପରକୁ ଆକ୍ଷେପ କରି ଗୀତ ଗାଆନ୍ତି।

ଧାଂଡା ପକ୍ଷରୁ ଗୀତ ଭାସି ଆସେ -
ଇତି ଇତି କିଆରୀରେ ପିଲା ବଡେ ବଡେ ଢ଼େଲା
ପା□ ବରଷର କମାନି ଗଲା ଏବେ ଏକା ଧରା ଦେଲା,
ମୋର ପାଟବାଲି ଶୁଆ ଡବଲା ମୁଆଁ
ଏବେ ଏକା ଧରା ଦେଲା...
ଏ ବନ୍ଧୁ ଚମକିଲାରେ... ଉଲୁ ଉଲୁ..... (ହୁଳହୁଳି)

ଅର୍ଥାତ୍ ପାଞ୍ଚ ବର୍ଷର ଅମଳ ଧାନ ନଷ୍ଟ ହୋଇଗଲା ପରେ ଏ ବର୍ଷର କମାଣିରେ ଆମେ ଆମ ପୁଅପାଇଁ ଝିଅଟିଏ ନେଉଛୁ। ସେମାନେ ଆକ୍ଷେପ କରି କହନ୍ତି ଆମର ଶୁଆ ଚଢ଼େଇ ପରି ହସ ହସ ମୁହଁ ବରପାଇଁ ଏଇଁ ଗାଁରେ

ଝିଅଟିଏ ଥିଲା । ଝିଅପକ୍ଷ ମଧ୍ଯ ଏତେ ସହଜରେ ପୁଅପକ୍ଷର ବଡପଣକୁ ସହ୍ୟ କରିବା ଲୋକ ନୁହଁନ୍ତି । ଧାଂଡୀମାନେ ବାଜା ବାଦ୍ୟର ତାଳେ ତାଳେ ଗାଇଥା'ନ୍ତି –

ଆଇ ଠେଙ୍ଗା ପାଇ ଠେଙ୍ଗାରେ ଭଏନି
ଆଇ ଠେଙ୍ଗା ପାଇ ଠେଙ୍ଗା
କାଏ ଦେଖିକରି ମନ କରି ଦେଲା
ଚଉଦ ହାତର ଡେଙ୍ଗା
ଏ ବନ୍ଧୁ ରଙ୍ଗ ଆସରେ... ଉଲ୍ଲୁ ଲ୍ଲୁ, ଲ୍ଲୁ

ଆମର ଏଡେ ସୁନ୍ଦର ଝିଅଟା ଚଉଦ ହାତର ଡେଙ୍ଗା ପୁଅକୁ କ'ଣ ଦେଖି ପସନ୍ଦ କଲା ? ଏମିତି ଥଟ୍ଟା ପରିହାସ ଆକ୍ଷେପୋକ୍ତି ମାଧ୍ୟମରେ ଦୁଇପକ୍ଷ ଭାବର ଆଦାନ ପ୍ରଦାନ ହୁଅନ୍ତି । ସ୍ନେହ ମମତାରେ ସିକ୍ତ ହୁଅନ୍ତି । ଜନ୍ମମାଟି ବାପାମାଆ ପରିବାର ସାଙ୍ଗସାଥୀ ଛାଡି ପରଘରକୁ ଯାଉଥିବା ଝିଅଟି ମନମାରି ବସିଥିବାରୁ ତାକୁ ବୁଝେଇବା ପାଇଁ ଗୀତ ଗାନ କରାଯାଏ.. ।

ବାଜା ବାଜେ ଢ଼େଇଁ ଢ଼େଇଁରେ ନନୀ
ମହୁରୀ ବାଜେ ଫେଇଁ ଫେଇଁ
ହଳଦୀ ଚିକନ ତକେ ଲଗାଇବା ଆଚେ
ବୁଆସିନି ଖଟିବା ପାଇଁ...
ଏ ନନୀ ହସି ଦିଅରେ... । ଉଲ୍ଲୁ ଲ୍ଲୁ ଲ୍ଲୁ

ଢ଼ାଇଁ ଢ଼ାଇଁ ବାଜା ଫେଁ ଫେଁ ମହୁରୀ ବାଜୁଛି । ଝିଅ ତୁ କାଲିଠାରୁ କୁମାରୀରୁ ଭୁଆଷୁଣୀ ହେବୁ । ତୁ ମନ କଷ୍ଟ ନକରି ଟିକେ ହସିଦେ । ଏ ଏମିତି ଅନେକ ଗୀତ ବିବାହର ପ୍ରତିଟି କର୍ମକର୍ମାଣୀ ସହ ଏମିତ ଭାବଗର୍ଭକ ଗୀତ ଗାନକରି ଗୀତ କୁଡିଆ ଗୀତ କୁଡିଆଣୀ ସଂଗୀତ ଗାନ କରନ୍ତି । ସେମାନଙ୍କ ସହ ସମୁହ ଗାନ କରନ୍ତି ଅନ୍ୟ ଧାଂଡା ଧାଂଡୀ ।

କାତାନୀ ବା ନିଖାଣୀ ହେଉଛି କାଳ୍ପନିକ ଗଳ୍ପ । ଯାହାକୁ ସୁଲଳିତ ଛନ୍ଦରେ ଗୀତ ରୂପ ଦେଇ ମଧୁର କଣ୍ଠରେ ଗୀତ କୁଡିଆ ଗୀତ କୁଡିଆଣୀମାନେ ଗାନ କରନ୍ତି । ଗଳ୍ପର ପଞ୍ଜର ଥାଏ କାଳ୍ପନିକ କିନ୍ତୁ ସେଥିରେ ଯେଉଁ ରକ୍ତମାଂସ ଭରି ଦିଆଯାଇଥାଏ, ସେ ସବୁ ସଂପୂର୍ଣ୍ଣ ଜନଜାତି ସଂପ୍ରଦାୟର ସଂସ୍କୃତି

ପରମ୍ପରା, ସେମାନଙ୍କର ପ୍ରେମ ପ୍ରଣୟ ଓ ନିତ୍ୟ ନୈମିତ୍ତିକ ଜୀବନର ପ୍ରାପ୍ତି ଓ ପ୍ରତ୍ୟାଶା। ସେମାନଙ୍କ ହୃଦୟର ପ୍ରାଣସ୍ପନ୍ଦନ। ବିଶେଷତଃ ବର୍ଷା ଧୂଆ ଦିନମାନଙ୍କରେ ଜମିରେ ପଲା ରୋପିବା, ବାଲୁଙ୍ଗା ବାଛିବା ଆଦି କର୍ମମୟ ଜୀବନରେ କ୍ଲାନ୍ତ ମନକୁ ହାଲୁକା କରିବାପାଇଁ ଗୀତ କୁଡିଆ ଗୀତକୁଡିଆଣୀମାନେ ଏହି ନିଷାଣୀ ଗୀତ ଗାନ କରିଥାନ୍ତି। ଭିନ୍ନ ଭିନ୍ନ କାହ୍ଣନିକ ଗହ୍ଣପାଇଁ ଭିନ୍ନ ଭିନ୍ନ ସ୍ୱର ଲହରୀ ଛନ୍ଦ ଥାଏ। ଗାଇବା ଲୋକ ଏହି ଗହ୍ଣମାନଙ୍କୁ ଯେତେ ରସସିକ୍ତ କରି ଗାନ କରିପାରେ ତାହା ସେତେ ରସବନ୍ତ ହୋଇଥାଏ, ଗୀତକୁଡିଆଣୀମାନେ ଅନ୍ୟ ଗୀତ୍ ମାରିବା ପୂର୍ବରୁ ଯେପରି ଇଷ୍ଟଦେବୀଙ୍କୁ ବନ୍ଦନା କରିଥାନ୍ତି ନିଷାଣୀ ପୂର୍ବରୁ ମଧ୍ୟ ସେମିତି କରିଥାନ୍ତି। ତା'ପରେ ଆରମ୍ଭ କରନ୍ତି ଗୀତ ନିଷାଣୀ- ନିମ୍ନରେ ଏକ ନିଷାଣୀ ଗୀତର ଉଦାହରଣ ଦିଆଗଲା –

ଦେଶପରା ହାଲିଁ ଆଚେ
ରାଜ୍ୟପରା ରାଜ୍ୟରେ ବାପା
ଆଚେତ୍ ବଲେ ଯେ...
ହାଇ ଦେଶେ ଏବେନି ଅନ୍ଧରାଜା ଆଚେ ଯେ
ହାଇ ଦେଶେ ଏକ ଅନ୍ଧନି ରାନୀ ଆଚେ ଯେ...
ତାଙ୍କର ଘରେ ଏତେ ଧନ ଆଚେ ବୋଲି ଯେ
ତଲର ଧନକୁ ଅଲମା ଖାଏ
ଉପରର ଧନକୁ ଅନ୍ଧୁଆନି ଖାଏ ଯେ...

ଗୋଟିଏ ରାଜ୍ୟରେ ଜଣେ ଅନ୍ଧରାଜା ଓ ଅନ୍ଧରାଣୀ ଥିଲେ। ସେମାନଙ୍କର ବହୁତ ଧନରତ୍ନ ଥିଲା। ତଳେ ଥିବା ଧନକୁ ଉଇ ଖାଇ ଯାଉଥିଲେ ତ ଉପରେ ଥିବା ଧନରେ ଅଳନ୍ଧୁ ଲାଗିଯାଉଥିଲା।

ଏମିତି ଟିକିନିଖି ବର୍ଣ୍ଣନା କରି ଗୀତକୁଡିଆ ଗୀତକୁଡିଆଣୀ ଗାନ କରନ୍ତି ଯେ ଗୋଟାଏ ଗପ ସରିବାପାଇଁ ଦୁଇ ତିନି ଦିନ ଲାଗିଯାଏ। ଧୈର୍ଯ୍ୟର ସହ ଶ୍ରୋତାମାନେ ଶୁଣୁଥାନ୍ତି ଓ ଗୀତଗୁଡିଆ ଗୀତକୁଡିଆଣୀମାନେ ଗୀତ ଗାନ କରିଚାଲିଥାନ୍ତି। ସବୁଠାରୁ ବଡ କଥା ହେଲା ଜନଜାତି ସଂପ୍ରଦାୟରେ ଶ୍ରୋତା ଓ କଳାକାର ଏକ ଓ ଅଭିନ୍ନ। ସମସ୍ତେ ଶ୍ରୋତା ଓ ସମସ୍ତେ କଳାକାର।

ଶୈଶବରୁ ଏମାନେ ବଡମାନଙ୍କ ସହ ମିଶି ଗାନ କରୁ କରୁ କେତେବେଳେ ବଡହୋଇ ଯାଇ ନିଜେ ଗୀତ ଗାଇବାରେ ପ୍ରବୀଣ ପାଲଟି ଯାଆନ୍ତି। କୌଣସି ଆନୁଷ୍ଠାନିକ ତାଲିମ କିମ୍ବା ଶିକ୍ଷା ଏମାନେ ଗ୍ରହଣ କରିନଥାନ୍ତି, ତଥାପି ଏମାନେ ଜୀବନକୁ ଯେପରି ସଂଗୀତରେ ଛନ୍ଦରେ ଛନ୍ଦାୟିତ କରିଥାନ୍ତି ତାହା ଅବର୍ଣ୍ଣନୀୟ। ଏମାନେ ବିଭୁଦତ୍ତ ପ୍ରତିଭାସମ୍ପନ୍ନ। ଏମାନଙ୍କ ପାଇଁ ଜନଜାତି ସଂସ୍କୃତି ସମୃଦ୍ଧ ଓ ଗୁଦ୍ଧିମନ୍ତ ହୋଇଛି।

ଜନଜାତି ସଂପ୍ରଦାୟର ଏ ଗୁଦ୍ଧିମନ୍ତ ପରମ୍ପରା ଏବେ ଅବକ୍ଷୟଶୀଳ। ନୂତନ ପିଢ଼ି ଏହି ଗୀତ୍‌ମାରା ପ୍ରତି ଧୀରେ ଧୀରେ ଆକର୍ଷଣ ହରାଉଛନ୍ତି। ପୁଷ୍‌ପୁନେଇ ବାଲିଯାତରା ଚଇତି ପରବରେ ଇଲୋଟ୍ରୋନିକ୍ ଯନ୍ତ୍ରରୁ ନିର୍ଗତ ସଂଗୀତରେ ଗାଁ ଉଚ୍ଛୁଳି ଉଠୁଛି। ହିନ୍ଦି ଆଲ୍‌ବମ୍ ଗୀତର ତାଳେ ତାଳେ ଆଧୁନିକ ଯୁବକ ଯୁବତୀ ନୃତ୍ୟ କରୁଛନ୍ତି। ବାହା ପୁଆଣୀରେ ମଧ ଠିକ୍ ସେଇ କଥା। ପ୍ରତି ଜହ୍ନରାତିରେ ଗାଁ ଗାଁରେ ଆଉ ଢ଼େମ୍‌ସା ସାଇ ଲୋଡିର ଗୀତ ଶୁଭୁନାହିଁ। ନୂଆ ଗୀତ କୁଡିଆ ଗୀତ କୁଡିଆଣୀ ଆଉ ସୃଷ୍ଟି ହେଉନାହାନ୍ତି। ପୂର୍ବରୁ ତ ଏଥିପାଇଁ ଏମାନଙ୍କୁ କିଛି ଶିକ୍ଷା କି ତାଲିମ୍ ଦିଆଯାଉ ନଥିଲା। ଏମାନେ ଥିଲେ ସ୍ୱୟଂସିଦ୍ଧ। ବିଭୂଦତ୍ତ ପ୍ରତିଭା ଧର। କିନ୍ତୁ ଏହି ପରଂପରାକୁ ବଞ୍ଚେଇ ରଖିବାପାଇଁ ଏବେ ତାଲିମର ଆବଶ୍ୟକତା ହେଉଛି। ସେମାନଙ୍କୁ ପରଂପରାମୁଖୀ କରିବାପାଇଁ ଉତ୍ସାହ, ପ୍ରେରଣା ଓ ପ୍ରୋତ୍ସାହନର ଆବଶ୍ୟକତା ଅନୁଭୂତ ହେଉଛି। ନିକଟରେ ଗୀତ କୁଡିଆଣୀ ପରଂପରାର ମଉଡମଣି ନବରଙ୍ଗପୁର ଜିଲ୍ଲା ଡାବୁଗାଁ ବେଲଦେଇ ହରିଜନ ଇହଲୀଳା ସମ୍ବରଣ କରିଛନ୍ତି। ସେ ଶ୍ରୀଅକ୍ଷର ବିବର୍ଜିତା, କିନ୍ତୁ ତାଙ୍କର ଅସାଧାରଣ ପ୍ରତିଭା ପାଇଁ ସେ ଓଡ଼ିଶା ସଂଗୀତ ଏକାଡେମୀ ତରଫରୁ ପୁରସ୍କୃତ ହୋଇଥିଲେ। ଦିଲ୍ଲୀ ପ୍ରଗତି ମଇଦାନରେ ଅଟଳ ବିହାରୀ ବାଜପେୟୀଙ୍କ ସମ୍ମୁଖରେ ନିଜ କଳା ପ୍ରଦର୍ଶନ କରି ଭୂୟସୀ ପ୍ରଶଂସା ଅର୍ଜନ କରିଥିଲେ। ନିଜ ଗାଁ ସୀମା ଅତିକ୍ରାନ୍ତ କରି ରାଜ୍ୟ ଓ କେନ୍ଦ୍ରସ୍ତରର ସ୍ୱୀକୃତି ଅର୍ଜନ କରିଥିଲେ। ଦିନ ଦିନ ଧରି ଗୀତ ଗାଉଥିଲେ ସୁଦ୍ଧା ତଥାପି ତାଙ୍କର ଗୀତ ଅସରନ୍ତି ରହିଯାଉଥିଲା।

ଏବେ ଆଉ ଜଣେ ପ୍ରତିନିଧି ସ୍ଥାନୀୟ ପ୍ରତିଭା ଚନ୍ଦ୍ରମା ବାଲିଆ। କୋରାପୁଟ ଜିଲ୍ଲା ଅନ୍ତର୍ଗତ କୁନ୍ଦ୍ରା ଠାରେ ତାଙ୍କର ଜନ୍ମ। ତାଙ୍କର ସୁଲଳିତ କଣ୍ଠସ୍ୱର

ଶ୍ରୋତାମାନଙ୍କୁ ମୁଗ୍ଧ କରିଥାଏ। ଚଇତି ପରବ, ଡାଲମୂଳିଆ ଗୀତରୁ ଶାସ୍ତ୍ର ପୁରାଣ, ରାମାୟଣ ଓ ମହାଭାରତ ପର୍ଯ୍ୟନ୍ତ। ଏଠାରୁ ବିଷୟବସ୍ତୁ ଶୁଣି ଶୁଣି ସେ ନିଜସ୍ୱ ଶୈଳୀ ଓ ସଂସ୍କୃତିରେ ସେଗୁଡିକ ଗାନକରି ଶ୍ରୋତାଙ୍କୁ ମନ୍ତ୍ରମୁଗ୍ଧ କରିଦିଅନ୍ତି।

ବୈପାରୀଗୁଡା ଗୋରୀ କାକଲ୍‌ପାଡିଆ, କାଲିମେଳାର ଭୀମା ମାଡ୍‌କାମୀ, ମାଲକାନ୍‌ଗିରି ଜିଲ୍ଲାର ଅଦ୍ୟାବଧି ଦୁଇ ଜୀବୀତ କଳାକାର। ସ୍ୱର୍ଗତ ଭଗତ ଭେଜାଗୁଡିଆ ଏହି ଜିଲ୍ଲାର ଜଣେ ପ୍ରତିନିଧିସ୍ତରୀୟ ଗୀତ କୁଡିଆ ଥିଲେ।

ନବରଙ୍ଗପୁର ଜିଲ୍ଲାର ବଡଓଲମା ଗ୍ରାମ ନିବାସୀ ଧନେର ହରିଜନ ଓ ତୁଳାରାମ ହରିଜନ, ପାପଡାହାଣ୍ଡି ନିବାସୀ ଭରତ ହରିଜନ, ଗୀତ କୁଡିଆ ରୂପେ ଏବଂ ପାପଡାହାଣ୍ଡି ବ୍ଲକର ବିମଳା ହରିଜନ, କୋରାପୁଟ ଜିଲ୍ଲା କୋଟପାଡ ଅଞ୍ଚଳର ଫୁଲମତୀ ହରିଜନ, କୁନ୍ଦ୍ରାର ସୋନମତୀ ହରିଜନ, ଏହି ପରମ୍ପରାକୁ ବଞ୍ଚାଇ ରଖିବାପାଇଁ ପ୍ରୟାସ ଜାରି ରଖି ଆସିଛନ୍ତି। ଏବେ ଆମ ଲୋକ ସଂସ୍କୃତିର ଏହି ଅନନ୍ୟ ବିଭବକୁ ସୁରକ୍ଷିତ ରଖିବାପାଇଁ ଆହ୍ୱାନ ଆସିଛି। ଆମର ସାମୁହିକ ପ୍ରଚେଷ୍ଟାରେ ଏହି ପରମ୍ପରା ଅବକ୍ଷୟଶୀଳତାରୁ ମୁକ୍ତିପାଇ ପାରିବ।



# ନବରଙ୍ଗପୁର ଲୋକଦେବୀ

ଆଦିମାନବ ବଞ୍ଚିବାପାଇଁ ସଂଘର୍ଷ କରୁଥିବାବେଳେ ସୂର୍ଯ୍ୟ ଚନ୍ଦ୍ର ନଦନଦୀ ବୃକ୍ଷଲତା ବର୍ଷାବସନ୍ତ ପାହାଡ ପର୍ବତଆଦି ପ୍ରକୃତିର ଅନୁକୂଳ ପରିବେଶ ତାକୁ ଯେମିତି କୃତଜ୍ଞ କରିଦେଉଥିଲା। ଝଡ ବତାସ ବନ୍ୟା ବାତ୍ୟା ବଜ୍ରପାତ, ମହାମାରୀ, ମଡକ, ରୋଗ ବ୍ୟାଧି ଆଦି ପ୍ରାକୃତିକ ବିପର୍ଯ୍ୟୟ ତାକୁ ସେମିତି ଭୟଭୀତ ଓ ହତ ଚକିତ କରିଦେଉଥିଲା। ଏଗୁଡିକୁ ସେ କୌଣସି ଅଦୃଶ୍ୟ ଶକ୍ତିର କୋପ ଅଥବା କୃପା ବୋଲି ଭାବୁଥିଲା। ଗୋଷ୍ଠୀର ମଙ୍ଗଳ ପାଇଁ ସଂଘବଦ୍ଧ ହୋଇ ଏହି ଅଦୃଶ୍ୟ ଶକ୍ତିକୁ ସନ୍ତୁଷ୍ଟ କରିବାକୁ ଚେଷ୍ଟା କରୁଥିଲା। ଏହି କାରଣରୁ ପ୍ରତ୍ୟେକ ଗୋଷ୍ଠୀର ଭିନ୍ନ ଭିନ୍ନ ଦେବତା ପୂଜା ପାଉଥିଲେ। ସେମାନେ ନିଜ କଳ୍ପନା ଅନୁସାରେ ସେମାନଙ୍କ ପୂଜା ପଦ୍ଧତି ବି କରୁଥିଲେ। ଏମାନେ ସବୁ ଲୋକ ଦେବତା। ତାଙ୍କ ପୂଜାଉପାସନା ମଧ୍ୟ ଲୋକ ଚଳଣି ଅନୁସାରେ ହେଉଥିଲା। ପୃଥିବୀର ପ୍ରତ୍ୟେକ ଅଞ୍ଚଳରେ ଏହି ପରମ୍ପରା ପ୍ରଚଳିତ।

ଏହି ପ୍ରସଙ୍ଗରେ ନବରଙ୍ଗପୁର ଅଞ୍ଚଳର ଲୋକଙ୍କ ଦ୍ୱାରା ପୂଜାପାଉଥିବା କେତେକ ଲୋକ ଦେବୀ ସଂପର୍କରେ ଆଲୋଚନା କରାଯାଉଛି।

ଅନ୍ୟାନ୍ୟ ଅଞ୍ଚଳ ପରି ଏ ଅଞ୍ଚଳରେ ମଧ୍ୟ ଦେବତାମାନଙ୍କ ଅପେକ୍ଷା ଦେବୀମାନଙ୍କ ଉପରେ ଅତୁଟ ଭରସା। ଗାଁ ଗହଳିଠାରୁ ଆରମ୍ଭ କରି ବଡ

ସହର ପର୍ଯ୍ୟନ୍ତ ପ୍ରତି କ୍ଷେତ୍ରରେ ଅଧିଷ୍ଠାତ୍ରୀ ହେଉଛନ୍ତି ଦେବୀ । ମାତୃରୂପରେ ତାଙ୍କୁ ଅବାହନ କରାଯାଏ । ସେ ସବୁ ଆପଦ ବିପଦର ରକ୍ଷାକାରିଣୀ । ତାଙ୍କୁ ଆବାହନ ନକଲେ କୌଣସି ଶୁଭ କାର୍ଯ୍ୟର ଶୁଭାରମ୍ଭ ହୁଏ ନାହିଁ ।

ଏ ଅଞ୍ଚଳରେ ଯେଉଁ ପ୍ରମୁଖ ଦେବ ଦେବୀମାନଙ୍କୁ ପ୍ରତି ଗାଁରେ ଗ୍ରାମ ଦେବତୀ ରୂପେ ପୂଜାର୍ଚ୍ଚନା କରାଯାଏ ସେମାନେ ପ୍ରାୟତଃ କାଷ୍ଠ ଅଥବା ପ୍ରସ୍ତର ନିର୍ମିତ । ସେମାନଙ୍କୁ ବିଭିନ୍ନ ଭାଗରେ ବିଭକ୍ତ କରାଯାଇଛି ।

ଇଂଲାଜିନୀ ମାତା, ମା ପେଣ୍ଡ୍ରାଣୀ, ମା ପରଦେଶିନୀ, ମା କୁହାର ଜି, ମା କଙ୍କାଳିନୀ, କାଳି ସୁନ୍ଦରୀ, ଧାରଣୀ ଦେବୀ, ଭଣ୍ଡାରୁଣୀ ଦେବୀ, ଛାପର ଘାଷିଣୀ ଦେବୀ, ମା ବାସନ୍ ଦି, ମାଆ ତେଲିଙ୍ଗିଣି, ମା ଘାଟ ଗୋଷେଇଁ ଇତ୍ୟାଦି ।

ପ୍ରତ୍ୟେକ ଦେବୀ ଭିନ୍ନ ଭିନ୍ନ ମହାତ୍ମ୍ୟରେ ମହିମା ମଣ୍ଡିତ ହୋଇଥାନ୍ତି ।

**ଇଂଲାଜୀନୀ ଦେବୀ** – ନବରଙ୍ଗପୁର ଅଞ୍ଚଳର ପ୍ରମୁଖ ଆଦିବାସୀ ଭତ୍ରା ସଂପ୍ରଦାୟ ମୁଖ୍ୟତଃ ମଧ୍ୟପଦେଶର ବସ୍ତର ଅଞ୍ଚଳରୁ ଆସିଛନ୍ତି । ମଧ୍ୟ ପ୍ରଦେଶର ଇଂଲାଜିନୀ ଗଡର ଦେବୀଙ୍କୁ ନିଜ ଇଷ୍ଟଦେବୀ ରୂପେ ପୂଜା କରୁଥିବାରୁ ଏଠାରେ ସେମାନେ ପୂଜା କରୁଥିବା ଦେବୀଙ୍କୁ ଇଂଲାଜିନୀ ଦେବୀ ରୂପେ ପୂଜା କଲେ । ଇଂଲାଜିନୀ ଦେବୀଙ୍କୁ ସେମାନେ ଗ୍ରାମର ରକ୍ଷାକର୍ତ୍ତୀ ରୂପେ ସମ୍ମାନ ଦିଅନ୍ତି । ଗ୍ରାମସଭା, ମଣ୍ଡେଇ, ବିବାହ ଆଦି ଶୁଭ କର୍ମରେ ପ୍ରଥମେ ଇଂଲାଜିନୀ ଦେବୀଙ୍କୁ ଆବାହନ କରାଯାଏ ।

**ମା କଙ୍କାଳିନୀ ଦେବୀ** – ଏ ଦେବୀ ହେଉଛନ୍ତି ବିଭିନ୍ନ ରୋଗବଇରାଗର ଦେବୀ । ହାଡଫୁଟି, ବସନ୍ତ, ହଇଜା, ମହାମାରୀ ରୋଗ ତଥା ଗୃହପାଳିତ ପଶୁମାନଙ୍କ ଦେହରେ ହେଉଥିବା ରୋଗକୁ ଏ ଦେବୀମାନେ ପ୍ରତିରୋଧ କରନ୍ତି, ସେଥିପାଇଁ ଗାଁ ମାନଙ୍କରେ ତାଙ୍କୁ ସ୍ଥାପନ କରି ପଣା ମୁଆଁ ଝୁଣା ଆଦି ଦେଇ ପୂଜା କରାଯାଏ ।

**ମା ପରଦେଶିନୀ** – ଏ ଦେବୀ ମଧ୍ୟ ପରଦେଶ ଅର୍ଥାତ୍ ଛତିଶଗଡରୁ ଆସିଛନ୍ତି । ସେମାନଙ୍କୁ ଏ ଅଞ୍ଚଳରେ ରହିବାପାଇଁ ଯେଉଁ ସ୍ଥାନ ମିଳିଛି, ତାହା ଏହି ଦେବୀଙ୍କର କୃପା ବୋଲି ସେମାନେ ବିଶ୍ୱାସ କରନ୍ତି ।

**ମା ପେଣ୍ଡ୍ରାଣୀ** – ନିଜର ମନସ୍କାମନା ପୁରଣ କରିବାପାଇଁ ଏହି ଦେବୀଙ୍କୁ

ପୂଜା କରାଯାଏ । ଏ ଦେବୀ ସର୍ବଫଳ ପ୍ରଦାନ କରନ୍ତି । ତେଣୁ ତାଙ୍କୁ ଯଥାସାଧ ଛୋଟ ଗୁଡିଟିଏ କରି ପୂଜା କରାଯାଏ ।

**ମା ଜୁହାର ଦି** - ଏ ଦେବୀ ଆଦିବାସୀମାନେ ଯେଉଁଠାରେ ରହନ୍ତି ସେମାନଙ୍କ ଗଡକୁ ସୁରକ୍ଷା ଦିଅନ୍ତି ବୋଲି ସେମାନେ ବିଶ୍ୱାସ କରନ୍ତି । ବାହାରୁ ଆସୁଥିବା ଅପ ଦେବତାଙ୍କୁ ଏମାନେ ବିରୋଧ କରି ଆଦିବାସୀମାନଙ୍କୁ ନିରାପଦରେ ବଞ୍ଚିବାପାଇଁ ସୁଯୋଗ ଦଅନ୍ତି ।

**ଧାରଣୀ ଦେବୀ** - ଧରିତ୍ରୀ ବା ଧରଣୀକୁ ଆଦିବାସୀମାନେ ଧାର୍‌ନୀ ଦେବୀ ବା ଧରତୀନ୍ ଦେବୀ କହନ୍ତି । ସକଳ ଜୀବଜନ୍ତୁକୁ ମା ଧରଣୀ କୋଳରେ ଧାରଣ କରିଥିବାରୁ ତାଙ୍କୁ ମାଆ ଧରତୀନ୍ ଦେବୀ ବୋଲି ପୂଜାର୍ଚ୍ଚନା କରିଥାନ୍ତି ।

**ମା ବାସନ୍ ଦି** - ଆଉ ଜଣେ ଦେବୀ, ଯିଏ ଆଦିବାସୀ ମାନଙ୍କର ସର୍ବାଙ୍ଗୀନ ଉନ୍ନତି ପାଇଁ ସଦା ସଜାଗ ହୋଇଥା'ନ୍ତି । ତେଣୁ ଆଦିବାସୀମାନେ ତାଙ୍କ ପ୍ରତି କୃତଜ୍ଞ ରହି ପୂଜାର୍ଚ୍ଚନା କରନ୍ତି ।

**ମା ତେଲିଙ୍ଗିଣୀ ଦେବୀ** - ଜଙ୍ଗଲର ଅଧିକାରିଣୀ ମା ତେଲିଙ୍ଗିଣୀ ଦେବୀ । ତାଙ୍କୁ ସନ୍ତୁଷ୍ଟ କଲେ ଜଙ୍ଗଲରେ ଅଧିକ ପରିମାଣରେ ଫଳମୂଳ ସୃଷ୍ଟି ହୁଏ, ଜଙ୍ଗଲ ଜାତ ଦ୍ରବ୍ୟର କାରବାର ବୃଦ୍ଧି ହୋଇଥାଏ ।

**ମାଆ ଘାଟ ଗୋସେଇଁଆଣୀ** - ଏ ଦେବୀ ନଦୀ ଘାଟ ମାନଙ୍କରେ ଥାଆନ୍ତି, ନୌକାରେ ଆତଯାତ ହେଉଥିବା ସକଳ ଯାତ୍ରୀମାନଙ୍କୁ ସୁରକ୍ଷା ଦେବା ସଙ୍ଗେ ସଙ୍ଗେ ଅନିଷ୍ଟକାରୀ ଅପ ଦେବତାଙ୍କୁ ଗାଁ ଭିତରକୁ ପଶିବାକୁ ଦିଅନ୍ତି ନାହିଁ ।

ମୋଟାମୋଟି ଏହି ଦେବୀ ମା ମାନଙ୍କୁ ନବରଙ୍ଗପୁର ଅଧିବାସୀ ନିଜ ଗାଁ ମୁଣ୍ଡରେ ବିଭିନ୍ନ ନାମକରଣରେ ନାମିତ କରି ପୂଜା ଅର୍ଚ୍ଚନା କରିଥାନ୍ତି । ସେମାନଙ୍କ ଭିତରେ ଅଛନ୍ତି ଦୁଲାର୍ ଦେଇ, ବାମନ୍‌ଦେଇ, ଦାଣ୍ଡ ଦେବତା, ବୁଢ଼ୀ ଠାକୁରାଣୀ, ଡଙ୍ଗର ଦେଇ, ସୁନା ଦେଇ, ଦନ୍ତେଶ୍ୱରୀ, ମାଓଲି ମାଆ, ଗର୍ଭରାଇ, ଡୁମାର ଏଲା ମାତା, କୁନ୍ଦନୀ ମାଆ, ତିସ୍ତା ମାଆ, ରୋପୁଆ ମାତା, ବଇରୀ ଦେବୀ, କଅଁରିଆ ମାତା, ଛଅଁରିଆ ମାତା, ବାରବୁଜା ଦେବୀ, ଗଙ୍ଗାଦେଇ, ଡକରୀ ମାଇଁ, ଗାଓଁ ବସିଆ, ଦାଦରା ମାଇଁ, ମହାମାଇ, ଭରେଜ

ଗଣ୍ଡିନ୍ ମାଆ, ଟନା ମରିଚ ବାଲଦେଇ, ମଢିମାସନ ଇତ୍ୟାଦି ।

**ଭଣ୍ଡାର ଘରିଆଣୀ** – ଭଣ୍ଡାର ଘରିଆଣୀ ନବରଙ୍ଗପୁର ଅଧିଷ୍ଠାତ୍ରୀ ଦେବୀ । ନବରଙ୍ଗପୁରର ପ୍ରାଚୀନ ରାଜଧାନୀ ଜଗନ୍ନାଥପୁରର ତୃତୀୟ ନରସିଂହଦେବଙ୍କ ପୁତ୍ର ଚୈତନ୍ୟ ଦେବ ନାରଙ୍ଗପଦର ନାମକ ନୂତନ ରାଜ୍ୟ ଗଠନ କରିଥିଲେ । ଏହି ନାରଙ୍ଗପଦର ଅଧିଷ୍ଠାତ୍ରୀ ଦେବୀ ମାଆ ଭଣ୍ଡାର ଘରିଆଣୀ । ସେହିଠାରୁ ଭଣ୍ଡାରଘରିଆଣୀଙ୍କୁ ଆଣି ଏଠାରେ ପୂଜା କରାଯାଉଛି ବୋଲି ଲୋକେ କହନ୍ତି । ଏହି ମନ୍ଦିର ପ୍ରାଙ୍ଗଣରେ ଏକ ବିରାଟ ଭଣ୍ଡାରଘର ଅଛି । ପ୍ରତିଦିନ ଏଠାରେ ଅନ୍ନ ଭୋଗ ହୁଏ । ଅତିକମ୍ ପଇସା ଦେଇ ଭକ୍ତମାନେ ଅନ୍ନପ୍ରସାଦ ମନଭରି ଖାଇଥା'ନ୍ତି । ନବରାତ୍ର ଉତ୍ସବ ଏଠାରେ ବଡ ଧୂମ୍ ଧାମ୍‌ରେ ପାଳିତ ହୁଏ । ଦଶହରା ଏଠିକାର ଅନ୍ୟତମ ପର୍ବ । ସାରା ଜିଲ୍ଲାର ୪୦ଟି ସ୍ଥାନରୁ ଦେବୀମାନଙ୍କ ପ୍ରତୀକ ଲାଠି ଆସି ଏଠାରେ ଉପସ୍ଥିତ ହୁଅନ୍ତି । ଏହାକୁ ବିଜୟ ଯାତ୍ରା କୁହାଯାଏ । ପୂର୍ବରୁ ଭଣ୍ଡାର ଘରିଆଣୀ ମନ୍ଦିର ଗୋଟାଏ ଆଜ୍‌ବେଷ୍ଟସ୍ ଘରେ ଚାଲୁଥିଲା । କିନ୍ତୁ ଏବେ ଏକ ସୁଦୃଶ୍ୟ ମନ୍ଦିର ନିର୍ମାଣ କରାଯାଇଛି । ନବରଙ୍ଗପୁର ଅଧିବାସୀ ଭଣ୍ଡାର ଘରିଆଣୀଙ୍କୁ ପ୍ରଣାମ ଜଣାଇ ଦିନଚର୍ଯ୍ୟା ଆରମ୍ଭ କରନ୍ତି ।

**ପେଣ୍ଡ୍ରାଣୀ** – ପେଣ୍ଡ୍ରାଣୀ ଉମରକୋଟ ବାସୀଙ୍କ ଅଧିଷ୍ଠାତ୍ରୀ ଦେବୀ । ପେଣ୍ଡ୍ରାଣୀଙ୍କ ମୂଳପୀଠ ପେଣ୍ଡ୍ରାହାଣ୍ଡି । ଏହିଠାରୁ ଅଣାଯାଇଥିବାରୁ ତାଙ୍କୁ ପେଣ୍ଡ୍ରାଣୀ ବୋଲି କୁହାଯାଉଛି । ରାଜା ଚୈତନ୍ୟଙ୍କର ହଜିଯାଇଥିବା ଘୋଡା ମାଆ ପେଣ୍ଡ୍ରାଣୀଙ୍କ ଦୟାରୁ ମିଳିଥିବାରୁ ସେ କୃତଜ୍ଞତା ସ୍ୱରୂପ ପେଣ୍ଡ୍ରାଣୀଙ୍କ ପାଇଁ ମନ୍ଦିରଟିଏ ନିର୍ମାଣ କରିଥିଲେ ବୋଲି ଜନଶ୍ରୁତି ରହିଛି । ତାଙ୍କୁ ଭକ୍ତମାନେ ମାଟିଘୋଡା ଉପହାର ଦେଇଥା'ନ୍ତି । ପେଣ୍ଡ୍ରାଣୀଙ୍କୁ ଦାରିଦ୍ର୍ୟ ଭଞ୍ଜନୀ ଦେବୀ ରୂପରେ ପୂଜା କରାଯାଏ । କିମ୍ବଦନ୍ତୀ ଅଛି, ଜଣେ ଅମୀନ ପ୍ରଜାଙ୍କ ପ୍ରତି ଅନ୍ୟାୟ ଆଚରଣ କଲା । ତାକୁ ସୁଧାରିବା ପାଇଁ ଦେବୀ ଛାୟା ରୂପରେ ତାଙ୍କୁ ସତର୍କ କଲେ । କିନ୍ତୁ ସେ ତାଙ୍କୁ ଚିହ୍ନିନପାରି ଭୂତପ୍ରେତ ଭାବି ଗାଳି ଗୁଲଜ କଲା । ଫଳରେ ଦେବୀ କୋପର ଶିକାର ହୋଇ ମୃତ୍ୟୁ ବରଣ କରିଥିଲା ।

ପେଣ୍ଡ୍ରାଣୀଙ୍କ ଆବିର୍ଭାବ ସଂପର୍କରେ ସୁନ୍ଦର ଲୋକକଥା ରହିଛି । ଓଡ଼ିଶା

ଛତିଶଗଡ ସୀମାରେ ପେଣ୍ଡ୍ରାଓଣ୍ଡ ବୋଲି ଗାଁଟିଏ। ଗଣ୍ଡସଂପ୍ରଦାୟର ଲୋକ ବସବାସ କରନ୍ତି। ଗୋଟିଏ ପରିବାରରେ ସାତଭାଇରେ ଭଉଣୀଟିଏ ଥିଲା। ଭାଇମାନେ ଶ୍ରଦ୍ଧା କରୁଥିଲେ ଭଉଣୀକୁ। ତାକୁ ଶାଶୁଘରକୁ ନପଠାଇ ତାପାଇଁ ଘରଜ୍ୱାଇଁଟିଏ ଆଣିଥିଲେ। କିନ୍ତୁ ଥରେ ଅତିଶୟ ଝଡ ବର୍ଷାରୁ ଜମିର ହିଡ ସବୁ ଭାଙ୍ଗି ଫସଲ ଧୋଇ ହୋଇଯିବାକୁ ବସିବାରୁ ସାତଭାଇ ମିଶି ଜ୍ୱାଇଁ ପିଲାଟିକୁ ବଳିଦେଇ ମାଟିମାଆକୁ ସନ୍ତୁଷ୍ଟ କରିଥିଲେ। ଜମିରେ ହିଡ ରକ୍ଷା ହୋଇଥିଲା। ଭଉଣୀ ସ୍ୱାମୀକୁ ଖୋଜିଖୋଜି ସେଇ ହିଡ ତଳେ ସ୍ୱାମୀର କାଣୀ ଆଙ୍ଗୁଠି ଦେଖି ସବୁ ବୁଝିପାରିଥିଲା। ଭାଇମାନଙ୍କ ବିଶ୍ୱାସଘାତକତା ଓ ନିଷ୍ଠୁରତା ସାଙ୍ଗକୁ ସ୍ୱାମୀ ପ୍ରତି ଥିବା ପ୍ରେମ ହେତୁ ସେ ଆଉ ଘରକୁ ଫେରିଲା ନାହିଁ। ନିକଟରେ ପେଣ୍ଡ୍ରା ନାମକ ଏକ କଣ୍ଟକିତ ବୃକ୍ଷମୂଳେ ଥିବା ଜଳରାଶିକୁ ଡେଇଁପଡି ଆତ୍ମହତ୍ୟା କରିଦେଲା। ପରବର୍ତ୍ତୀ କାଳରେ ସେଇ ଝିଅଟି ପେଣ୍ଡ୍ରାଣୀ ରୂପେ ପୂଜା ପାଇଲା। ଗୋଟିଏ ଧାନ ଶଗଡିଆ ଗାଡିରେ ସେଠାରୁ ସେ ଉମରକୋଟ ଆସି ମନ୍ଦିର ନିର୍ମାଣ ନିମନ୍ତେ ରାଜାଙ୍କୁ ସ୍ୱପ୍ନାଦେଶ ଦେଲା। ରାଜା ଓ ଜନସାଧାରଣଙ୍କର ତାଙ୍କ ଉପରେ ବିଶ୍ୱାସ ଜନ୍ମିଲା।

ତା’ ପରଠାରୁ ସେଇ ଗ୍ରାମରେ ଘରଜ୍ୱାଇଁ ପ୍ରଥା ମଧ୍ୟ ବନ୍ଦ ହୋଇଗଲା।

**ବଞ୍ଜାରିଣୀ** – ପାପଡାହାଣ୍ଡି ଅଧିବାସୀଙ୍କ ଦ୍ୱାରା ପୂଜା ପାଆନ୍ତି ବଞ୍ଜାରିଣୀ ଦେବୀ। ବଞ୍ଜାରିଣୀ ଦେବୀ ସିଂହବାହିନୀ। ହାତରେ ଖଣ୍ଡେ ଡାଳ ଧରିଥା’ନ୍ତି। ବିଭିନ୍ନ ଅଞ୍ଚଳ ବୁଲି ବେପାର ବଣିଜ କରୁଥିବା ବେପାରୀ ଗୋଷ୍ଠୀଙ୍କର ସେ ଆରାଧ୍ୟା ଦେବୀ। ପାପଡାହାଣ୍ଡି ତତ୍‌କାଳୀନ ରାଜ୍ୟ କୋଶଳ, ମହାକାନ୍ତାର ଓ କଳିଙ୍ଗ ରାଜ୍ୟର ବିଭିନ୍ନ ଅଞ୍ଚଳକୁ ଯୋଗଯୋଗ କରୁଥିବା ଏକ ବ୍ୟବସାୟିକ ପେଣ୍ଠସ୍ଥଳ ଥିଲା। ବେପାରୀମାନଙ୍କ ଅନୁରୋଧରେ ଛିନ୍ଦକ ଓ ନାଗବଂଶୀ ରାଜା ଏହି ଦେବୀଙ୍କୁ ସ୍ଥାପନ କରିଥିବା ବିଶ୍ୱାସ କରାଯାଏ। ଏହାଛଡା ଏଠାରେ ରହିଛନ୍ତି ସାତଭଉଣୀ। ପଥରରେ ଖୋଦେଇ ସାତଟି ମୂର୍ତ୍ତି ଏକ କ୍ଷୁଦ୍ର ମନ୍ଦିରରେ ଅଛନ୍ତି। ସାତଜଣ କୁମାରୀ କନ୍ୟା। ଜ୍ଞାନଦେଇ ମାଲୁଣୀ ନେତେଇ ଧୋବଣୀ, ଲହୁକୁଟୀ ସଉରୁଣୀ, ସୁକୁଟୀ ଚମାରୁଣୀ, ଶୁଆତେଲୁଣୀ, ପତର ଶଉରୁଣୀ ଏବଂ ଗାଙ୍ଗୀ ଗଉଡୁଣୀ। ଏହି ସାତ ଭଉଣୀଙ୍କ ନାମାନୁସାରେ ଲୋକ ପରମ୍ପରାରେ ସାତ ଭଉଣୀଙ୍କୁ ପୂଜା କରାଯାଏ।

**ଡାବାଦେଇ** – ଡାବା ଦେଇଙ୍କ ନାମାନୁସାରେ ଡାବୁଗାଁର ନାମକରଣ ହୋଇଛି । କିମ୍ବଦନ୍ତୀ କହେ ଛୋଟ ଶିଶୁ କେତେଜଣ ପଥର ଖଣ୍ଡକୁ ଦେବୀ ମାନି ସେଠାରେ ଖେଳୁଥିଲେ । ଜଣେ ପିଲା ପୂଜକ ହୋଇଥିଲା ବେଳେ ଆଉ ଗୋଟିଏ ପିଲା ଆଣ୍ଠେଇ ଆଣ୍ଠେଇ ଛେଳି ପରି ଚାଲୁଥିଲା । ପୂଜକ ସେହି ଛେଳି ହୋଇଥିବା ପିଲାକୁ ପଥର ଦେବୀଙ୍କ ପାଖକୁ ଆଣନ୍ତି ଓ ଦାବ ନାମକ ଏକ ଘାସପତ୍ରରେ ତା ବେକକୁ କାଟି ବଳିଦେବାର ଅଭିନୟ କରନ୍ତି । ସବୁଦିନ ଏହିପରି ଖେଳନ୍ତି । କିନ୍ତୁ ହଠାତ୍ ଦିନେ ସେଇ ଦାବଘାସଟିରେ ଶିଶୁଟିର ବେକ କଟିଗଲା । ଗାଁ ଲୋକ ଭୟଭୀତ ହୋଇ ସେଇ ପଥର ଖଣ୍ଡକୁ ଦାବା ଦେଇ ଓ ପରେ ପରେ ଡାବା ଦେଇ ବୋଲି କହିଲେ ଓ ବର୍ଷସାରା ବିଭିନ୍ନ ପୂଜା ପୂଜିକଲେ । ସେଇ ଡାବା ଦେଇଙ୍କ ନାମାନୁସାରେ ଡାବୁଗାଁର ନାମକରଣ ହୋଇଛି ।

**ଦଶମୁଣ୍ଡିଆଣୀ** – ଡାବୁଗାଁର ଆଉ ଏକ ପ୍ରତ୍ୟକ୍ଷ ଦେବୀ ଦଶମୁଣ୍ଡିଆଣୀ । ଏ ଦେବୀ ପୂର୍ବରୁ କାଳିସୁନ୍ଦରୀ ନାମରେ ପୂଜିତ ହେଉଥିଲେ । ଡାବୁଗାଁରୁ ଉମରକୋଟ ଯିବା ରାସ୍ତାରେ ଡାବୁଗାଁ ଶେଷ ମୁଣ୍ଡରେ ଏ ପୀଠ ପଡେ । ଏହି ସ୍ଥାନରେ ପ୍ରାୟ ପ୍ରତିବର୍ଷ ଗୋଟିଏ କିମ୍ବା ଦୁଇଟି ମଣିଷ ଦୁର୍ଘଟଣାରେ ପ୍ରାଣ ହରାଇଥିଲେ । ୧୯୮୪ ମସିହାରେ ଗୋଟାଏ ଗୁଡ ଟ୍ରକ ଓଲଟି ଏକାଥରେ ଦଶ ଜଣ ଲୋକ ମୃତ୍ୟୁ ବରଣ କରିଥିଲେ । ତା ପରଠାରୁ ଏହି ଦେବୀ ଦଶମୁଣ୍ଡିଆଣୀ ନାଁରେ ପୂଜିତ ହେଉଛନ୍ତି । ଏ ଦେବୀଙ୍କର ପ୍ରସାଦ ପୁରୁଷମାନେ ଖାଆନ୍ତି କିନ୍ତୁ ନାରୀମାନେ ଖାଆନ୍ତି ନାହିଁ । ଏ ଲେଖିକାର ପ୍ରରୋଚନାରେ ପାଠଶାଠ ପଢୁଥିବା ଝିଅମାନେ ପ୍ରସାଦ ଖାଇବା ଆରମ୍ଭ କଲେଣି । କିନ୍ତୁ ଅଶିକ୍ଷିତା ଓ ପୁରୁଣା ସ୍ତ୍ରୀ ଲୋକମାନେ ଏବେ ସୁଦ୍ଧା ଦଶମୁଣ୍ଡିଆଙ୍କ ପ୍ରସାଦ ଖାଇବାକୁ ଭୟ କରନ୍ତି ।

**ଖଲି ଗଡେନ୍** – ନବରଙ୍ଗପୁର ଜିଲ୍ଲା ଚନ୍ଦାହାଣ୍ଡିର ପ୍ରାଚୀନ ନାଁ ଥିଲା ପାନାବେଡା, ଏ ଅଞ୍ଚଳର ଅଧିଷ୍ଠାତ୍ରୀ ଦେବୀ ହେଉଛନ୍ତି ମାଆ ଖଲିଗଡେନ୍ । ଏ ଅଞ୍ଚଳରେ ଖମ୍ଭେଶ୍ୱରୀ ଦଲବେଡାର, ପାହାଡଦୀ, ପେଣ୍ଡ୍ରାଣୀ, ପାଟ ଖଲିଆର ପାଟରାଣୀ ପୂଜିତ ହେଲେ ସୁଦ୍ଧା ତେନ୍ତୁଳିଗଡାର ମାଆ ଖଲି ଗଡେନ୍‌ଙ୍କୁ ସ୍ଥାନୀୟ ଅଧିବାସୀ ପ୍ରତ୍ୟକ୍ଷ ଦେବୀ ରୂପେ ଗ୍ରହଣ କରନ୍ତି । ୨୦ ଏକର

ଓସାର ଓ ୩୦୦ ମିଟର ଉଚ୍ଚ ଏକ ବିରାଟ ପଥର ଚଟାଣକୁ ଖଲ ଗଡେନ୍ (ଗଡଆଣୀ)ଙ୍କ ଉତ୍ପତ୍ତି ସ୍ଥଳ ବୋଲି କୁହାଯାଏ। ଏହି ସ୍ଥାନରେ ପୁଷ୍କରିଣୀ ସଦୃଶ ଏକ ବିରାଟ ଗର୍ତ୍ତ ରହିଛି। ଏହାର ପାଣି କେବେ ଶୁଖେ ନାହିଁ।

ଏହି ପୁଷ୍କରିଣୀଟି ଖଲି ଆକୃତିର ଏକ ଗଡପରି ରହିଥିବାରୁ ଦେବୀଙ୍କ ନାମ ଖଲିଗଡିଆଣୀ ବା ଖଲିଗଡେନ୍ କୁହାଯାଉଛି। କିମ୍ବଦନ୍ତୀ କହେ ବିକ୍ରମଦେବ ବର୍ମା ସ୍ୱପ୍ନାଦେଶ ପାଇ ଏଠିକୁ ଆସିଥିଲେ ଓ ଏଠାରେ ଦଶହରା ପୂଜା ଆରମ୍ଭ କରିଥିଲେ।

ଏ ଅଞ୍ଚଳରେ ଦେବଦେବୀଙ୍କ ମଧ୍ୟରୁ ପ୍ରଥମେ ଖଲି ଗଡେନ୍‌ଙ୍କ ପୂଜା ହୋଇଥାଏ। ଆଶ୍ୱିନ ମାସର ପ୍ରଥମ ସୋମବାର ଏଠାରେ ପୂଜା ହୁଏ ଓ ବିଭିନ୍ନ ଅଞ୍ଚଳରୁ ନିମନ୍ତ୍ରଣ ପାଇ ଲାଠିମାନ ଆସିଥାନ୍ତି। ତାଙ୍କର ଉତ୍ପତ୍ତିସ୍ଥଳ ଚଟାଣ ଉପରେ ପୂଜା ଅର୍ଚ୍ଚନା ହୁଏ ଓ ଟଳେ ଛେଳି କୁକୁଡା ପାରା ଆଦି ବଳି ଦିଆହୁଏ।

**ଗର୍ଭରାଇ** – ପାପଡାହାଣ୍ଡିରୁ କଳାହାଣ୍ଡି ରାସ୍ତାରେ ଗଲେ ପଡେ ମୈଦଲପୁର। ଏଠାରୁ ୩ କିଲୋମିଟର ଦୂରରେ ମୁଦିଗୁଡ଼ା ନିକଟରେ ଗର୍ଭରାଇ ଅଛନ୍ତି। ପୀଠଟି ଗର୍ଭରାଇ ବୋଲି ନାମ କରଣ ହୋଇଥିଲେ ସୁଦ୍ଧା ଏଠାରେ ପାର୍ଶ୍ୱପୀଠ ରୂପେ ଶିବ, ପାର୍ବତୀ, ଗଣେଶ ଓ ନବଗ୍ରହ ପୂଜା ପାଆନ୍ତି। ଗର୍ଭରାଇ ମନ୍ଦିରକୁ ଯିବା ପୂର୍ବରୁ ରହିଛି ବୁଢ଼ାରାଜା (ଘଉଁରିଆ)ଙ୍କ ମନ୍ଦିର।

ଆଦିବାସୀ ସଂପ୍ରଦାୟର ଏକ ପରିବାର ରାଜା ବିକ୍ରମଦେବ ବର୍ମାଙ୍କଠାରୁ ତମ୍ବାପଟା ପାଇ ଗର୍ଭରାଇଙ୍କ ପୂଜା କରିଆସୁଛନ୍ତି। ଗର୍ଭରାଇଙ୍କ ସଂପର୍କରେ ସୁନ୍ଦର କିମ୍ବଦନ୍ତୀଟିଏ ଅଛି। ରାଜା ଘଉଁରିଆଙ୍କର ରାଣୀ ଥିଲେ ତାଙ୍କ ନାଁ ପାଟରାଣୀ ଓ ଭଉଣୀ ନାଁ ଗର୍ଭରାଇ। ଭଉଣୀକୁ ରାଜା ବହୁତ ଭଲପାଉଥିଲେ। ଏହା ପାଟରାଣୀଙ୍କ ଆଖିରେ ଯାଉନଥିଲା। ଥରେ ରାଜା ଘଉଁରିଆ ଅନୁପସ୍ଥିତ ଥିବାବେଳେ ଗର୍ଭରାଇ ପୁଷ୍ପବତୀ ହୋଇଛନ୍ତି। ଶୁଦ୍ଧସ୍ନାନ ଦିନ ସେ ଭାଉଜକୁ ହଳଦୀ ତେଲ ନୂଆ ହାଣ୍ଡି ଓ ବସ୍ତ୍ର ମାଗିଛନ୍ତି। ଭାଉଜ କିଛି ନଦେଇ କହିଛି – "ଯା କଇଁ ପତ୍ର ପିନ୍ଧି ବସିବୁ। ଉପାୟହୀନ ହୋଇ ଗର୍ଭରାଇ ସ୍ନାନସାରି ଦେହରେ କଇଁ ପତ୍ର ଢ଼ାଙ୍କି ବସିଲା। ପାଖରେ ବସ୍ତ୍ର ନଥିବାରୁ ଘରକୁ ଆସି ପାରିଲା ନାହିଁ। ରାଜା ଘଉଁରିଆ ଫେରଆସି ଭଉଣୀକୁ ଖୋଜିଲେ। ପାଟ

ରାଣୀକୁ ପଚାରିବାରୁ ସେ କିଛି ଜାଣି ନାହାଁନ୍ତି ବୋଲି କହିଲେ । ସେ ଭଉଣୀଙ୍କୁ ଖୋଜିବା ପାଇଁ ବାହାରି ପଡିଲେ । କଇଁ ପୋଖରୀରେ ନିଜ ଉଲଗ୍ନ ଶରୀରକୁ କଇଁ ପତ୍ରରେ ଢାଙ୍କିଥିବା ଦେଖି ରାଜା ତା ଉପରକୁ ନିଜ ପଗଡି ଫିଙ୍ଗିଲେ । ସେହି ପଗଡିରେ ଦେହ ଢ଼ାଙ୍କି ସେ ଏକ ଗୁମ୍ଫାଭିତରକୁ ଚାଲିଗଲେ । ରାଜା ଯେତେ ଡାକିଲେ ବି ଲଜ୍ଜାସରମ ହେତୁ ସେ ଆଉ ଆସିଲେ ନାହିଁ । ସେହିଠାରୁ ଅନ୍ତର୍ଦ୍ଧାନ ହୋଇଗଲେ । ଏହାଦେଖି ରାଜା ଦୁଃଖରେ ଭାଙ୍ଗି ପଡିଲେ ଓ ଭଉଣୀକୁ ବରଦାନ କରି କହିଲେ ଆଜି ଠୁଁ ତୁ ପ୍ରଥମେ ପୂଜା ପାଇବୁ । ସବା ଶେଷରେ ମୋର ପୂଜା ହେବ । ସେହିଦିନଠୁଁ ଏ ଅଞ୍ଚଳରେ ମଣ୍ଡେଇ ଓ ଦଶହାରା ଆଦି ପୂଜାରେ ଗର୍ଭରାଇରୁ ପ୍ରଥମ ଲାଠି ଓ କୁର୍ସି ନବରଙ୍ଗପୁର ଜୟପୁର ହୋଇଥାଏ ।

**ଢ଼ଡ୍‌ଗା ବାସିନୀ** – ଧୋଡ୍ରାଠାରୁ ୧୮ କିଲୋମିଟର ଭିତରକୁ ଗଲେ ପଡେ କାନାକୋଟ ପଞ୍ଚାୟତର ନିରୁଣ୍ଡି ଗାଁ । ଏଠାରେ ଅଛନ୍ତି ଢ଼ଡଗା ବାସିନୀ । ଢ଼ଡଗା ଅର୍ଥ ନାଳ । ଛୋଟ ନାଳଟିର କୂଳରେ ଏ ଦେବୀଙ୍କ ଆସ୍ଥାନ ହୋଇଥିବାରୁ ତାଙ୍କୁ ଢ଼ଡଗା ବାସିନୀ କହନ୍ତି । ସ୍ଥାନୀୟ ଭାଷାରେ ଅପଭ୍ରଂଶ ହୋଇ ଢଡଗା ଘାସିନୀ ବୋଲି କହନ୍ତି । ଏ ପୀଠରେ ଏକ ବଡ ଜଳକୁଣ୍ଡ ରହିଛି । ବର୍ଷସାରା ଏ କୁଣ୍ଡ ଶୁଷ୍କ ହୁଏ ନାହିଁ । ଏଠିକୁ ଜଳ କାମିନୀମାନେ ସ୍ନାନ କରିବାକୁ ଆସନ୍ତି ବୋଲି ସ୍ଥାନୀୟ ଲୋକ ବିଶ୍ୱାସ କରନ୍ତି । ଆଖପାଖ ଯେକୌଣସି ପୋଖରୀ କିମ୍ବା ନଦୀନାଳରୁ ମାଛ ଧରା ହୋଇ ପାଣି ଗୋଳିଆ ହେଲେ ଏହି କୁଣ୍ଡର ଜଳ ଗୋଳିଆ ହୋଇଯାଏ ।

ମଣ୍ଡେଇ ଦଶହରା କଳସୀ ଯାତ୍ରା, କୁର୍ସି ଯାତ୍ରା, ବଉଳାଣୀ ଆଦି ବିଭିନ୍ନ ପୂଜାପର୍ବ ଏଠାରେ ପାଳିତ ହୁଏ ।

**ବିଡିରି ଦେବୀ** – ନବରଙ୍ଗପୁର ଠାରୁ ଉମରକୋଟ ୪୮ କିଲୋମଟିର ଯିବା ରାସ୍ତାରେ ପଡେ ଧୋଡ୍ରା । ଏହାର ୩/୪ କିଲୋମିଟର ପୂର୍ବରୁ ସେହି ଜାତୀୟ ରାଜପଥ କଡରେ ବିଡିରି ଠାକୁରାଣୀ ଅଛନ୍ତି । ପୂର୍ବରୁ ପ୍ରତିବର୍ଷ ଜଣେ ଦୁଇଜଣ ବସ୍‌ଦୁର୍ଘଟଣାରେ ମୃତ୍ୟୁବରଣ କରୁଥିଲେ । ଏଠାରେ ପ୍ରବାହିତ ହେଉଥିବା ବିଡିରି ନଦୀର ମଧ ଭୟଙ୍କର ରୂପରେ ଜଣେ ଦୁଇଜଣଙ୍କର ପ୍ରାଣ ଯାଉଥିଲା । ଏସବୁ ବିଡିରି ଦେବୀଙ୍କ କୋପ ବୋଲି ସ୍ଥାନୀୟ ଲୋକ

ବିଶ୍ୱାସ କରୁଥିଲେ । ତେଣୁ ତାଙ୍କୁ ସନ୍ତୁଷ୍ଟ କରିବାପାଇଁ ପୂଜା ପାର୍ବଣ ହୋଇଥାଏ । ବିଡିରି ଅର୍ଥ ସ୍ଥାନୀୟ ଭାଷାରେ ତରକି ଯିବା, ଛାନିଆ ହୋଇଯିବା । ଏହି ଠାକୁରାଣୀ ପାଖଦେଇ ଗାଡିଗୁଡିକ ଅତିକ୍ରମ କରିଯିବାବେଳେ ସେ ବିଡିରି ଯାଇ ବା ତରକି ଯାଇ ଗାଡି ଆଗରେ ଠିଆ ହୋଇଯାଆନ୍ତି । ଅତର୍କିତ ଭାବରେ ଡ୍ରାଇଭର ତାଙ୍କୁ ବଞ୍ଚେଇବାକୁ ଯାଇ ଭାରସାମ୍ୟ ହରେଇ ଦୁର୍ଘଟଣା ଘଟାଇଥାଏ । ତେଣୁ ଡ୍ରାଇଭରମାନେ ଏ ସ୍ଥାନରେ ସତର୍କ ହୋଇ ବିଡିରିଦେବୀଙ୍କୁ ନମସ୍କାର ଜଣାଇ  ଗାଡି ଚଳେଇଥା'ନ୍ତି । ଏ ଦେବୀଙ୍କ ମୂଳପୀଠ କେନ୍ଦୁଗୁଡା ।  ସେଠାରୁ ଅଣାଯାଇ ଏଠାରେ ସ୍ଥାପନା କରାଯାଇଛି ।

**କୋଡିକୀ ପାତର୍** - କଣ୍ଢାଗାଁ ଠାରୁ ତିନି କିଲୋମିଟର ଦୂରତ୍ୱରେ ଅଛନ୍ତି କୋଡ୍‌କୀ ପାତର୍ ଦେବୀ । ପରଦାଜାତିର ଜଣେ କୃଷକ କୋଡିରେ ଜମିଚଷ କରୁଥିବା ସମୟରେ କୋଡିରେ ରକ୍ତଦାଗ ଦେଖି ଭୟ ପାଇଯାଇଥିଲା । ଗାଁ ଲୋକଙ୍କୁ ଏ ସଂପର୍କରେ ଖବର ଦେବାରୁ ଗାଁ ଲୋକେ ମାଟି ଖୋଳି ଏ ଦେବୀଙ୍କୁ ଉଦ୍ଧାର କରିଥିଲେ । ବୈଶାଖ ମାସରେ ଏଠାରେ ଏକ ବଡ ମେଳା ହୁଏ । କଣ୍ଢା ଗାଁର ଦିଶାରୀ ପୂଜକମାନେ ଲାଠି ଓ କୁର୍ସି ଧରି ଯାଆନ୍ତି । କୁକୁଡା ଛେଳି ପାରା ଆଦି ଏଠାରେ ବଳି ଦିଆଯାଇଥାଏ ।

ଏସବୁ ବ୍ୟତୀତ ଆହୁରି ଅନେକ ଲୋକ ଦେବୀ ରହିଛନ୍ତି । ସୀମିତ କଳେବର ହେତୁ ଏଠାରେ ତାହା ସ୍ଥାନିତ ହୋଇପାରୁନାହିଁ । ବଣ ଜଙ୍ଗଲର ମଣିଷମାନେ ଜୀବନକୁ ଅତ୍ୟନ୍ତ ଭଲପାଆନ୍ତି । ସେମାନେ ସରଳ ବିଶ୍ୱାସୀ ଓ ଧର୍ମଭୀରୁ । ସେମାନଙ୍କ ଉପାସ୍ୟ ଦେବଦେବୀମାନେ ମଧ୍ୟ ସେଇମାନଙ୍କ ପରି ସରଳ ପୁଣି ଅତ୍ୟନ୍ତ କ୍ରୋଧୀ । ପୂଜା ପାଠରେ ଟିକେ ଆଡବାଙ୍କ ହେଲେ ରୋଗ ବୈରାଗ ମରୁଡିମଡକରେ ଲୋକଙ୍କୁ ଅତିଷ୍ଠ କରିଦିଅନ୍ତି ତ ସନ୍ତୁଷ୍ଟ ଥିଲେ ମଣିଷ ଜୀବନକୁ ମଧୁର ମାଦକତାରେ ଭରିଦିଅନ୍ତି । ସେହି ହେତୁ ସେମାନଙ୍କ ଜୀବନ ସହ ସେମାନଙ୍କ କଳ୍ପିତ ଦେବଦେବୀ ଅଙ୍ଗାଙ୍ଗୀ ଭାବେ ଜଡିତ ।



ଡକ୍ଟର ବାସନ୍ତୀ ମହାନ୍ତିଙ୍କ

# ସ ମ ଗ୍ର ସୃ ଜ ନ



## ଗଳ୍ପ

ରାଜଜେମା, ବିଲେଇ ଓ ଜୁଲି ପ୍ରସଙ୍ଗ
ପିତୃରଣ
ଅଭିଯୁକ୍ତା
ସୁଲିଅପାର ଭାତୁଡି
ମା'
ହାତପାପୁଲିରେ ଜୀବନ
ଗୀତ୍ କୁଡ଼ିଆଣୀ
ଉତ୍ତରଣ
ନିର୍ବାଚିତ ଗଳ୍ପ
କୁନ୍ତୀ
ଡଙ୍ଗର କନ୍ୟା

## ପ୍ରବନ୍ଧ ଓ ସ୍ତମ୍ଭ

ପ୍ରଗତି ଓ ପରମ୍ପରା
ପ୍ରଳୟପରର ଜୀବନ
ଦୃଷ୍ଟି ଓ ଦିଗନ୍ତ
ନାରୀ ନୀତି ନିୟତି
ଭୋକ ବିଳାସ

## ସାହିତ୍ୟ ସମାଲୋଚନା

ନୀଳଶୈଳର ପଦଚାରୀ
ସୁରେନ୍ଦ୍ର ମହାନ୍ତିଙ୍କ କଥା କୋଣାର୍କ

## ଅନୁବାଦ

ନିଃସଙ୍ଗ ଯୋଦ୍ଧା
ଗାନ୍ଧୀଙ୍କୁ ଫେରାଇ ଆଣିବା

## ଇତିହାସ

ପାପଡ଼ାହାଣ୍ଡିରେ ଭାରତଛାଡ଼ ଆନ୍ଦୋଳନ

## ଲୋକକଥା ସଂଗ୍ରହ

କଳାହାଣ୍ଡିର ଲୋକକଥା

## ଜୀବନୀ

ମହମ୍ମଦ ବାଜୀ
ବଗା ପୂଜାରୀ
ବିକ୍ରମଦେବ ବର୍ମା



**Dr. Basanti Mohanty**
213, Block: C, Emerald Apartment
Laxmisagar, Bhubaneswar, ODISHA
Email: basantimohanty12@gmail.com
Mob: 9437033074, 8917260149

ଡକ୍ଟର ବାସନ୍ତୀ ମହାନ୍ତି ଏକ ପ୍ରଖର ସାରସ୍ୱତ ପ୍ରତିଭା। ଗଳ୍ପ, କବିତା, ଉପନ୍ୟାସ, ପ୍ରବନ୍ଧ, ଅନୁବାଦ, ଲୋକ ସାହିତ୍ୟ, ଜୀବନୀ ଆଦି ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରି ଓଡ଼ିଆ ସାହିତ୍ୟ ଜଗତରେ ସେ ନିଜପାଇଁ ସମ୍ମାନଜନକ ଆସନ ପ୍ରତିଷ୍ଠା କରିପାରିଛନ୍ତି। ଉପକୂଳଠାରୁ ଉପାନ୍ତ ଅଞ୍ଚଳ ପର୍ଯ୍ୟନ୍ତ ଅଜସ୍ର ଅନୁଭବର ପୁଞ୍ଜି ତାଙ୍କ ସାରସ୍ୱତ ଦିଗନ୍ତକୁ ବିସ୍ତୃତ କରିଛି। ସମସାମୟିକ ଜୀବନ ଯନ୍ତ୍ରଣା ଓ ସାମାଜିକ ସମସ୍ୟାର ମର୍ମସ୍ପର୍ଶୀ ପରିସ୍ଫୁଟନରେ ତାଙ୍କ ଗଳ୍ପ ଗୁଡିକ ଯେପରି ଜୀବନ୍ତ, ପ୍ରବନ୍ଧ ଓ ସାହିତ୍ୟ ଆଲୋଚନାରେ ତାଙ୍କର ବହୁ ଶାସ୍ତ୍ରଦର୍ଶିତା ସୂକ୍ଷ୍ମାତିସୂକ୍ଷ୍ମ ଚିନ୍ତନ, ମନନ ଓ ଅନୁଶୀଳନ ସେହିପରି ସ୍ୱଚ୍ଛ ଓ ଶାଣିତ। ସ୍ତମ୍ଭ ରଚନାରେ ତାଙ୍କର ସାମର୍ଥ୍ୟ ସର୍ବସ୍ୱୀକୃତ। ପ୍ରାୟ ପଚିଶଖଣ୍ଡ ପୁସ୍ତକର ସେ ରଚୟିତ୍ରୀ। ସୁରେନ୍ଦ୍ର ସାହିତ୍ୟର ଗବେଷଣା କରି ସେ ଡକ୍ଟରେଟ ପ୍ରାପ୍ତ ହୋଇଛନ୍ତି ଓ ସୁରେନ୍ଦ୍ର ମହାନ୍ତିଙ୍କ ସୃଷ୍ଟିକୁ ତର୍ଜମା କରି ଯଥେଷ୍ଟ ପାଠକୀୟତା ହାସଲ କରିଛନ୍ତି। ଆମ ଐତିହ୍ୟ ଆମ ଅସ୍ମିତା ସଂକଳନରେ ଉତ୍କଳୀୟ ସାଂସ୍କୃତିକ ଇତିହାସର ବିଭିନ୍ନ ପ୍ରସଙ୍ଗକୁ ବେଶ୍ ଯୁକ୍ତିନିଷ୍ଠତାର ସହ ଉପସ୍ଥାପନ କରିଛନ୍ତି ଡଃ ମହାନ୍ତି। ତାଙ୍କର ଅନ୍ୟାନ୍ୟ କୃତି ପରି ଏ ପୁସ୍ତକଟି ମଧ୍ୟ ନିଶ୍ଚୟ ଆଶାନୁରୂପ ସଫଳତା ହାସଲ କରିବ।

ପ୍ରକାଶିକା




**AMA AITIHYA AMA ASMITA**
**Essay Collection**
**by Dr. Basanti Mohanty**
**Published by T E E R A T A R A N G A**
**First Impression: 2020**
**₹ 150.00**




